# ସମୟର ପ୍ରତିବିମ୍ବ

ଲମ୍ବୋଦର ପ୍ରସାଦ ସିଂହ



ଦି ବୁକ୍ ପଏଣ୍ଟ୍
ଭୁବନେଶ୍ୱର

ସମୟର ପ୍ରତିବିମ୍ବ
ଲେଖକ : ଲମ୍ବୋଦର ପ୍ରସାଦ ସିଂହ
ପ୍ରକାଶକ : ଦି ବୁକ୍ ପଏଣ୍ଟ୍
ପଠାଣି ସାମନ୍ତ ପ୍ଲାନେଟାରିୟମ୍ ପରିସର,
ଆଚାର୍ଯ୍ୟ ବିହାର, ଭୁବନେଶ୍ୱର-୧୩
ମୁଦ୍ରଣ : ଶିକ୍ଷା ପ୍ରକାଶନୀ
ଭି.ଆଇ.ପି ଏରିଆ, ଆଇଆର୍‌ସି ଭିଲେଜ, ଭୁବନେଶ୍ୱର
ଲିପି ବିନ୍ୟାସ : ସସ୍ମିତା ସାହୁ
ପ୍ରଚ୍ଛଦ : ବିପିନ ବିହାରୀ ପଣ୍ଡା
ପ୍ରଥମ ପ୍ରକାଶନ : ୨୦୧୮
ମୂଲ୍ୟ : ଟ.୧୫୬.୦୦ (ଏକ ଶହ ଛପନ ଟଙ୍କା ମାତ୍ର)

SAMAYARA PRATIBEEMBA
Author : Lambodar Prasad Singh
Publisher : The Book Point
Pathani Samanta Planetarium Complex
Acharya Vihar, Bhubaneswar-751013
Printed at: Siksha Prakashani
VIP Area, IRC Village
Bhubaneswar
Type Setting : Sasmita Sahoo
Cover Design : Bipin Bihari Panda
First Edition : 2018
Price : Rs.156/-
(Rupees One Hundred Fifty Six Only)

# ଉପକ୍ରମ

ସମୟ ନିରବ ଓ ନିରାକାର। ନିର୍ବିକାର ବି। କିନ୍ତୁ ନିଥର ନୁହେଁ କି ନିସ୍ପନ୍ଦ ନୁହେଁ। ସମୟର ସୂକ୍ଷ୍ମତମ ସ୍ଖଳନ ଅନୁଭବ ଓ ଅବବୋଧ ରାଜ୍ୟରେ କମ୍ପନ ଓ ଶିହରଣ ସୃଷ୍ଟି କରିବାର କ୍ଷମତା ରଖିଥାଏ। ଏହି ଅନୁଭବ ଦୁଃଖର, ସୁଖର, ଆଶଙ୍କାର, ଆଶାର ପୁଣି କେତେବେଳେ ବିଚ୍ଛେଦର, ମିଳନର, ପ୍ରତ୍ୟାଖ୍ୟାନର ଓ ପ୍ରାପ୍ତିର। ଅର୍ଥାତ୍ କେତେବେଳେ ତୃଷ୍ଣାର ଓ ତୃପ୍ତିର ବା ଆଲୋକର ଓ ଅନ୍ଧକାରର। ଚିନ୍ତା ଓ ଚେତନାର ସେହି ଅମୂର୍ତ୍ତ ଆଲୋଡ଼ନର ଶାବ୍ଦିକ ଗଢ଼ଣ "ସମୟର ପ୍ରତିବିମ୍ବ"।

ଏହି ସଂକଳନରେ ସ୍ଥାନିତ ଲେଖାଗୁଡ଼ିକ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ। ସେହି ପତ୍ରପତ୍ରିକାଗୁଡ଼ିକର ସୁଯୋଗ୍ୟ ସମ୍ପାଦକମାନେ ମୋର ଲେଖାଗୁଡ଼ିକୁ ପାଠକମାନଙ୍କ ନିକଟରେ ପହଞ୍ଚାଇବାରେ ସହାୟତା କରିଥିବାରୁ ମୁଁ ସେମାନଙ୍କ ନିକଟରେ କୃତଜ୍ଞ। ମୋ'ଭଳି ଜଣେ ନିରୁତ୍ସାହୀ ଲେଖକକୁ ପ୍ରତି ସାକ୍ଷାତରେ କିଛିକିଛି ଲେଖିବାକୁ ଉତ୍ସାହିତ କରିଥିବାରୁ ମୁଁ 'ସମ୍ବାଦ'ର ମୁଖ୍ୟ ସମ୍ପାଦକ ଶ୍ରୀଯୁକ୍ତ ସୌମ୍ୟରଞ୍ଜନ ପଟ୍ଟନାୟକଙ୍କ ନିକଟରେ ବିଶେଷ ଭାବରେ ଋଣୀ। ପ୍ରଫେସର ଚନ୍ଦ୍ର କିଶୋର ମହାପାତ୍ର ମୋର ପ୍ରତି ସଂକଳନକୁ ପ୍ରକାଶ କରିବାରେ ଅକୁଣ୍ଠ ସମ୍ମତି ଦେଉଥିବାରୁ ମୁଁ ତାଙ୍କ ପ୍ରତି ମୋର ଗଭୀର କୃତଜ୍ଞତା ଜ୍ଞାପନ କରୁଛି। ସର୍ବୋପରି ମୁଁ ସେହି ଚିହ୍ନା ଅଚିହ୍ନା ପାଠକମାନଙ୍କ ନିକଟରେ ଅଶେଷ ଭାବରେ କୃତଜ୍ଞ ଯେଉଁମାନଙ୍କ ଆଲୋଚନା ଓ ସମାଲୋଚନା ମୋର ଲେଖକୀୟ ଦୁର୍ବଳତା ସତ୍ତ୍ୱେ ଲେଖିବା ପାଇଁ ଶ୍ରେଷ୍ଠ ପ୍ରେରଣା ହୋଇରହିଆସିଛି।

ସର୍ବଶେଷରେ ସଂକଳନରେ ସ୍ଥାନିତ ଲେଖାଗୁଡ଼ିକର କ୍ଷୀଣ ଉଚ୍ଚାରଣ ନିଜସ୍ୱ ପ୍ରତିଧ୍ୱନୀରୁ ଶକ୍ତି ସଂଗ୍ରହ କରୁ ଓ ସେ ଶକ୍ତିର ପ୍ରବାହ ସମାଜରେ ସତେଜ ସବୁଜିମା ସୃଷ୍ଟିରେ ସହାୟକ ହେଉ, ଏତିକି କାମନା।

ଲେଖକ

# ସ୍ମୃତି - ଅର୍ଘ୍ୟ

ପ୍ରଫେସର ବାସୁଦେବ କର ଆମ ରାଜ୍ୟର କେବଳ ଜଣେ ସ୍ୱନାମଧନ୍ୟ ଡାକ୍ତର ନ ଥିଲେ, ସେ ମଧ୍ୟ ଥିଲେ ଜଣେ ବିଜ୍ଞ ମଣିଷ । ସଂସ୍କୃତ, ସାହିତ୍ୟ ଓ ବିଜ୍ଞାନରେ ଥିଲା ତାଙ୍କର ଚମତ୍କାରୀ ବିଦ୍‌ବତ୍ତା । ମୋ'ପାଇଁ ପରମ ଆନନ୍ଦର କଥା ଯେ ସେ ମଧ୍ୟ ଥିଲେ ମୋ' ଲେଖାଗୁଡ଼ିକର ଜଣେ ସଶ୍ରଦ୍ଧ ପାଠକ । ଲେଖାଟିଏ ପଢ଼ି ପ୍ରଶଂସା ତଥା ଭ୍ରମ ସଂଶୋଧନ କରିବାକୁ ସେ କେବେ ଭୁଲୁ ନ ଥିଲେ । ଏମିତି ଏକ ଆଲୋଚନା ବେଳେ ସେ ଥରେ କହିଥିଲେ, "ତୁ ଏ ଲେଖାଗୁଡ଼ିକୁ ଏକାଠି କରି ବହିଟିଏ କରିଦେବୁ" । ହୁଏତ ତାଙ୍କର ସେହି ଅନୁରୋଧାତ୍ମକ - ଆଦେଶ ହିଁ "ସମୟର ପ୍ରତିବିମ୍ବ" ପ୍ରକାଶନର ପ୍ରଚ୍ଛନ୍ନ ପ୍ରେରଣା ।

ତାଙ୍କର ଅମ୍ଳାନ ସ୍ମୃତି ପ୍ରତି ଉତ୍ସର୍ଗିତ ଏହି ସଂକଳନଟି ଗଭୀର ଶ୍ରଦ୍ଧା ଓ ସମ୍ମାନ ସହ । ତାଙ୍କର ଅମର ଆତ୍ମା ଅମୃତ ପଥର ଯାତ୍ରୀ ହେଉ ।

**ଲମ୍ବୋଦର**

# ସୂଚୀପତ୍ର

## ବର୍ତ୍ତମାନର ପ୍ରଚକ୍ଷୁରେ ଭବିଷ୍ୟତ



## ଆମ ଶିକ୍ଷା



## ଆମ ସମାଜ

## ଆମ ରାଜନୀତି



## ଆମ ପରିବେଶ





# ଏକବିଂଶ ଶତାବ୍ଦୀର ଆହ୍ୱାନ

ଆଉ ମାତ୍ର ୧୫ ମାସ ପରେ ବିଂଶ ଶତାବ୍ଦୀ ଇତିହାସର କଥା ହୋଇଯିବ। ଅନେକ ଦୃଷ୍ଟିରୁ ଏହା ଏକ ଯୁଗାନ୍ତକାରୀ ଶତାବ୍ଦୀ କହିଲେ ଅତ୍ୟୁକ୍ତି ହେବ ନାହିଁ। ଏକ ନିରପେକ୍ଷ ଓ ସ୍ୱୟଂ ସମ୍ପୂର୍ଣ୍ଣ ତାଲିକା ପ୍ରସ୍ତୁତ କରିବା ଅସମ୍ଭବ ହେଲେ ମଧ୍ୟ କ୍ୱାଣ୍ଟମ୍ ମେକାନିକ୍ସ, ଆପେକ୍ଷିକତତ୍ତ୍ୱ, ମହାକାଶ ଯାତ୍ରା, ସୁପରକମ୍ପ୍ୟୁଟରର ଉଦ୍ଭାବନ ଓ ଇଣ୍ଟରନେଟ୍, ଜୀବନ ନିର୍ଣ୍ଣାୟକ ଜିନ୍‌କୁ ନେଇ ସଂରୋପଣ ଓ କ୍ଲୋନିଂ, କମ୍ୟୁନିଜିମ୍‌ର ପ୍ରସାର ଓ କ୍ଷୟ, ଦୁଇ ଦୁଇଟି ବିଶ୍ୱଯୁଦ୍ଧ, ଉପନିବେଶବାଦରୁ ମୁକ୍ତି ଓ ବ୍ୟକ୍ତି ସ୍ୱାଧୀନତାର ଉଦୟ, ଅର୍ଥନୈତିକ ସାମ୍ରାଜ୍ୟବାଦର ବିସ୍ତାର, ଜାଜ୍ ସଙ୍ଗୀତର ସୃଷ୍ଟି, ଏଡ଼୍‌ସ ରୋଗର ବ୍ୟାପକତା ସଦୃଶ ବିଂଶ ଶତାବ୍ଦୀର ଘଟଣାବଳୀ ମଣିଷ ସଭ୍ୟତାର ଭବିଷ୍ୟତକୁ ଯେ ବହୁ ଭାବରେ ପ୍ରଭାବିତ କରିବ ଏହା ନିଃସନ୍ଦେହରେ କୁହାଯାଇପାରେ। ଏସବୁ ଘଟଣାକ୍ରମରୁ ହିଁ ସୃଷ୍ଟି ହେଉଛି ଏକବିଂଶ ଶତାବ୍ଦୀର ଆହ୍ୱାନ। ବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ଆଜି ପୃଥିବୀରେ ଅର୍ଥନୈତିକ ଓ ରାଜନୈତିକ ଢାଞ୍ଚା ମଧ୍ୟରେ ଏକ କ୍ରମବର୍ଦ୍ଧିଷ୍ଣୁ ବିରୋଧାଭାଷ ଦେଖିବାକୁ ମିଳୁଛି। ଅର୍ଥନୈତିକ କ୍ଷେତ୍ରରେ ପୃଥିବୀ ଜଗତୀକରଣ ଆଡ଼କୁ ଆଗେଇ ଚାଲିଥିବାବେଳେ ରାଜନୈତିକ କ୍ଷେତ୍ରରେ ନୂଆ ନୂଆ ଛୋଟ ଛୋଟ ଦେଶ ସୃଷ୍ଟି ହେବାରେ ଲାଗିଛନ୍ତି। ଅର୍ଥନୈତିକ ଏକତ୍ରୀକରଣ ଓ ଉଗ୍ର ଜାତୀୟତାବାଦ ଆଧାରିତ ରାଜନୈତିକ ବିଭକ୍ତିକରଣ ମଧ୍ୟରେ କିପରି ସମନ୍ୱୟ ପ୍ରତିଷ୍ଠା କରାଯାଇପାରିବ, ତାହା ବୋଧ ହୁଏ ଏକବିଂଶ ଶତାବ୍ଦୀରେ ମଣିଷଜାତି ପାଇଁ ମୁଖ୍ୟ ସମସ୍ୟା ହୋଇ ଠିଆ ହେବ।

ଏହି ସମନ୍ୱୟ ପ୍ରତିଷ୍ଠା ପାଇଁ ଆନ୍ତର୍ଜାତିକ ସ୍ତରରେ ଆବଶ୍ୟକ ହେଉଥିବା ସହଯୋଗ ଓ ସହମତି କ୍ଷେତ୍ରରେ ପ୍ରଧାନ ଅନ୍ତରାୟ ହେଉଛି ଜନସଂଖ୍ୟାର ଅସ୍ୱାଭାବିକ ବିସ୍ଫୋରଣ। ବର୍ତ୍ତମାନ ପୃଥିବୀର ଲୋକସଂଖ୍ୟା ୬୦୦ କୋଟିରେ ପହଞ୍ଚିଲାଣି, ଏକବିଂଶ ଶତାବ୍ଦୀର ମଧ୍ୟଭାଗରେ ଏହା ଏକ ହଜାର ଛୁଇଁବ। ପୃଥିବୀର ଜନସଂଖ୍ୟା

---

★ପତ୍ରିକା "ଚିତ୍ରା", ଶାରଦୀୟ ସଂଖ୍ୟା ୧୯୯୮

ବୃଦ୍ଧିର ଏକ ଉଲ୍ଲେଖନୀୟ ଦିଗ ହେଲା ମୁଖ୍ୟତଃ ଗରିବ ଦେଶମାନଙ୍କରେ ଲୋକସଂଖ୍ୟା ଦ୍ରୁତଗତିରେ ବୃଦ୍ଧି ପାଉଥିବା ସ୍ଥଳେ, ଧନୀ ଓ ଉନ୍ନତ ଦେଶମାନଙ୍କରେ ଏହା ପ୍ରାୟତଃ ସ୍ଥିର ବା କମିବାରେ ଲାଗିଛି। ତେଣୁ ପୃଥିବୀର ଗୋଟିଏ ପଟେ ଦାରିଦ୍ର୍ୟ ଓ ଲୋକସଂଖ୍ୟା ବୃଦ୍ଧି ତ ଅନ୍ୟପଟେ ପ୍ରାଚୁର୍ଯ୍ୟ ଓ ଲୋକସଂଖ୍ୟା ହ୍ରାସ ଆନ୍ତର୍ଜାତିକ ସ୍ତରରେ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଅସ୍ଥିରତା ସୃଷ୍ଟି କରିବା ସ୍ୱାଭାବିକ। ଊନବିଂଶ ଶତାବ୍ଦୀରେ ୟୁରୋପ ଓ ଆମେରିକାରେ ଲୋକସଂଖ୍ୟା ବିସ୍ଫୋରଣ ଦ୍ୱାରା ସୃଷ୍ଟ ସମସ୍ୟାଗୁଡ଼ିକ ମୁଖ୍ୟତଃ ସେହି ଦେଶମାନଙ୍କରେ ପ୍ରଯୁକ୍ତିବିଦ୍ୟାର ଅଭୂତପୂର୍ବ ଉନ୍ନତି ଦ୍ୱାରା ହିଁ ପ୍ରତିହତ ହୋଇପାରିଥିଲା। ଆଜି ଯେତେବେଳେ ଏହି ଦୁଇଟି ବିସ୍ଫୋରଣ ପୃଥିବୀର ପୃଥକ୍ ପୃଥକ୍ ଭୌଗଳିକ ଅଂଶରେ ସଂଗଠିତ ହୋଇ 'ଯାହାର ନାକ ଅଛି ତା'ର ନୋଥ ନାହିଁ ଓ ଯାହାର ନୋଥ ଅଛି ତାହାର ନାକ ନାହିଁ' ପରିସ୍ଥିତି ସୃଷ୍ଟି କରୁଛି ସେଥିରେ ଚିନ୍ତାନାୟକମାନେ ଆତଙ୍କିତ ହେବା ସ୍ୱାଭାବିକ।

ଲୋକସଂଖ୍ୟା ବୃଦ୍ଧି ସହ ପରିବେଶର ଅବକ୍ଷୟ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ। ଏ କ୍ଷେତ୍ରରେ ମଧ୍ୟ ବୃହତ୍ ଶିଳ୍ପକୁ ଆଧାର କରି ରାତାରାତି ଉନ୍ନତ ହେବାକୁ ଆତୁର ହେଉଥିବା ବିକାଶଶୀଳ ଦେଶଗୁଡ଼ିକରେ ହିଁ ପରିବେଶର କ୍ଷୟ ସର୍ବାଧିକ। ଶିଳ୍ପାନୁଷ୍ଠାନଗୁଡ଼ିକରୁ ନିର୍ଗତ ଦୂଷିତ ଜଳ ଓ ବାଷ୍ପ, ମୃତ୍ତିକା ଓ ଜଙ୍ଗଲକ୍ଷୟ ଇତ୍ୟାଦି ସବୁଜଗୃହ ପ୍ରଭାବ, ବାୟୁମଣ୍ଡଳରେ ଓଜନସ୍ତରର କ୍ଷୟ, ଜଳବାୟୁ ପରିବର୍ତ୍ତନ ଓ ସମୁଦ୍ର ପତ୍ତନ ବୃଦ୍ଧି ଭଳି ଯେଉଁ ଭୟାବହ ସମସ୍ୟା ସୃଷ୍ଟି କରିଛି ସେଥିରେ ପୃଥିବୀ ପୃଷ୍ଠରୁ ମାନବଜାତି ଲୋପ ପାଇଯିବାର ଆଶଙ୍କା ଦେଖାଦେଇଛି। ଆଜି ଉନ୍ନତ ଦେଶମାନଙ୍କରେ ଲୋକମାନେ ଯେଉଁ ହାରରେ ପ୍ରାକୃତିକ ସମ୍ପଦର ଉପଯୋଗ କରୁଛନ୍ତି, ଏକ ହଜାର କୋଟି ଲୋକ ତାହାର ଅଧା ସୁବିଧା ଉପଭୋଗ କଲେ ମଧ୍ୟ ପୃଥିବୀର ପ୍ରାକୃତିକ ସମ୍ପଦ ପର୍ଯ୍ୟାପ୍ତ ହେବ ନାହିଁ। ଶକ୍ତିର ବିକଳ୍ପ ପାଇଁ ହେଉ ବା ଅସ୍ତ୍ରଶସ୍ତ୍ରର ପ୍ରତିଯୋଗିତା ପାଇଁ ହେଉ, ବିଭିନ୍ନ ଦେଶରେ ଆଜି ଯେଉଁ ଆଣବିକ ଗବେଷଣା ଚାଲୁରହିଛି, ତାହାର ମଧ୍ୟ ଜନଜୀବନ ତଥା ପରିବେଶ ବିନାଶ ଦିଗରେ ସୁଦୂରପ୍ରସାରୀ ପ୍ରଭାବ ରହିଛି।

ଲୋକସଂଖ୍ୟା ବୃଦ୍ଧିର ସମସ୍ୟାକୁ ବିଜ୍ଞାନର ପ୍ରଗତି ମଧ୍ୟ କେତେକ ଦୃଷ୍ଟିରୁ ଆହୁରି ଜଟିଳ କରି ଦେଉଛି। ଗୋଟିଏ ପଟେ ରୋଗ ପ୍ରତିଷେଧ ତଥା ଚିକିତ୍ସାର ଉନ୍ନତି ଫଳରେ ମୃତ୍ୟୁହାର କମିବା ଦ୍ୱାରା ଲୋକସଂଖ୍ୟା ବୃଦ୍ଧି ଦ୍ରୁତତର ହେଉଛି, ଅନ୍ୟପକ୍ଷରେ କ୍ଷେତ୍ରରେ ଶସ୍ୟ ଓ କଳକାରଖାନାରେ ଦ୍ରବ୍ୟ ଉତ୍ପାଦନ ପ୍ରଣାଳୀରେ

ଶ୍ରମଲାଘବକାରୀ ବୈପ୍ଲବିକ ପରିବର୍ତ୍ତନ ଯୋଗୁ ସେସବୁ କ୍ଷେତ୍ରରେ ନିଯୁକ୍ତିର ଆବଶ୍ୟକତା କମି କମି ଚାଲିଛି। କାର୍ଯ୍ୟାଳୟଗୁଡ଼ିକରେ କମ୍ପ୍ୟୁଟର ବ୍ୟବହାର ମଧ୍ୟ ଏଥି ସହିତ ଯୋଡ଼ି ହୋଇଯାଉଛି। ଫଳତଃ ବେକାରୀ ଉତ୍କଟ ହେଉଛି।

ବହୁଦେଶୀୟ କମ୍ପାନୀଗୁଡ଼ିକ ସେମାନଙ୍କ ବ୍ୟବସାୟର ସୀମା ସରହଦ ବଢ଼େଇ ଚାଲିଥିବାବେଳେ କେତେକ ଗରିବ ଓ ବିକାଶଶୀଳ ଦେଶ ତଥା ସତର୍କ ଗୋଷ୍ଠୀ ନିଜ ନିଜର ଜାତୀୟ ସ୍ୱାର୍ଥ ଦୃଷ୍ଟିରୁ ଏହାର ବିରୋଧ କରୁଛନ୍ତି। ଆନ୍ତର୍ଜାତିକ ସ୍ତରରେ ଏହା ମୁକାବିଲାର ପରିସ୍ଥିତି ସୃଷ୍ଟି କରୁଛି। ଗୋଟେ ଗୋଟେ ଦେଶର ସମୁଦାୟ ଆୟର ଅନେକଗୁଣ ଅଧିକ ଅର୍ଥକୁ ନେଇ କମ୍ପ୍ୟୁଟର ମାଧ୍ୟମରେ ରାତିଦିନ ଯେଉଁ ଆନ୍ତର୍ଜାତିକ ପୁଞ୍ଜି ବଜାରର ଜୁଆଖେଳ ଚାଲିଛି, ତାହା ମଧ୍ୟ ବିଭିନ୍ନ ରାଷ୍ଟ୍ରର ଅର୍ଥନୈତିକ ବ୍ୟବସ୍ଥାରେ ଅଘଟନକ ବିପର୍ଯ୍ୟୟ ସୃଷ୍ଟି କରିପାରୁଛି।

ଏହିସବୁ ଅଭିନବ ତଥା ଜଟିଳ ସମସ୍ୟାଗୁଡ଼ିକର ସମାଧାନ କ୍ଷେତ୍ରରେ ବିଭିନ୍ନ ଦେଶ ଓ ଏକତ୍ରିତ ଭାବରେ ମଣିଷଜାତି ନିଜକୁ ପ୍ରସ୍ତୁତ କରିବା ହିଁ ହେବ ଏକ ବିଂଶ ଶତାବ୍ଦୀ ପାଇଁ ପ୍ରକୃତ ପ୍ରସ୍ତୁତି। ଏହି ପ୍ରସ୍ତୁତି ପ୍ରକ୍ରିୟାରେ ଲୋକସଂଖ୍ୟା ନିୟନ୍ତ୍ରଣ, ଶକ୍ତି ସଂରକ୍ଷଣ, ଆନ୍ତର୍ଜାତିକ ସହଯୋଗ ବୃଦ୍ଧି ଓ ପରିବେଶ ସୁରକ୍ଷା ଆଦିର ସଫଳ ରୂପାୟନ ଦିଗରେ ସମାଜରେ ସମଯୋପଯୋଗୀ ଶିକ୍ଷାର ପ୍ରସାର, ମହିଳାମାନଙ୍କ ଉନ୍ନତି ଓ ଦୂରଦୃଷ୍ଟି ସମ୍ପନ୍ନ ରାଜନୈତିକ ନେତୃତ୍ୱ ମୁଖ୍ୟ ଭୂମିକା ଗ୍ରହଣ କରିବ। ଏହି ତିନୋଟି କାର୍ଯ୍ୟକ୍ରମରେ ଯେଉଁ ଦେଶ ଯେତିକି ଆନ୍ତରିକତା ପ୍ରଦର୍ଶନ କରିବ ଆଗାମୀ ଶତାବ୍ଦୀର ଆହ୍ୱାନର ସମ୍ମୁଖୀନ ହେବାରେ ସେ ସେତିକି ସଫଳ ହେବ।

ଓ୍ୱେଲସ୍‌ଙ୍କଠାରୁ ଆରମ୍ଭ କରି ଟଏନ୍‌ବିଙ୍କ ପର୍ଯ୍ୟନ୍ତ ସମସ୍ତେ ଏକ ସ୍ୱରରେ କହିଛନ୍ତି ଯେ, ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ଯୁଗାନ୍ତକାରୀ ଅଗ୍ରଗତିରୁ ସୃଷ୍ଟି ହେଉଥିବା ମାରାତ୍ମକ ସମସ୍ୟାଗୁଡ଼ିକରୁ ମାନବଜାତିର ମୁକୁଳିବାର ଏକମାତ୍ର ବାଟ ହିଁ ଶିକ୍ଷା। ସେମାନଙ୍କ ମତରେ ମଣିଷଜାତି ଶିକ୍ଷା ଓ ବିନାଶ ମଧ୍ୟରେ ଚାଲିଥିବା ପ୍ରତିଯୋଗିତାର ଭଉଁରୀ ଜାଲରେ ପଡ଼ିଛି। ଶିକ୍ଷା ବ୍ୟବସ୍ଥା ଯେତିକି ସମଯୋପଯୋଗୀ, ବ୍ୟାପକ ଓ ଜୀବନ ପରିପୋଷକ ହେବ ମଣିଷ ଜାତିର ଭବିଷ୍ୟତ ସେତିକି ସୁରକ୍ଷିତ ଓ ଆନନ୍ଦଦାୟକ ହେବ।

ଶିକ୍ଷା କହିଲେ, ଆମକୁ ଏହାର ବ୍ୟବହାରିକ ତଥା ସୃଜନାତ୍ମକ ଉଭୟ ଅର୍ଥରେ ବୁଝିବାକୁ ପଡ଼ିବ। ବ୍ୟବହାରିକ ଦୃଷ୍ଟିରୁ ସୋମାଲିଆ ଭଳି ଅନ୍ୟାନ୍ୟ ଗରିବ ଦେଶମାନଙ୍କରେ ଥିବା ଭୟାବହ ନିରକ୍ଷରତାକୁ ଦୂର କରିବା ଯେତିକି ଜରୁରୀ, ସୃଜନାତ୍ମକ ଦୃଷ୍ଟିରୁ ଶ୍ରମ

ଲାଘବକାରୀ ବ୍ୟବସ୍ଥା ଯୋଗୁ ସୃଷ୍ଟି ହୋଇଥିବା ବେକାର ଲୋକଙ୍କର ପୁନଃସଂସ୍ଥାନ ପାଇଁ ନୂଆ କୌଶଳର ଉଦ୍ଭାବନ ସେତିକି ଜରୁରୀ। ଏହିଭଳି ବ୍ୟାପକ ଓ ନିରନ୍ତର ଶିକ୍ଷା ବ୍ୟବସ୍ଥା କରିଆରେ ହିଁ ପ୍ରତ୍ୟେକ ଦେଶର ଅର୍ଥନୈତିକ ଅଭିବୃଦ୍ଧି ଓ ସାମାଜିକ ସୌହାର୍ଦ୍ଦ୍ୟ ପରିପୁଷ୍ଟ ହୋଇପାରିବ। ଏହା ବ୍ୟତୀତ ଶିକ୍ଷା ଆମକୁ ନିଜ ନିଜ ଦେଶରେ ତଥା ପୃଥିବୀରେ କି ପ୍ରକାର ରାଜନୈତିକ, ଅର୍ଥନୈତିକ ପରିବର୍ତ୍ତନ ଘଟୁଛି, କାହିଁକି ଘଟୁଛି ଇତ୍ୟାଦି ପ୍ରଶ୍ନଗୁଡ଼ିକ ବିଷୟରେ ସଚେତନ କରାଇବା ସହ ମାନବ କଲ୍ୟାଣକାରୀ ଉପାୟରେ ସେଗୁଡ଼ିକର ମୁକାବିଲା କରିବାର ବାଟ ମଧ୍ୟ ବତାଇବା ଦରକାର। ମୁକ୍ତ ଚେତନା ଓ ସମ୍ବେଦନଶୀଳ ମନ ନେଇ ହିଁ ଦେଶ, ଜାତି, ଧର୍ମ, ବର୍ଣ୍ଣ ଓ ସଂସ୍କୃତି ମଧ୍ୟରେ ରହିଥିବା ବିଭିନ୍ନତାକୁ ହୃଦୟଙ୍ଗମ କରିବା ତଥା ନ୍ୟାୟ ଓ ସମତାଭିତ୍ତିକ ସମାଜ ଗଠନ ସମ୍ଭବ ହେବ।

ସୁସ୍ଥ, ସୁନ୍ଦର ଭବିଷ୍ୟତ ଗଠନରେ ଶିକ୍ଷାର କ୍ରମବର୍ଦ୍ଧମାନ ଭୂମିକା ସହିତ ସମାଜରେ ମହିଳାମାନଙ୍କର ମର୍ଯ୍ୟାଦାଜନକ ପ୍ରତିଷ୍ଠାର ମଧ୍ୟ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ରହିଛି। ସ୍ତ୍ରୀ ଲୋକମାନଙ୍କର ଅବହେଳା ଦାରିଦ୍ର୍ୟ ଓ ଲୋକସଂଖ୍ୟା ବିସ୍ଫୋରଣ ସହ ଓତଃପ୍ରୋତଃ ଭାବେ ଜଡ଼ିତ। ଜାତିସଂଘ ପରିସଂଖ୍ୟାନରୁ ସ୍ତ୍ରୀ-ସାକ୍ଷରତା ବୃଦ୍ଧି ସହିତ ସେମାନଙ୍କ ପ୍ରଜନନ ହାରର ହ୍ରାସ ସୁସ୍ପଷ୍ଟ। ଏହାକୁ ବୁଝିବା ମଧ୍ୟ କଷ୍ଟକର ନୁହେଁ। ଝିଅପିଲାମାନେ ସ୍କୁଲ-କଲେଜରେ ପାଠ ପଢ଼ିବା ଦ୍ୱାରା ଡେରିରେ ବିବାହ କରିବା, ଇଚ୍ଛା ମୁତାବକ ଚାକିରି ପାଇଁ ସନ୍ତାନ ଜନ୍ମକୁ ଡେରି କରିବା, ଅଧିକ ଅନୁପାତରେ ଜନ୍ମ ନିରୋଧକ ବ୍ୟବହାର କରିବା ଇତ୍ୟାଦି ସାମୂହିକ ଭାବରେ ଜନସଂଖ୍ୟା ବୃଦ୍ଧିର ହ୍ରାସ ଘଟାଇଥାଏ। ଏହି କାରଣରୁ କେତେକ ଉନ୍ନତ ଦେଶରେ ଜନସଂଖ୍ୟା ବଢ଼ିବା ପରିବର୍ତ୍ତେ କମିବାକୁ ଆରମ୍ଭ କରିଛି। ଉଚ୍ଚଶିକ୍ଷିତ ସ୍ତ୍ରୀଲୋକମାନେ ପାରମ୍ପାରିକ ଧାରାରେ ସାରାଜୀବନ ଗୃହିଣୀ ଭାବରେ କଟାଇବାର ମାନସିକତାକୁ ମଧ୍ୟ ପ୍ରତ୍ୟାଖ୍ୟାନ କରୁଛନ୍ତି। କିନ୍ତୁ ଏକଥା ମଧ୍ୟ ସତ ଯେ ଜନସଂଖ୍ୟାର ଅସ୍ୱାଭାବିକ ବୃଦ୍ଧି ପରି ହ୍ରାସ ମଧ୍ୟ ସାମାଜିକ ଦୃଷ୍ଟିକୋଣରୁ ଉଦ୍‌ବେଗ ଜନକ। ତେଣୁ ସ୍ୱିଡ଼େନ୍ ପରି ଦେଶରେ ଶିଶୁ ଜନ୍ମ ଓ ଶିଶୁ ଶିକ୍ଷାର ସୁବ୍ୟବସ୍ଥା, ଆକର୍ଷଣୀୟ ଆବାସ ବଣ୍ଟନ ବ୍ୟବସ୍ଥା, ମାତା-ପିତା ଉଭୟଙ୍କୁ ଦରମା ସହ ଛୁଟି ଇତ୍ୟାଦି ଯୋଜନା ମାଧ୍ୟମରେ ଲୋକସଂଖ୍ୟା ହ୍ରାସକୁ ପ୍ରତିରୋଧ କରାଯାଉଛି। ଫଳତଃ ସେଠାରେ ପ୍ରଜନନହାର ୧.୬ ରୁ ୨.୧କୁ ବୃଦ୍ଧି ପାଇଛି। ଏହିପରି ଭାବରେ ଲୋକସଂଖ୍ୟାର ଦ୍ରୁତ ବୃଦ୍ଧି ତଥା ହ୍ରାସକୁ ନୂଆ ନୂଆ ଉପାୟରେ ପ୍ରତିରୋଧ କରି ଲୋକସଂଖ୍ୟାର ଭାରସାମ୍ୟ ରକ୍ଷା କରିବା ଆବଶ୍ୟକ।

ଶେଷରେ ଉଠୁଛି ରାଜନୈତିକ ନେତୃତ୍ୱର ପ୍ରଶ୍ନ। ଦୁର୍ଭାଗ୍ୟର କଥା ବର୍ତ୍ତମାନ ଧନୀ ଦରିଦ୍ର ଦେଶ ନିର୍ବିଶେଷରେ ରାଜନୈତିକ ନେତୃତ୍ୱ ପ୍ରତି ଲୋକମାନଙ୍କ ମନରେ ଶ୍ରଦ୍ଧା ଓ ସମ୍ମାନ ପରିବର୍ତ୍ତେ ବିତୃଷ୍ଣାଭାବ ବଢ଼ିଚାଲିଛି, ଯାହାକି ନିର୍ବାଚନଗୁଡ଼ିକରେ ଶତକଡ଼ା ୫୦ ରୁ ୬୦ ଭାଗରୁ ଅଧିକ ମତଦାନ ନ ହେବା ଘଟଣାରୁ ସ୍ପଷ୍ଟ। ଏହାର ମୁଖ୍ୟ କାରଣ ହେଲା ରାଜନୈତିକ ନେତୃତ୍ୱ ଚରିତ୍ରିକ ବା ଦାର୍ଶନିକ ପରାକାଷ୍ଠା ଦେଖାଇବାରେ ବିଫଳ ହୋଇଛି। ବରଂ ଏହା ମୁଷ୍ଟିମେୟ ସ୍ୱାର୍ଥପର ଲୋକଙ୍କର ପେଶା ହେବାକୁ ବସିଲାଣି। ଭାରତ ଭଳି ଅଲ୍ପ କେତେକ ଗରିବ ଓ ବିକାଶଶୀଳ ଦେଶରେ ଯେଉଁଠି ଗଣତାନ୍ତ୍ରିକ ଶାସନ ଚାଲିଛି ସେଠାରେ ନେତୃତ୍ୱ ଭୋଟ-ସର୍ବସ୍ୱ ଚକ୍ରାନ୍ତକାରୀ ଦୁର୍ନୀତିଗ୍ରସ୍ତ ଗୋଷ୍ଠୀମାନଙ୍କ ହାତକୁ ଚାଲିଯାଉଛି। ପାରିବାରିକ ଶାସନ ଗଢ଼ି ଉଠୁଛି। ଯେଉଁ ନେତୃତ୍ୱର ସମସାମୟିକ ସମସ୍ୟାକୁ ବୁଝିବାର ସାମର୍ଥ୍ୟ ନାହିଁ, ସେ ଯେ ଆଗାମୀ ଶତାବ୍ଦୀର ବିବିଧ ଜଟିଳ ଓ ଆକସ୍ମିକ ସମସ୍ୟାଗୁଡ଼ିକର ସମାଧାନର କୌଶଳ ନିର୍ଦ୍ଧାରଣ କରିପାରିବ, ଏହା ଆଶା କରିବା ବୃଥା। ଦୁର୍ବଳ ନେତୃତ୍ୱ ମାଧ୍ୟମରେ ସମାଜରେ ଦୁର୍ନୀତି, ପ୍ରଶାସନିକ ଦୁର୍ବଳତା, ବେକାରୀ, ଶିକ୍ଷା-କୃଷି-ସ୍ୱାସ୍ଥ୍ୟ ଆଦି ଗୁରୁତ୍ୱପୂର୍ଣ୍ଣ ବିଭାଗଗୁଡ଼ିକର ଅବହେଳା ଇତ୍ୟାଦିରୁ ଯେଉଁ ଜନ ଅସନ୍ତୋଷ ସୃଷ୍ଟି ହୁଏ, ତାହା ଧୀରେ ଧୀରେ ଗଣଯୁଦ୍ଧର ରୂପ ନେବା ଏକ ସାଧାରଣ ଶେଷ କଥା। ତେଣୁ ଏହି ପ୍ରକାରର ଦେଶ ବା ସମାଜ ଆଗାମୀ ଶତାବ୍ଦୀରେ ନିଜର ସ୍ୱତନ୍ତ୍ରତା ହରାଇବା ବା ନିଶ୍ଚିହ୍ନ ହୋଇଯିବା ଅସମ୍ଭବ ନୁହେଁ।

ଏହିସବୁ ଦୃଷ୍ଟିରୁ ଯେଉଁ ଦେଶଗୁଡ଼ିକ ଦୂରଦୃଷ୍ଟି ସମ୍ପନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ନିଜ ଲୋକମାନଙ୍କର ଜୀବନଧାରଣର ମାନବୃଦ୍ଧି, ପରିବେଶର ପ୍ରକୃଷ୍ଟ ସୁରକ୍ଷା ଭିତ୍ତିରେ ଅର୍ଥନୈତିକ ଅଭିବୃଦ୍ଧି ଓ ରାଜନୈତିକ ନେତୃତ୍ୱରେ ସ୍ଥିରତା ହାସଲ କରିପାରିବ, ସେହିମାନେ ହିଁ ଏକବିଂଶ ଶତାବ୍ଦୀର ନାୟକ ହେବେ। ହୁଏତ ଏହି ବାଟରେ ହିଁ ମଣିଷଜାତି ଭବିଷ୍ୟତ ନାଟକର ମାଲ୍‌ଥୁସୀୟ ପ୍ରଳୟ ଭଳି ଶେଷ ଦୃଶ୍ୟର ଅନିବାର୍ଯ୍ୟତାରୁ ନିଜକୁ ରକ୍ଷା କରିପାରିବ। କବି କଳ୍ପନା, "We are the music makers, we are the dreamers of the dreams; We are the movers and shakers of the world forever, it seems," ସାର୍ଥକ ହେବ।



# ନୂତନ ପ୍ରଭାତର କାକଳି

ଦିନଗୁଡ଼ିକ ଗଡ଼ି ଚାଲିଥାଏ ଧାରାବାହିକତାର ପ୍ରବାହରେ, ଗୁଳାରେ ଗାଡ଼ି ଗଡ଼ି ଚାଲିଲା ଭଳି। ନ ଥାଏ ସ୍ପନ୍ଦନ, ନ ଥାଏ ସ୍ୱପ୍ନ। ଚରିଆଡ଼େ କେବଳ ବିଷଣ୍ଣତାର ବିରାମହୀନ ବିସ୍ତୃତି। କ'ଣ ହୁଏ, କିପରି ହୁଏ କେଜାଣି ପଙ୍କ ମଧ୍ୟରୁ ପଦ୍ମ କଢ଼ିଟିଏ ଉତ୍ତୀର୍ଣ୍ଣ ହେଲାପରି ଘନ ନିଶବ୍ଦତା ଭିତରୁ କେଉଁ ଏକ ଅନର୍ଦ୍ଦିଷ୍ଟ କୋଣରୁ ଭାସି ଆସେ କ୍ଷୀଣ ସ୍ୱରଟିଏ ସବୁ ଗତାନୁଗତିକତାକୁ ପରାସ୍ତ କରି ନୂତନତାର ବାର୍ତ୍ତା ନେଇ। ବହୁ ସମୟରେ ସେ ସ୍ୱରଟି ମଧ୍ୟ ମରି ହଜିଯାଏ ମୁହୂର୍ତ୍ତକର ଜୀବନ ବିତେଇ ବାଦଲ କୋଳରେ ବିଦ୍ୟୁତ୍‌ର ଝଲକ ଭଳି। କିନ୍ତୁ ପୁଣି କେତେବେଳେ ସେ କ୍ଷୀଣ ସ୍ୱରଟି ଦାନା ବାନ୍ଧେ, ପରିପୁଷ୍ଟ ହୋଇ ଏକ ନୂତନ ଜୀବନର ଶୁଭ ଶଙ୍ଖନାଦରେ ପରିଣତ ହୁଏ, ବିଶ୍ୱ ବ୍ରହ୍ମାଣ୍ଡରେ ନିଶ୍ଚିହ୍ନ-ପ୍ରାୟ ବାଷ୍ପୀୟ ବିସ୍ତୃତିରୁ ଜ୍ୟୋତିଷ୍ମାନ୍ ନକ୍ଷତ୍ର ଓ ନିହାରିକା ସବୁ ସୃଷ୍ଟି ହେଲାଭଳି। ସେହିଭଳି ଏକ ମୁହୂର୍ତ୍ତ ହୁଏତ ଆଜି ଉପସ୍ଥିତ ଆମ ଜାତୀୟ ଜୀବନରେ।

ପ୍ରାୟ ୬୫ ବର୍ଷ ତଳେ ଆମ ଦେଶ ସ୍ୱାଧୀନ ହେଲା। ୧୯୪୭ ମସିହା ଅଗଷ୍ଟ ୧୪ ତାରିଖ ମଧ୍ୟରାତ୍ରିରେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହରଲାଲ୍ ଘୋଷଣା କଲେ ଉଦାର କଣ୍ଠରେ, "ସମଗ୍ର ପୃଥିବୀ ନିଦ୍ରାଗତ ଥିଲାବେଳେ ଭାରତରେ ସ୍ୱାଧୀନତାର ନୂତନ ସୂର୍ଯ୍ୟୋଦୟ ହେଲା"। ସତେ ଯେପରି ଦେଶବାସୀଙ୍କୁ ଗୀତାବାଣୀ, "ଯା ନିଶା ସର୍ବଭୂତାନାଂ, ତସ୍ୟାଂ ଜାଗର୍ତି ସଂଯମୀ" ସ୍ମରଣ କରାଇ। ସାରା ଦେଶବାସୀ ଦେଶ ବିଭାଜନ ଓ ଲକ୍ଷ ଲକ୍ଷ ଲୋକଙ୍କର ପ୍ରାଣହାନିକୁ ଭୁଲି ଆନନ୍ଦ ଉଲ୍ଲାସରେ ମାତିଗଲେ। କିନ୍ତୁ ରାଜଧାନୀରୁ ବହୁଦୂରରେ ମୌନବ୍ରତ ଓ ଅନସନରେ ଥିଲେ ଜାତିର ପିତା, ଭାରତୀୟ ସ୍ୱାଧୀନତା ସଂଗ୍ରାମର ପ୍ରଧାନ ସେନାପତି ମୋହନ ଦାସ କରମଚନ୍ଦ ଗାନ୍ଧୀ। କୋଟି ଲୋକଙ୍କର ଆନନ୍ଦ ଉଲ୍ଲାସ ଓ ସ୍ୱ-ନିର୍ବାଚିତ ନିରବତା ମଧ୍ୟରେ ସେ ହୁଏତ ଚିନ୍ତାଗ୍ରସ୍ତ ଥିଲେ ବିଖଣ୍ଡିତ ଭାରତର ଭବିଷ୍ୟତକୁ ନେଇ, ନିଜ

---

★ ଦୈନିକ "ସମ୍ବାଦ"; ୫ ସେପ୍ଟେମ୍ବର ୨୦୧୧

ପଡ଼ିଶିଷ୍ୟମାନଙ୍କ ଦ୍ୱାରା କେତେକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗରେ ପ୍ରତ୍ୟାଖ୍ୟାତ ହେବାର ଅବିଶ୍ୱସନୀୟ ଅନୁଭୂତିକୁ ନେଇ। ମନରେ ହୁଏତ ଆଶଙ୍କା ଥିଲା ଶହ ଶହ ବର୍ଷ ଧରି ଅନ୍ୟର ଆଦେଶ ପାଳନ କରି ଆସିଥିବା ଗଣତନ୍ତ୍ର-ଅନଭିଜ୍ଞ, ଅଭାବ ଓ ଅଶିକ୍ଷା ଜର୍ଜରିତ ଭାରତବାସୀଙ୍କୁ ଗଣତନ୍ତ୍ର ମାଧ୍ୟମରେ ଅର୍ଥନୈତିକ ସ୍ୱାଧୀନତା, ସାମାଜିକ ନ୍ୟାୟ, ଦେଶ ପରିଚାଳନାର ଦକ୍ଷତା ତଥା ଆନ୍ତର୍ଜାତିକ ସ୍ତରରେ ସମ୍ମାନର ସ୍ଥାନ ମିଳି ପାରିବ ତ? ସ୍ୱାଧୀନତା, ଭାରତୀୟମାନଙ୍କର ସମସ୍ତ ଦୁର୍ବଳତାକୁ ସମ୍ମିଳିତ କରି ସ୍ୱେଚ୍ଛାଚାରିତାରେ ରୂପାନ୍ତରିତ ହୋଇଯିବନି ତ! ଲୋକଙ୍କର ଗାନ୍ଧୀଙ୍କ ଭାବନା ପ୍ରତି ଭ୍ରୂକ୍ଷେପ ନ ଥିଲା। ଥିଲେ ହୁଏତ ସାରା ଦେଶ ଗାନ୍ଧୀଙ୍କ ସହିତ ମିଶି ସେ ଦିନଟିକୁ ସଂଯମ ଓ ସଂକଳ୍ପର ଦିନ ଭାବରେ ପାଳନ କରିଥାଆନ୍ତା। ସେଭଳି କିଛି ହେବାର ନ ଥିଲା। ଦିନ ଓ ବର୍ଷ ଗଡ଼ିବା ସହ ଗାନ୍ଧୀଙ୍କ ଆଶଙ୍କା ଭିତରେ ଲୁଚି ରହିଥିବା ଗଣତାନ୍ତ୍ରିକ ବିକାରଗୁଡ଼ିକ ରୂପ ନେବାରେ ଲାଗିଲେ। ଗଣ ଗୌଣ ହୋଇଚାଲିଲେ, ପ୍ରତିନିଧିମାନେ ପ୍ରତିପତ୍ତିଶାଳୀ ହେଲେ, ଦେଶ ଅର୍ଥନୈତିକ ଅସାମଞ୍ଜସ୍ୟ, ଦୁର୍ନୀତି, ପରିଚାଳନାଗତ ଅପାରଗତା, ହିଂସା, ଅପରାଧ ପ୍ରବଣତା, ବିଚ୍ଛିନ୍ନତାବାଦ ଓ ସର୍ବୋପରି ଦୂରଦୃଷ୍ଟି ସମ୍ପନ୍ନ ନେତୃତ୍ୱହୀନତାର ଶିକାର ହେଲା। ଧନୀ ଦେଶ ଓ ଧନୀ ବ୍ୟକ୍ତିମାନେ ପ୍ରଥମେ ଅର୍ଥନୀତି ଓ ପରେ ତା' ମାଧ୍ୟମରେ ରାଜନୀତିକୁ କବଳିତ କରି ତଥାକଥିତ ଗଣତନ୍ତ୍ରର ମୁଖା ତଳେ ଶାସନର ସୂତ୍ରଧର ହେଲେ। 'ଆମ୍ ଆଦ୍‌ମୀ' ଅର୍ଥନୈତିକ, ସାମାଜିକ, ପ୍ରଶାସନିକ ଓ ନୈତିକ ସବୁ ସ୍ତରରେ ଅତ୍ୟାଚାରିତ ହୋଇ ଆଶାଶୂନ୍ୟ ହୋଇ, କିଂକର୍ତ୍ତବ୍ୟବିମୂଢ଼ ହୋଇ, ଜଳକା ହୋଇ ମହାପାତ୍ରେ ମାରି ନେଉଥିବାର ଖେଳକୁ ଅନାଇ ରହିବା ହିଁ ସାର ହେଲା। ତା' ଜୀବନରେ ଜୀବନ ନ ଥିଲା ପରି।

ସ୍ୱାଧୀନ ଭାରତର ଇତିହାସରେ ୩ଟି ଘଟଣା ବିଶେଷ ଉଲ୍ଲେଖ ଦାବି କରେ, ଯେଉଁ ଗୁଡ଼ିକ ଏ ଆଲୋଚନା ପାଇଁ ପ୍ରାସଙ୍ଗିକ। ସେଗୁଡ଼ିକ ହେଲା ୧୯୭୫ ମସିହାର 'ଇମରଜେନ୍ସି', ୧୯୯୧ର ଏଲ୍‌ପିଜି ଯୁଗର ଆରମ୍ଭ ଓ ୨୦୧୦ ମସିହାର ଏକକାଳୀନ ମହାମହା ଦୁର୍ନୀତିର ପର୍ଦାଫାସ୍। ପ୍ରତ୍ୟେକଟି ଘଟଣା ପଛରେ ଦୁର୍ନୀତିର ଦାନବ ଛପି ରହିଛି ଅବା ଦୁର୍ନୀତିର ଧାରା ଉତ୍ସାହିତ ହୋଇଛି। ୭୦ ଦଶକ ପ୍ରାରମ୍ଭରେ ଜୟପ୍ରକାଶ ନାରାୟଣଙ୍କ 'ସମ୍ପୂର୍ଣ୍ଣ କ୍ରାନ୍ତି' ଡାକରାରେ ସମଗ୍ର ଦେଶରେ ଅଭୂତପୂର୍ବ ଜାଗରଣ ସୃଷ୍ଟି ହୋଇଥିଲା। ୧୯୭୫ରେ କ୍ଷମତାରେ ତିଷ୍ଠି ରହିବା ପାଇଁ ଗଣତାନ୍ତ୍ରିକ ଅଧିକାରର ଦୁହାଇ ଦେଇ ସମ୍ବିଧାନର ମୌଳିକ ଢାଞ୍ଚାର ପରିବର୍ତ୍ତନର ପରିକଳ୍ପନା କରାଯାଇଥିଲା। 'ଇମରଜେନ୍ସି' ଘୋଷଣା କରି ଲୋକଙ୍କ ମୌଳିକ ଅଧିକାର ଉପରେ ଆକ୍ରମଣ

କରାଯାଇଥିଲା। ମାନ୍ୟବର ସୁପ୍ରିମକୋର୍ଟଙ୍କ ହସ୍ତକ୍ଷେପ ଓ ଜନସାଧାରଣଙ୍କ ରାୟ ଫଳରେ ସେ ପ୍ରକାର ଉଦ୍ୟମ ପ୍ରତିହତ ହୋଇଥିଲା। ସେହିଭଳି ୧୯୯୧ ମସିହାରେ ଭାରତରେ ଏଲ୍.ପି.ଜି. ଯୁଗର ପ୍ରବର୍ତ୍ତନ ଆମେରିକା ସରକାରଙ୍କର ହୁକୁମାତିରେ ହୋଇଥିଲା ବୋଲି ଅନେକ ବୁଦ୍ଧିଜୀବୀ ଓ ଜାତୀୟବାଦୀଙ୍କର ସେ ସମୟରେ ମତ ଥିଲା। ସେହି ନୂଆ ଯୁଗର ନୂଆ ନିୟମଗୁଡ଼ିକର ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରୋତ୍ସାହନରେ ହିଁ ଆଜିର ମହାସ୍କାମଗୁଡ଼ିକ ଯେ ଫୁଟି ଉଠିଛନ୍ତି, ତାହା କହିଲେ ଅତ୍ୟୁକ୍ତି ହେବ ନାହିଁ। ଗୋଟେ ପଟେ ବିତ୍ତ ଓ କ୍ଷମତାଶାଳୀ ଲୋକମାନେ ଜି.ଡ଼ି.ପି. ଅଭିବୃଦ୍ଧି ହାର ଦେଖାଇ ଭାରତ ପୃଥିବୀର ଏକ ବୃହତ୍ ଅର୍ଥନୈତିକ ଶକ୍ତି ଭାବରେ ଉଭା ହେବାକୁ କ୍ଷିପ୍ର ଗତିରେ ଆଗଉଥିବାର ଦେଖାଉଥିବାବେଳେ କିଛି ଅର୍ଥନୈତିକ ସମୀକ୍ଷା ଗାଁ-ଗହଳର ଲୋକମାନେ ଦିନକୁ ମାତ୍ର ୨୦ଟି ଟଙ୍କାରେ ନିଜର ଗୁଜରାଣ ମେଣ୍ଟାଉଥିବାର ଦର୍ଶାଉଛି। ଅତଏବ ହାରାହାରି ନ୍ୟାୟରେ ଜି.ଡ଼ି.ପି. ବା ଆୟର ଅଙ୍କ କଷା ଯେ ଭ୍ରମାତ୍ମକ ଏହା ସ୍ପଷ୍ଟ। ତେଣୁ ଗାଁ ଗହଳରେ ରହୁଥିବା ଶତକଡ଼ା ୮୦ ଭାଗ ଲୋକଙ୍କ ପାଇଁ ଅନ୍ୟ ଏକ ଜି.ଡ଼ି.ପି. (ଗ୍ରାମୀଣ ଗ୍ରସ୍ ପ୍ରଡ଼କ୍ଟ) ବା ଅନ୍ୟ ଏକ ଏଚ୍‌ଡ଼ିଆଇ (ଗ୍ରାମୀଣ ହ୍ୟୁମାନ୍ ଡେଭଲପ୍‌ମେଣ୍ଟ ଇଣ୍ଡେକ୍ସ) ଆକଳନର ଆବଶ୍ୟକତା ରହିଛି। ସ୍ୱାଧୀନତାର ୬ ଦଶନ୍ଧି ଅତିବାହିତ ହେଲାପରେ ଯଦି ଭାରତର ପ୍ରତି ବିଦ୍ୟାଳୟରେ କଳାପଟା ଖଣ୍ଡେ ଉପଲବ୍ଧ ନୁହେଁ, ଭାରତରେ ଶିକ୍ଷକ-ଜନସଂଖ୍ୟା ଅନୁପାତ ଅନ୍ୟାନ୍ୟ ଉନ୍ନତ ଓ ବିକାଶଶୀଳ ଦେଶଗୁଡ଼ିକ ତୁଳନାରେ ସର୍ବନିମ୍ନ ସ୍ତରର, ଭାରତର ଶିଳ୍ପ ସଂସ୍ଥାଗୁଡ଼ିକରେ ଉତ୍ପାଦନର ଗୁଣାତ୍ମକ କ୍ରମ ଉନ୍ନତି ପାଇଁ ଗବେଷଣା ଶୂନ୍ୟପ୍ରାୟ ଓ ବିପୁଳ ଭାଗ ଲୋକଙ୍କ ପାଖରେ ଜୀବନଧାରଣର ସର୍ବନିମ୍ନ ସୁବିଧା ଅପହଞ୍ଚ, ସେ ଭାରତ ଯେ ଜି.ଡ଼ି.ପି. ନ୍ୟାୟରେ ବା ଲାଭଖୋର ଶିଳ୍ପପତି ବା ଶିଳ୍ପୋନ୍ନତ ଦେଶଙ୍କ ଭୁଲାଣିଆ କଥାରେ ପୃଥିବୀରେ ଏକ ଶକ୍ତିଶାଳୀ ଦେଶ ହୋଇ ଉଭା ହୋଇପାରିବ ନାହିଁ, ଏହା କହିବା ବାହୁଲ୍ୟ।

ଗାନ୍ଧୀଜିଙ୍କ ପରିକଳ୍ପିତ ସ୍ୱଦେଶୀ ଚିନ୍ତା ପ୍ରସୂତ ସମାଜନୀତି, ଅର୍ଥନୀତି ଓ 'ନଇ ତାଲିମ' ଭଳି ଶିକ୍ଷାନୀତି ଇତ୍ୟାଦିକୁ ନୀତିଗତ ଭାବରେ ଉପେକ୍ଷା କରି, ପାଶ୍ଚାତ୍ୟ ପ୍ରରୋଚିତ ପ୍ରଗତିର ମଡେଲକୁ ଆପଣେଇ ଆମେ ନା ଏ କୂଳର ହୋଇପାରିଛୁ ନା ସେ କୂଳର। କୌଣସି ଗୋଟିଏ କୂଳ ଛୁଇଁବାର ସମ୍ଭାବନା ମଧ୍ୟ କ୍ଷୀଣ। ଫଳ ବରଂ ଏତିକି ହୋଇଛି ଯେ ଗଣତନ୍ତ୍ରର ଏକ କଦାକାର ପ୍ରଚଳନ ମାଧ୍ୟମରେ ଦୁର୍ନୀତି ଭାରତୀୟ ଜନଜୀବନର ଶିରାପ୍ରଶିରାକୁ ସଂକ୍ରମଣ କରିଛି। ଯେଉଁ ଦୁର୍ନୀତି ସ୍ୱାଧୀନତାର

ପ୍ରାକ୍ କାଳରେ ଛୋଟ ଛୋଟ ଘରା ଭଳି ଏଠି ସେଠି କାଁ ଭାଁ ଦୃଶ୍ୟମାନ ହେଉଥିଲା, ସେ ସବୁ ବିରାଟ ଦ୍ରୁମମାନଙ୍କର ରୂପ ନେଇ ଜନଜୀବନର ପ୍ରତି ସ୍ତରକୁ ସେମାନଙ୍କ ଶାଖାପ୍ରଶାଖାରେ କବଳିତ କରିଛି। ସେହି କଳୁଷିତ ବାତାବରଣରେ ଅଥୟ ଅତିଷ୍ଠ ହୋଇ ଆଜି ଆସିଛି 'ଆନ୍ନା ହଜାରେ'ଙ୍କ ନେତୃତ୍ୱରେ ଏକ ବଳିଷ୍ଠ (ଜନ) ଲୋକପାଳ ବିଲ୍ ମାଧ୍ୟମରେ ଦୁର୍ନୀତିମୁକ୍ତ ଭାରତ ପ୍ରତିଷ୍ଠା ଆନ୍ଦୋଳନ ଓ ସେଥିପ୍ରତି ସମଗ୍ର ଦେଶବାସୀଙ୍କର କଳ୍ପନାତୀତ ସ୍ୱତଃସ୍ଫୂର୍ତ୍ତ ସମର୍ଥନ।

ଗଣତାନ୍ତ୍ରିକ ଭାରତରେ ଏହି ଦୁର୍ନୀତିମୁକ୍ତ-ଭାରତ ଆନ୍ଦୋଳନ ପ୍ରବଳ ଜନସମର୍ଥନ ସତ୍ତ୍ୱେ, କେନ୍ଦ୍ର ସରକାର ଓ ବିଭିନ୍ନ ଦଳୀୟ ନେତାମାନଙ୍କର ପ୍ରବଳ ପ୍ରତିରୋଧର ଶିକାର ହୋଇଛି। ଆନ୍ଦୋଳନ ବିରୋଧୀ ଯୁକ୍ତିଗୁଡ଼ିକ ଭିତରେ ପ୍ରମୁଖ କେତୋଟି ହେଲା; କେବଳ ଲୋକପାଳ ବିଲ୍ ଅନୁମୋଦିତ ହୋଇଗଲେ ଦୁର୍ନୀତି ହଟିଯିବ ନାହିଁ; ବିଲ୍‌କୁ ନିୟମରେ ପରିଣତ କରିବାର ଅଧିକାର କେବଳ ପାର୍ଲାମେଣ୍ଟର, ରାସ୍ତାଘାଟରେ ଆନ୍ଦୋଳନକାରୀଙ୍କର ନୁହେଁ ଓ ସରକାରଙ୍କୁ କୌଣସି ବେସରକାରୀ ଦଲିଲକୁ ନିୟମର ରୂପ ଦେବା ପାଇଁ ବାଧ୍ୟ କରିବା ଅଗଣତାନ୍ତ୍ରିକ। ସମସ୍ତେ ଜାଣନ୍ତି ଯେ ନିୟମ ପ୍ରଣୟନକାରୀ, କାର୍ଯ୍ୟନିର୍ବାହୀ ଓ ନ୍ୟାୟପାଳିକା ସଂସ୍ଥାଗୁଡ଼ିକର ତଥା ସାଧାରଣ ନାଗରିକର ଆନ୍ତରିକତା ବିନା ଦୁର୍ନୀତି ଲୋପ ପାଇବା ଅସମ୍ଭବ, ଯାହା ହିଁ ବିଗତ ୬୦ ବର୍ଷ ଧରି ଘଟି ଆସୁଛି। କିନ୍ତୁ ବର୍ତ୍ତମାନ ସୁଦ୍ଧା ଏହା ପରିଷ୍କାର ହୋଇଛି ଯେ ପ୍ରଚଳିତ ନିୟମରେ ଥିବା ଅସଂଖ୍ୟ ଫାଙ୍କ ଦେଇ ବିଭିନ୍ନ ବର୍ଗର ଅପରାଧୀମାନେ ଖସି ଯାଉଛନ୍ତି। ସେଥିପାଇଁ ଏକ କଠୋର ତ୍ରୁଟିଶୂନ୍ୟ ଦୁର୍ନୀତି ବିରୋଧୀ ଆଇନ୍ ଅପରିହାର୍ଯ୍ୟ ଯାହା କି ଦାୟିତ୍ୱ ସଂପାଦନରେ ଅବହେଳା ବା ଅପରାଧ କରୁଥିବା ଲୋକର ଖସିବାର ବାଟ ବନ୍ଦ କରିପାରିବ। ତାହା ହିଁ ଜନ ଲୋକପାଳ ବିଲ୍‌ର ମୂଳ ଉଦ୍ଦେଶ୍ୟ। ଦ୍ୱିତୀୟରେ ପାର୍ଲାମେଣ୍ଟର ନିୟମ ପ୍ରଣୟନ କ୍ଷମତାର ସଙ୍କୋଚନ କେହି ଦାବି କରୁ ନାହିଁ ବରଂ ଲୋକପାଳ ନିୟମ ପାରିତ କରିବ କରିବ କହି ଯଦି ଦୀର୍ଘ ୪୦ ବର୍ଷ ପାର୍ଲାମେଣ୍ଟ ତା'ର ସାମ୍ବିଧାନିକ ଦାୟିତ୍ୱ ସଂପାଦନ ନ କରେ ବା କେନ୍ଦ୍ର ସରକାର ୬୦ ବର୍ଷ ଧରି ସୁଫଳ ଦେଇପାରୁନଥିବା ନିୟମଗୁଡ଼ିକ ଭଳି ଏକ ନିୟମ ପ୍ରଣୟନ ପ୍ରତି ପରିସ୍ଥିତିର ବାଧ୍ୟବାଧକତାରେ ଆଗ୍ରହ ପ୍ରକାଶର ଛଳନା କରେ, ତେବେ ଦେଶବାସୀ ଚାହୁଁଥିବା ବିଲ୍‌ଟିକୁ ନିୟମରେ ପରିଣତ କରିବା ପାଇଁ ଜନତା ପାର୍ଲାମେଣ୍ଟ ଆଗରେ ଥୋଇବା ପାଇଁ ଦାବି କରିବାରେ ଅଗଣତାନ୍ତ୍ରିକତା କେଉଁଠି ? ଚେଇଁ ଶୋଇଥିବା ଲୋକକୁ କେବଳ ବାଧ୍ୟ କରି ହିଁ ଉଠାଯାଇପାରେ। କହିବା

ବାହୁଲ୍ୟ ଯେ ପାର୍ଲାମେଣ୍ଟ ଓ ସରକାର ସମ୍ବିଧାନର ସୃଷ୍ଟି ଓ ସମ୍ବିଧାନ ଦେଶବାସୀଙ୍କର ସମ୍ମିଳିତ ଆଶା ଆକାଂକ୍ଷାରୁ ସୃଷ୍ଟି । ତେଣୁ କେବେ ଯଦି ପାର୍ଲାମେଣ୍ଟ ବା ସରକାର ଦେଶବାସୀଙ୍କର ସମ୍ମିଳିତ ଆଶା ଆକାଂକ୍ଷାର ବିରୋଧ କରେ ସେତେବେଳେ ସେମାନଙ୍କର ପ୍ରତାରଣାପୂର୍ଣ୍ଣ ଅଗଣତାନ୍ତ୍ରିକ ମନୋଭାବର ପରିଚୟ ମିଳେ, ଲୋକମାନଙ୍କର ନୁହେଁ । କାରଣ ଲୋକମାନଙ୍କ ଇଚ୍ଛା ହିଁ ଗଣତନ୍ତ୍ରର ସଂଜ୍ଞା ନିରୂପଣ କରେ; ପ୍ରତିନିଧିମାନଙ୍କର ଇଚ୍ଛା ନୁହେଁ କି ସରକାରଙ୍କର ଇଚ୍ଛା ନୁହେଁ ।

ମହାଆନନ୍ଦର କଥା ଯେ ଆନ୍ନାଙ୍କ ଆହ୍ୱାନକୁ ଦେଶର ଯୁବ ପିଢ଼ିର ଆଶାତୀତ ସମର୍ଥନ ମିଳିଛି । ସେମାନଙ୍କ ଉପର ପିଢ଼ିର ମୋଟାମୋଟି ବିଫଳତା ପରେ ଯୁବପିଢ଼ି ହାତରେ ଦେଶର ଭବିଷ୍ୟତ ସୁରକ୍ଷିତ ବୋଲି ଆଶାର ଉଦ୍ରେକ ହୋଇଛି । ଟ୍ୱିଟର୍, ଫେସ୍‌ବୁକ୍, ଇମେଲ୍, ଏସ୍‌ଏମ୍‌ଏସ୍, ଟେଲିଭିଜନ ଭଳି ଗଣସମ୍ପର୍କର ସମସ୍ତ ଆଧୁନିକ ମାଧ୍ୟମରେ ଗୁଞ୍ଜରିତ ହେଉଥିବା 'ଆଇ ୱାଣ୍ଟ୍ ଏ କରପ୍‌ସନ୍ ଫ୍ରି ଇଣ୍ଡିଆ', 'ଆନ୍ନା, ତୁମ୍ ଆଗେ ବଢ଼ୋ, ହମ୍ ତୁମ୍‌ହାରେ ସାଥ୍ ହେଁ' ଓ 'ମେଁ ଆନ୍ନା ହୁଁ' ଭଳି ସମସ୍ତ ସନ୍ଦେଶ ଏକ ସୁପ୍ରଭାତର କାକଳି ଭଳି ଦେଶବାସୀଙ୍କ ପାଇଁ ଆନନ୍ଦମୟ ଭବିଷ୍ୟତ ଗଠନରେ ପୂର୍ଣ୍ଣତାଲାଭ କରୁ । କିନ୍ତୁ ସିନ୍ଦୁରା ଫାଟିବାର ସାମାନ୍ୟ ସୂଚନାକୁ ସୁପ୍ରଭାତ ବୋଲି ଧରି ନେଲେ ଐତିହାସିକ ଭ୍ରମ ହେବ । ନିରନ୍ତର ପ୍ରଚେଷ୍ଟାରତ ଭାବରେ ଧୈର୍ଯ୍ୟର ସହ ସୁପ୍ରଭାତର ପ୍ରତିକ୍ଷା କରିବା ହିଁ ସମୟର ବିରାଟ ଆହ୍ୱାନ ।



# ବ୍ୟବସାୟିକତାର ପୂର୍ଣ୍ଣ ଗ୍ରାସ

କିଛି ମାସ ତଳର କଥା। ଗୋଟିଏ ନକ୍ଷତ୍ର ଗୋଟିଏ କୃଷ୍ଣଗର୍ତ୍ତ ମଧ୍ୟରେ ଲୀନ ହୋଇଯିବାର ଖବରଟି ବାହାରିଥିଲା। ଆମେରିକାର ନାସା ସଂସ୍ଥା ଦ୍ୱାରା ପ୍ରେରିତ ସ୍ୱିଫ୍‌ଟ ଉପଗ୍ରହ ଏହି ବିରଳ ମହାଜାଗତିକ ଘଟଣାର ଛାୟାଚିତ୍ର ଉତ୍ତୋଳନରେ ସକ୍ଷମ ହୋଇଛି। ଘଟଣାଟି ଘଟିଛି ଆମଠାରୁ ପ୍ରାୟ ୩୮୦ କୋଟି ଆଲୋକ ବର୍ଷ ଦୂରରେ। ବ୍ରହ୍ମାଣ୍ଡ ବିଜ୍ଞାନୀଙ୍କ ପାଇଁ ଏହି ଘଟଣାଟି ବହୁ ଆନନ୍ଦ ତଥା ଗୁରୁତ୍ୱପୂର୍ଣ୍ଣ ଗବେଷଣାର ଆଧାର ପାଲଟି ଯାଇଛି। ବୈଜ୍ଞାନିକମାନେ ମଧ୍ୟ ବୁଝିପାରିଛନ୍ତି ଯେ ଏହି ଘଟଣାର ଅନ୍ତରାଳରେ ଲୁଚି ରହିଥିବା ମୁଖ୍ୟ ନାୟକ ବା ଖଳନାୟକ ହେଉଛି ମହାକର୍ଷଣ ବଳ ଯିଏ କି ସମସ୍ତ ମହାଜାଗତିକ ସ୍ଥାପତ୍ୟର ମୁଖ୍ୟ ବିନ୍ଧାଣି।

କିନ୍ତୁ ଆମ ଠାରୁ କାହିଁ କେଉଁ କଳ୍ପନାତୀତ ଦୂରରେ ନୁହେଁ, ଆମ ଘରିପଟେ ମଧ୍ୟ ଏହିଭଳି ଏକ ଘଟଣା କ୍ଷିପ୍ରତାର ସହ ଅଭିନୀତ ହେବାରେ ଲାଗିଛି; ମଣିଷର ସମଗ୍ର କର୍ମ, ଚିନ୍ତା ଓ ଚେତନା ଅର୍ଥାତ୍ ସମଗ୍ର ଜୀବନ ବ୍ୟବସାୟିକତାର 'କୃଷ୍ଣଗର୍ତ୍ତ' ଦ୍ୱାରା କବଳିତ ହୋଇଗଲାଣି। ଏ କ୍ଷେତ୍ରରେ ମଧ୍ୟ ନାୟକ ବା ଖଳନାୟକ ଭାବେ ଅବତୀର୍ଣ୍ଣ ହୋଇଛି ଆଉ ଏକ ମହାଆକର୍ଷଣ-ବିତ୍ତୀୟଲାଭର ମହାକର୍ଷଣ। ବାଣିଜ୍ୟ ଜୀବନର ଆଧାର ନ ହୋଇ ଜୀବନକୁ ଗ୍ରାସ କରିବାର ସିଦ୍ଧିଲାଭ କରୁଛି। ଆଧୁନିକ ଜନଜୀବନର ଛତ୍ରେ ଛତ୍ରେ ସେହି ବ୍ୟବସାୟୀ ଭାବ ଓ ଭାଷାର ଚଳଚ୍ଚିତ୍ର ପଦର୍ଶିତ ହୋଇଚାଲିଛି। ଏହା କିନ୍ତୁ ସମାଜବିଜ୍ଞାନୀମାନଙ୍କ ଗବେଷଣାର କ୍ଷେତ୍ର ହୋଇଛି କି ନା ଜଣାନାହିଁ।

ବ୍ୟବସାୟିକତାର ଆକର୍ଷଣରେ ଆଜିର ମଣିଷ ଏତେଦୂର ଆକ୍ରାନ୍ତ ଯେ ଅଧିକାଂଶ ନାଟକ, ଡ୍ରାମା, ଟେଲିଭିଜନରେ ପ୍ରଦର୍ଶିତ ହେଉଥିବା ଧାରାବାହିକଗୁଡ଼ିକର ମୁଖ୍ୟ ଚରିତ୍ରଗୁଡ଼ିକ ପୁରୁଷ, ସ୍ତ୍ରୀ ନିର୍ବିଶେଷରେ ବ୍ୟବସାୟୀ। କିଛିବର୍ଷ ତଳେ ହୁଏତ ସେ ସ୍ଥାନରେ ଥିଲେ ଶିକ୍ଷକ, ଡାକ୍ତର, ଇଞ୍ଜିନିୟର, ଅଫିସରମାନେ। ଆଜି ସେ

★ ଦୈନିକ "ସମ୍ବାଦ", ମେ ୩୦, ୨୦୧୨

ଚରିତ୍ରମାନଙ୍କରେ କିନ୍ତୁ ବଡ଼ ବଡ଼ ବ୍ୟବସାୟୀ ଆସ୍ଥାନ ଜମାଇଛନ୍ତି । ମନୋରଞ୍ଜନଧର୍ମୀ ହେଲେ ମଧ୍ୟ ଏହା ଯେ ସାଂପ୍ରତିକ ସମାଜର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ପ୍ରତି ଇଙ୍ଗିତ କରୁଛି ଏଥିରେ ସନ୍ଦେହ ନାହିଁ ।

ଭାରତ ନିଜକୁ ଏକ ଜନମଙ୍ଗଳ ରାଷ୍ଟ୍ର ଭାବରେ ଘୋଷଣା କରିବା ସତ୍ତ୍ୱେ ପ୍ରଶାସନିକ କ୍ଷେତ୍ରରେ ଜନମଙ୍ଗଳ ଭାବନାକୁ ପଛକୁ ପେଲି ବ୍ୟବସାୟିକତା ହିଁ ନମ୍ବର ଓ୍ୱାନ୍ ସ୍ଥାନ ଅକ୍ତିଆର କରି ବସିଛି । ବ୍ୟବସାୟୀ ମନୋବୃତ୍ତିର ଚେର ଏତେ ଗଭୀରକୁ ଗଲାଣି ଯେ ନିକଟରେ ଏକ ସଂସଦୀୟ କମିଟି ସରକାରୀ ବଡ଼ବାବୁମାନେ ଚାକିରି ନିବୃତ୍ତ ହେବାର ଅବ୍ୟବହିତ ପୂର୍ବରୁ ବିଭିନ୍ନ ଗଣ୍ୟମାନ୍ୟ ଶିଳ୍ପୋଦ୍ୟୋଗ ବା ବେସରକାରୀ ସଂସ୍ଥାମାନଙ୍କୁ ଦେଖାଉଥିବା ଅହେତୁକ ଅନୁକମ୍ପାର ଅନୁସନ୍ଧାନ କରିବା ସପକ୍ଷରେ ଯୁକ୍ତି ବାଢ଼ିଛନ୍ତି । ସ୍ଥଳ ବିଶେଷରେ ଉପରୋକ୍ତ ବଡ଼ବାବୁମାନେ ସେହି ସେହି ସଂସ୍ଥାଗୁଡ଼ିକ ଦ୍ୱାରା ବିଭିନ୍ନ ଭାବରେ ଅନୁଗୃହୀତ ହେବାର ତଥା ପ୍ରଭୂତ ସରକାରୀ ତହବିଲ କ୍ଷତିର କାରଣ ହେବାର ଉଦାହରଣ ହିଁ ଏପରି ଚିନ୍ତାର ସୂତ୍ରପାତ କରିଛି । ମୋଟାମୋଟି ଭାବରେ କହିଲେ ଏହି ବଡ଼ବାବୁମାନେ ହିଁ ବେସରକାରୀ ଉଦ୍ୟୋଗଗୁଡ଼ିକର "ଇନ୍‌ଫର୍ମର୍" ଭାବେ କାର୍ଯ୍ୟ କରିଆଆନ୍ତି ନିଜ ନିଜ ବିଭାଗର ଗୁରୁତ୍ୱପୂର୍ଣ୍ଣ ସୂଚନା ତଥା ଭବିଷ୍ୟତ ଯୋଜନା ଖବରକୁ ନେଇ। ବାଡ଼ ଖେତ ଖାଇ ଚାଲିଛି । ଦେଶର ଶୈକ୍ଷିକ ପ୍ରଶାସନ ମଧ୍ୟ ଏହି ଚଞ୍ଚଳତାରୁ ମୁକ୍ତ ନୁହେଁ। ଗୋଟେ ପଟେ ୟୁଜିସି, ଆଇଏମ୍‌ସି ଓ ଏଆଇସିଟିଇ ଭଳି ବିଭିନ୍ନ ଶିକ୍ଷା ସମ୍ବନ୍ଧିତ କାର୍ଯ୍ୟାଳୟର ମୁଖ୍ୟମାନେ ଅବସର ପରେ ବିତ୍ତଶାଳୀ ବେସରକାରୀ ସଂସ୍ଥାଗୁଡ଼ିକରେ ଚାକିରି ଗ୍ରହଣ କରୁଛନ୍ତି ତ ଅନ୍ୟପଟେ ସେମାନଙ୍କ ମଧ୍ୟରୁ କିଛି ଲାଞ୍ଚ ଗ୍ରହଣ ଅଭିଯୋଗରେ ଗିରଫ ହେଉଛନ୍ତି । ଉଭୟ କାର୍ଯ୍ୟ ଏମାନଙ୍କ ଉଚ୍ଚପଦ ଅଧିକାର କରିବାର ଅଯୋଗ୍ୟତା ତଥା ଚାରିତ୍ରିକ ସ୍ଖଳନର ସୂଚନା ଦେଉଛି । ସେଇଥିପାଇଁ ବୋଧହୁଏ ଅଯୋଗ୍ୟମାନଙ୍କର ଆସନ ଗ୍ରହଣର ମହାସମାରୋହରେ ସାରା ଭାରତ ଝୁମୁଛି । ନିରୋଳା ଶିକ୍ଷା କ୍ଷେତ୍ରକୁ ମଧ୍ୟ ଏ ରୋଗ ବ୍ୟାପୁଛି । ଯେଉଁ ଶିକ୍ଷକମାନେ ଚାକିରି କାଳରେ କ୍ଲାସ୍ ନେବାକୁ ବହୁତ ବିମୁଖ ଥିଲେ, ଚାକିରିରୁ ଅବସର ଗ୍ରହଣ ପରେ ବୟସାଧିକ୍ୟ ସତ୍ତ୍ୱେ ବିଭିନ୍ନ ବେସରକାରୀ ଶିକ୍ଷାନୁଷ୍ଠାନଗୁଡ଼ିକରେ ପାଠ ପଢ଼ାଇବା ପାଇଁ ଅତିଶୟ ଆଗ୍ରହ ପ୍ରଦର୍ଶନ କରୁଛନ୍ତି । କିମାଶ୍ଚର୍ଯ୍ୟଂ ?

କହିବା ବାହୁଲ୍ୟ ଯେ ଆଜି ରାଜନୀତି ଓ ଅର୍ଥନୀତି ନିବିଡ଼ ଭାବରେ ଛନ୍ଦାଛନ୍ଦି ହୋଇପଡ଼ିଛନ୍ତି । ଆଜି ଅର୍ଥନୀତି ହିଁ ଅସଲ ରାଜନୀତି । ସେଇଥିପାଇଁ ସୁମାକର ତାଙ୍କୁ

ବିଖ୍ୟାତ ପୁସ୍ତକ "Small is Beautiful"ରେ କହିଥିଲେ, "Today the main content of politics is economics", ଅର୍ଥାତ୍ ଆଜି ରାଜନୀତିର ମୁଖ୍ୟ କଥାବସ୍ତୁ ହେଲା ଅର୍ଥନୀତି। ଏହା ମଧ୍ୟ ସମସ୍ତଙ୍କୁ ଜଣା ଯେ ବ୍ୟବସାୟିକତା ହିଁ ଅର୍ଥନୀତିର ଅନ୍ତରାତ୍ମା, ତେଣୁ ଆଜିର ରାଜନୀତିରେ ବେପାରୀବୃତ୍ତି ସିଂହାସନାରୂଢ଼ ହେବାରେ କିଛି ଅସ୍ୱାଭାବିକତା ନାହିଁ। ରାଜ୍ୟ, ଜାତୀୟ ତଥା ଆନ୍ତର୍ଜାତିକ ରାଜନୈତିକ ଦୃଶ୍ୟପଟରେ ଏହାର ଅନେକ ଅନେକ ଉଦାହରଣ ଅତ୍ୟନ୍ତ ଉଜ୍ଜ୍ୱଳ। ଗୋଟିଏ ହେଲା ମାଗଣା ଡାଲି, ଚାଉଳ, ତେଲ, ଲୁଣ, ପାଣି, ବିଦ୍ୟୁତ୍ ଶକ୍ତି ଯୋଗାଇ ଦେବାର କାର୍ଯ୍ୟକ୍ରମ ମାଧ୍ୟମରେ ଲୋକମାନଙ୍କ ମନରୁ କର୍ମପ୍ରବୃତ୍ତି ନଷ୍ଟ କରି କାଳ କାଳ ପାଇଁ ସେମାନଙ୍କୁ ସରକାରୀ ହାତଟେକା ଅନୁଦାନ ଉପରେ ନିର୍ଭରଶୀଳ କରାଇବା; ସେମାନଙ୍କୁ ପ୍ରକାରାନ୍ତରେ 'ସରକାରୀ ଭିକାରି' ସଜାଇବା। ଆଉ ଏ ମାଗଣା ମହୋତ୍ସବର ମୂଳ ଉଦ୍ଦେଶ୍ୟ ଜନମଙ୍ଗଳକାରୀ ଯେତେ ନୁହେଁ, ତା'ଠୁ ବହୁଗୁଣରେ ଅଧିକ ଶାସନକୁ ଅକ୍ତିଆର କରିବା ବା ସେଥିରେ ବର୍ଷ ବର୍ଷ ଧରି ଅଧିଷ୍ଠିତ ରହିବା। ଅର୍ଥଲାଭ ହେଉ କି ପଦଲାଭ ହେଉ; ଲାଭ ହିଁ ତ ସବୁ କାର୍ଯ୍ୟକ୍ରମର ମୂଳରେ। ପଦଲାଭ ତ ଅର୍ଥଲାଭର ଉତ୍କୃଷ୍ଟ ମାଧ୍ୟମ ଭାବେ ଉଭା ହୋଇଛି। ତେଣୁ ଉଭୟ ବ୍ୟବସାୟିକତା-ପ୍ରେରିତ ନୁହେଁ ତ ଆଉ କ'ଣ? ସେଇଥିପାଇଁ ତ ବହୁସଂଖ୍ୟକ ସରକାରୀ କାର୍ଯ୍ୟକ୍ରମକୁ ଜଣେ ଜଣେ ବ୍ୟକ୍ତିବିଶେଷଙ୍କ ନାମରେ ନାମିତ କରି ସେହି ବ୍ୟକ୍ତିବିଶେଷଙ୍କ ସମ୍ପର୍କୀୟଙ୍କ ବା ସମ୍ପର୍କିତ ଦଳର ଶାସନରେ ଆଧିପତ୍ୟ ବଜାୟ ରଖିବାର ଅପଚେଷ୍ଟା କରାଯାଉଛି।

ଆନ୍ତର୍ଜାତିକ ରାଜନୀତିରେ ବେପାର-ବଣିଜର ସ୍ୱର ବେଶ୍ ଉଗ୍ର। ବର୍ତ୍ତମାନର ଧ୍ରୁବୀୟ ଆନ୍ତର୍ଜାତିକ ପରିବେଶ ପରିପ୍ରେକ୍ଷୀରେ ଆମେରିକା, ଗଣତନ୍ତ୍ରର ଓଢ଼ଣି ତଳେ ଉଗ୍ର ବ୍ୟବସାୟିକତାର ଏକଚାଟିଆ ଖେଳ ଖେଳିଚାଲିଛି। ଚିଲିରେ ସମାଜବାଦକୁ ମୂଳପୋଛ କରିବା ଉଦ୍ଦେଶ୍ୟରେ ରାଷ୍ଟ୍ରପତି ଆୟେଣ୍ଡେଙ୍କ ହତ୍ୟା, ମିଛ ବାହାନାରେ ଇରାକ୍‌ର ତେଲ ଉପରେ କବ୍‌ଜା କରିବା ପାଇଁ ସଦ୍ଦାମ ହୁସେନ୍‌ଙ୍କ ହତ୍ୟା, W.T.O, GATT, IMF, WORLD BANK ସଦୃଶ ବିତ୍ତୀୟ ଅନୁଷ୍ଠାନଗୁଡ଼ିକ ମାଧ୍ୟମରେ ଭାରତ ଭଳି ଗରିବ ଦେଶର ସରକାରଗୁଡ଼ିକୁ ଡରାଇ ଥରାଇ କବଳିତ କରି ରଖିବାର ଉଦ୍ୟମ ଏହି ବୃହତ୍ତର ଖେଳର ଅଂଶବିଶେଷ। ଭାରତ କ୍ଷେତ୍ରରେ ତତ୍କାଳୀନ ପ୍ରଧାନମନ୍ତ୍ରୀଙ୍କ ଉପରେ ଚାପ ପକାଇ ଭୋପାଳ ଗ୍ୟାସ୍ ଦୁର୍ଘଟଣାର ମୁଖ୍ୟ ଅଭିଯୁକ୍ତ ୟୁନିଅନ୍ କାର୍ବାଇଡ୍ କମ୍ପାନିର ଅଧ୍ୟକ୍ଷ ୱାରେନ୍ ଆଣ୍ଡରସନ୍‌ଙ୍କୁ ରାତାରାତି ଆମେରିକା

ପ୍ରେରଣ, ୧୯୯୧ରେ ଅର୍ଥନୈତିକ ଚପ ପକାଇ ଏଲ୍‌ପିଜି ପ୍ରବର୍ତ୍ତନ ମାଧ୍ୟମରେ ମହା ମହା ଦୁର୍ନୀତିର ତଥା ଅପ୍ରତିହତ ଅର୍ଥନୈତିକ ବୈଷମ୍ୟର ବୀଜବପନ, ୨୦୦୭ ମସିହାରେ ଭାରତ ସରକାରଙ୍କୁ ବାଧ୍ୟ କରି ଶକ୍ତିସଙ୍କଟ ଦୂରୀକରଣର ମିଥ୍ୟା ପ୍ରତିଶ୍ରୁତି ଛଳରେ ନ୍ୟୁକ୍ଲିୟର ବା ଆଣବିକଚୁକ୍ତି ସମ୍ପାଦନ, ବର୍ତ୍ତମାନ କାଳରେ ଭାରତର ଖୁଚୁରା ବଜାରରେ ଏଫ୍‌ଡ଼ିଆଇ ପୁଞ୍ଜି ନିବେଶ କରିବା ଓ ଇରାନ୍‌ର ଅଶୋଧିତ ତେଲ ଆମଦାନିକୁ ଧୀରେ ଧୀରେ ସମ୍ପୂର୍ଣ୍ଣ ବନ୍ଦ ପାଇଁ ଚପ ପ୍ରୟୋଗ ଇତ୍ୟାଦି ଗୋଟିଏ ଗୋଟିଏ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ଏପରିକି କୁହାଯାଉଛି ଯେ ଆମେରିକାର ପର ରାଷ୍ଟ୍ର ସଚିବ ହିଲାରି କ୍ଲିଣ୍ଟନ୍ ପଶ୍ଚିମବଙ୍ଗ ମୁଖ୍ୟମନ୍ତ୍ରୀ ମମତା ବାନାର୍ଜୀଙ୍କୁ ଭେଟିବାର ଭିତିରି ଉଦ୍ଦେଶ୍ୟ ଥିଲା ୟୁପିଏ ସରକାରକୁ ସେ ଅଧିକ ଅସୁବିଧାରେ ନ ପକାଇବା ପାଇଁ ତାଗିଦ୍ କରିବା । ଏହା ଯଦି ସତ ହୁଏ, ତେବେ ବୁଝିବାକୁ କ'ଣ ବାକି ରହିବ ଯେ ସରକାର ସିନା ଭାରତର କିନ୍ତୁ ଶାସନ ଆମେରିକାର । ଏହା ହିଁ ତ ଅର୍ଥନୈତିକ ଉପନିବେଶବାଦ ପ୍ରଣୋଦିତ ବ୍ୟବସାୟିକତା ପୂର୍ଣ୍ଣଗ୍ରାସର ମୁଖ୍ୟ ପାଠ ।

ଛାଡ଼ନ୍ତୁ ସେ ସବୁ କଥା । ପତ୍ର ଗୋଟାଇବା ଲୋକର ତୋଟା ମୂଲ କରି ଲାଭ କ'ଣ ? ଫେରି ଆସିବା ନିଜ ଜୀବନ ପାଖକୁ । ପରିବାର ଓ ପଡ଼ୋଶୀଙ୍କ ନିକଟକୁ । ସେଠି ବି, ଆଜ୍ଞା, ତ୍ରାହି ନାହିଁ । ସେଠି ବି ଦେଖିବେ ବ୍ୟବସାୟିକତାର କରାଳ ରୂପ । ସମ୍ପର୍କର ଯୁଗୋପଯୋଗୀ ସଂଜ୍ଞା ନିରୂପିତ ହୋଇସାରିଛି । ସେଇଟି ହେଲା; କାମ ଅଛି ତ ସମ୍ପର୍କ ଅଛି, କାମ ନାହିଁ ତ ସମ୍ପର୍କ ନାହିଁ । ସ୍ୱାର୍ଥାନ୍ୱେଷୀ ବ୍ୟବସାୟିକତାର ଉଷ୍ଣ ପ୍ରବାହରେ ହାର୍ଦ୍ଦିକ ସମ୍ପର୍କର ସବୁଜିମା ମଧ୍ୟ ଶୁଷ୍କ ଓ ଉଦାସ । ସ୍ନେହସିକ୍ତ ସମ୍ପର୍କ ସବୁ ଶୀତ ସକାଳର ଗଙ୍ଗଶିଉଳି ଭଳି ଟୁପ୍‌ଟାପ୍ ହୋଇ ଭୂଲୁଣ୍ଠିତ ହେଉଛନ୍ତି । ସତେ ଯେପରି "ବିଜନତାର ବେଶ ମୋହନ"ର ସଂଦର୍ଶନରେ ଶାନ୍ତି ପାଇବାକୁ ସମସ୍ତେ ବାଧ୍ୟ । କିନ୍ତୁ ସମସ୍ତଙ୍କର ସେ 'ମୁନି ନୟନ' ଥିଲେ ତ ! ପୁଣି ସମସ୍ତେ ମୁନି-ଋଷି ହୋଇଗଲେ ସମାଜରେ ରହିବ କିଏ ବା ସମାଜ ରହିବ କାହା ପାଇଁ ।

ସବୁ ଦେଖି ଶୁଣି ପୁରୁଣା କାଳିଆ ମନଟା ଖାଲି ବିଳପି ବିଳପି କହିଚାଲିଛି । "ଏତେ ଚଲାଖି ଚତୁରୀକୁ ଧର୍ମ ସହିଲେ ହେଲା" । ଧର୍ମ ସହିବ କି ନ ସହିବ ସେ କଥା ତ ସମୟ କହିବ, କିନ୍ତୁ ଆମ କ୍ଷୁଦ୍ର ବୁଦ୍ଧିରେ ଆମେ ଅନ୍ତତଃ ଏତିକି ଜାଣିପାରୁଛେ ଯେ ଜୀବନର ପରିବ୍ୟାପ୍ତ ପୃଷ୍ଠପଟରେ ବ୍ୟବସାୟିକତାର କିଛି ଉପସ୍ଥିତି ଥାଇପାରେ, କିନ୍ତୁ ବ୍ୟବସାୟିକତାର ସଂକୀର୍ଣ୍ଣ ଗହ୍ୱର ମଧ୍ୟରେ ଜୀବନର ମୃତ୍ୟୁ ଅବସମ୍ଭାବୀ । ଏ କଥା କ'ଣ ମିଛ ?

□□□

# ନାହିଁ, ଆମେ ପାରିବା ନାହିଁ

ମୂଳରୁ କହି ରଖିବା ଉଚିତ ହେବ ଯେ ଏହି ଉପସ୍ଥାପନାଟି ସୌମ୍ୟବାବୁଙ୍କ 'ହଁ, ଆମେ ପାରିବା' ଭଳି ଆମ ସାମର୍ଥ୍ୟର ଏକ ଉଚ୍ଚାଙ୍ଗ ଅଭିବ୍ୟକ୍ତି ପ୍ରେରିତ ଏକ ସରଳ ପ୍ରତିବେଦନ। ଶୀର୍ଷକ ଦୁଇଟିର ବିରୋଧାଭାସ ସତ୍ତ୍ୱେ ଉଭୟଙ୍କର ସୃଷ୍ଟି ଗୋଟିଏ ଅନ୍ତଃସ୍ଥଳରୁ; ଓଡ଼ିଆ ଓ ଓଡ଼ିଶା ମନସ୍କତାରୁ। ଦୃଶ୍ୟ ଏକ; ସ୍ୱାଧୀନୋତ୍ତର ଓଡ଼ିଶା ଓ ଓଡ଼ିଆ ଚରିତ୍ରର ବିବର୍ତ୍ତନ କିନ୍ତୁ ଦୃଶ୍ୟ ଅବଲୋକନର ପ୍ରତିକ୍ରିୟା ଅଲଗା ଅଲଗା; ଦୁଇଟି ଦୃଷ୍ଟିକୋଣ। ସେ ଦୁଇ ଦୃଷ୍ଟିକୋଣକୁ ଯୋଡ଼ିବାର ବିଭିନ୍ନ ମାର୍ଗ ମଧ୍ୟରୁ ଗୋଟିଏ ପ୍ରାଥମିକ ପଦକ୍ଷେପ ହୁଏତ ହେଉଛି ଦୃଷ୍ଟିଭଙ୍ଗୀର ସ୍ପଷ୍ଟୀକରଣ। ତେଣୁ ଏ ପ୍ରଚେଷ୍ଟା।

ଓଡ଼ିଶାର ଅନଗ୍ରସରତାକୁ ନେଇ ସମୟକୁ ସମୟ ବହୁ ପ୍ରଶ୍ନ ବହୁ ବୁଦ୍ଧିଜୀବି, ବହୁ ଜ୍ଞାନୀ ଓ ବହୁ ଓଡ଼ିଶାପ୍ରେମୀଙ୍କ ଦ୍ୱାରା ଉତ୍ଥାପିତ ହୋଇଛି। ସେମାନେ ସମସ୍ତେ ନିଜ ନିଜ ଜ୍ଞାନ, ଅନୁଭୂତି ଓ ବିଚାର ଆଧାରରେ ବହୁ କାରଣ ଓ ପ୍ରତିକାରର ଅବତାରଣା କରିଛନ୍ତି। କିନ୍ତୁ ଓଡ଼ିଆ ମାନସିକତା ଏଭଳି କି ଉପାଦାନରେ ଗଠିତ କେଜାଣି କୌଣସି ଭଲ କଥା କାହାରି କାନରେ ପଡ଼ିଲା ଭଳି ଲାଗେ ନାହିଁ କି ପଡ଼ିଲେ ବି କାର୍ଯ୍ୟରେ ପ୍ରତିଫଳିତ ହୁଏ ନାହିଁ। 'କଂସାରି ଘରର ପାରା ଆଗରେ କୁଲା ଢାଉଁଢ଼ାଉଁ କରିବା' ଯେତେ ନିରର୍ଥକ ଓ ନିର୍ବୋଧର ବିଳାପ ଭଳି ଲାଗିଲେ ମଧ୍ୟ ସେହି ଏକା କଥାକୁ ପୁନଃପୁନଃ ଆଲୋଚନା କରିବା ଯେ ଜଣେ ସାଧାରଣ ନାଗରିକର ଉଭୟ କର୍ତ୍ତବ୍ୟ ଓ ଅଧିକାର ଅନ୍ତର୍ଭୁକ୍ତ, କହିବା ବାହୁଲ୍ୟ।

ଓଡ଼ିଶାର ଦାରିଦ୍ର୍ୟର ବିଶେଷତ୍ୱ ହେଉଛି ପ୍ରାଚୁର୍ଯ୍ୟ ମଧ୍ୟରେ ଦାରିଦ୍ର୍ୟ। ପ୍ରାଚୁର୍ଯ୍ୟ ଅଛି ଖଣିଜ, ଜଳ ଓ ବନଜ ସମ୍ପଦରେ। ଯେତେବେଳେ ଗୋଟିଏ ଜାତି ପ୍ରକୃତିଦତ୍ତ ପ୍ରାଚୁର୍ଯ୍ୟ ସତ୍ତ୍ୱେ ଗରିବ ହୋଇ ପଡ଼ି ରହେ, ତା'ର ଏକମାତ୍ର ଉପସଂହାର ହେଉଛି ସେ ଜାତିର ଲୋକମାନଙ୍କ ଭିତରେ ବୁଦ୍ଧି, କୌଶଳ, ଦୂରଦୃଷ୍ଟି ଓ ଜାତୀୟତାର ପ୍ରଚୁର ଅଭାବ। କେତେକ ବ୍ୟକ୍ତିବିଶେଷ ନିଶ୍ଚିତ ଭାବରେ ଏହାର ବ୍ୟତିକ୍ରମ ଥାଇ

---

★ ଦୈନିକ "ସମ୍ବାଦ"; ୭ ନଭେମ୍ବର ୨୦୧୩

ପାରନ୍ତି, କିନ୍ତୁ ସେମାନଙ୍କ ବ୍ୟକ୍ତିତ୍ୱ ବା ପ୍ରତିଭା ଏତେ ବିରାଟ ନୁହେଁ ଯେ ଯାହାର ଛାୟା ତଳେ ଗୋଟିଏ ଜାତିର ଅସାମର୍ଥ୍ୟ ଲୁଚି ଯାଇପାରିବ। ଏହି ପରିପ୍ରେକ୍ଷୀରେ ଓଡ଼ିଶା ଇତିହାସର ଚିରଦୀପ୍ତିମାନ ଚରିତ୍ର ଖାରବେଳ, କପିଳେନ୍ଦ୍ରଦେବ ବା ମଧୁବାବୁଙ୍କ ଦୃଷ୍ଟାନ୍ତ ଦିଆଯାଇପାରେ।

ନିଜର ପ୍ରତିରକ୍ଷା ପାଇଁ ଏ କଥା ଆମେ ନିଶ୍ଚିତ ଭାବରେ କହିପାରିବା ଯେ ଆମ ଇତିହାସ ଓ ଆମ ଭୂଗୋଳ ଆମ ପ୍ରଗତିରେ କିଛି କମ୍ ପ୍ରତିବନ୍ଧକ ସାଜି ନାହାନ୍ତି। ୧୫୬୮ରେ ମୁକୁନ୍ଦଦେବଙ୍କ ପରାଜୟ ଓ ମୃତ୍ୟୁ ସମୟଠାରୁ ୧୯୩୬ରେ ଏକ ସ୍ୱତନ୍ତ୍ର ପ୍ରଦେଶର ରୂପ ନେବା ପର୍ଯ୍ୟନ୍ତ ଓଡ଼ିଶା, ଆଫଗାନ୍, ମୋଗଲ, ମରହଟ୍ଟା ଏବଂ ଇଂରେଜମାନଙ୍କର ଲୁଣ୍ଠନ, ଅତ୍ୟାଚାର, ଶୋଷଣ, ଛଳନା ଓ ପ୍ରତାରଣାର ଶିକାର ହୋଇଆସିଛି। ପ୍ରଶାସନିକ ଅବହେଳାର ଶିକାର ହୋଇ ନ'ଅଙ୍କ ଦୁର୍ଭିକ୍ଷ ସହିଛି। ସୂର୍ଯ୍ୟାସ୍ତ ନିୟମ ଆଢୁଆଳରେ ଓଡ଼ିଆ ନିଜର ସ୍ୱଚ୍ଛଳତା ହରାଇଛି। ଓଡ଼ିଶାର ଭୂଗୋଳ ମଧ୍ୟ ତା'ର ଭଗାରି ସାଜିଛି। ଦୀର୍ଘ ୫ ଶହ କିଲୋମିଟର୍ ପ୍ରାୟ ପ୍ରଲମ୍ବିତ ସମୁଦ୍ର ଉପକୂଳ ନିକଟବର୍ତ୍ତୀ ପୂର୍ବାଞ୍ଚଳ ଜନବସତି ବନ୍ୟା, ବାତ୍ୟା ଓ ମରୁଡ଼ି ଭଳି ପ୍ରାକୃତିକ ବିପର୍ଯ୍ୟୟ ଦ୍ୱାରା ନିୟମିତ ଭାବରେ ପୀଡ଼ିତ। ପାହାଡ଼ ପର୍ବତ ଘେରା ପଶ୍ଚିମାଞ୍ଚଳ ଦୁର୍ଗମ ରହିବା ସହିତ କୃଷି ପାଇଁ ମଧ୍ୟ ଉତ୍କୃଷ୍ଟ କ୍ଷେତ୍ର ନୁହେଁ। ତେଣୁ କୁହାଯାଇପାରେ ଯେ ଆମ ଇତିହାସ ଓ ଭୂଗୋଳ ହାତରେ ହାତ ଛନ୍ଦି ସତେ ଯେପରି ଆମ ଉନ୍ନତିର ପଥରୋଧ ସହ ଆମକୁ ଭୂପତିତ କରି ରଖିବାର ଯୋଜନା କରିଛନ୍ତି।

କିନ୍ତୁ କୁହାଯାଏ ବିପଦକୁ ସମ୍ପଦ ସୃଷ୍ଟିର ମାର୍ଗ ବା ବିପର୍ଯ୍ୟୟକୁ ଅଭ୍ୟୁଦୟର ସୁଯୋଗରେ ପରିଣତ କରିବାର କଳା-କୌଶଳ ଜାଣିଥିବା ଜୀବଟି ହେଉଛି ମଣିଷ। ସେଥିପାଇଁ ଲୋଡ଼ା ହୁଏ ଏକ ସୁଦୀର୍ଘ ସଂଗ୍ରାମର ସଂକଳ୍ପ; ସଂଗ୍ରାମ ଅସ୍ତ୍ର ବଳର ନୁହେଁ, ବୁଦ୍ଧି ବଳର, ସୁଚିନ୍ତିତ ଦୀର୍ଘ ମିଆଦୀ ଯୋଜନାର, ପ୍ରତିବଦ୍ଧତାପୂର୍ଣ୍ଣ କର୍ମପ୍ରବଣତାର। ଏହି ସଂକଳ୍ପ ଓ ସଂଗ୍ରାମର ଶିଳାଧାର ହେଉଛି ଜାତିପ୍ରାଣ, ଲୋକଚରିତ୍ର ଓ ଦୂରଦୃଷ୍ଟିସମ୍ପନ୍ନ ନେତୃତ୍ୱ। ଏହି କ୍ଷେତ୍ରରେ ଜର୍ମାନି, ଜାପାନ, କୋରିଆ ଓ କ୍ୟୁବା ଭଳି ଦେଶଗୁଡ଼ିକ ଧ୍ୱଂସପ୍ରାୟ ଅବସ୍ଥାରୁ ବିଶ୍ୱର ସମୃଦ୍ଧ ରାଷ୍ଟ୍ରରେ ପରିଣତ ହେବା ଆମ ସମୟର ଗୋଟିଏ ଗୋଟିଏ ଚମକପ୍ରଦ ପ୍ରେରଣାଦାୟୀ ଉଦାହରଣ। ତେଣୁ ସ୍ୱାଭାବିକ ଭାବରେ ଆମେ ଯେତେବେଳେ ଆମ ସ୍ୱାଧୀନତା ପରବର୍ତ୍ତୀ ନେତୃତ୍ୱ ଆଡ଼େ ଅନାଉ, ଆଖିରେ ପଡ଼େ ଏକ ଚିରନିମ୍ନଗାମୀ ସ୍ରୋତ; କେତେବେଳେ ସେ ସ୍ରୋତ ପ୍ରଖର ତ ଆଉ କେତେବେଳେ ଧୀର। ମନକୁ ଆସେ ଓଡ଼ିଶାରେ କ୍ରମାଗତ ନେତୃତ୍ୱହୀନତାର ପୂର୍ବାନୁମାନ କରି

ଉତ୍କଳମଣି ଯେପରି ଲେଖିଥିଲେ, "ଉତ୍କଳେ ନେତାର ନାହିଁ ପ୍ରୟୋଜନ, ଉତ୍କଳର ନେତା ସ୍ୱୟଂ ନାରାୟଣ", କିନ୍ତୁ ସ୍ୱୟଂ ନାରାୟଣ, ସାମର୍ଥ୍ୟ ସମ୍ପନ୍ନଙ୍କୁ ଧର୍ମ ସଂସ୍ଥାପନା ସଂଗ୍ରାମରେ ସିନା ସାରଥି ହୋଇ ବାଟ କଢ଼ାଇବେ, ଗୋଟିଏ ଅସମର୍ଥ କର୍ମ ବିମୁଖ ଜାତିକୁ ନେତୃତ୍ୱ ଦେଇ ଧର୍ମର ଗ୍ଲାନି ଘଟାଇବେ କିପରି ! ଜଗନ୍ନାଥଙ୍କଠାରେ ଓଡ଼ିଆର ଆସ୍ଥାପାଠ ଗୋଟିଏ ସମର୍ଥ ଜାତିର ଜାତି-ଅଭ୍ୟୁତ୍‌ଥାନ ସଂଗ୍ରାମରେ ସଫଳତା ପାଇଁ ଆଶୀର୍ବାଦ ଭିକ୍ଷା ନୁହେଁ ବରଂ କର୍ମଭୀରୁ ନିର୍ବଳର ବ୍ୟକ୍ତି ସ୍ୱାର୍ଥ ସଂରକ୍ଷଣ ପାଇଁ ଆକୁଳ ନିବେଦନ ବୋଲି ବୁଝିବାରେ ହିଁ ଅଧିକ ସତ୍ୟତା ନିହିତ । ତେଣୁ ଦେଖିବାକୁ ମିଳେ ଯେ ସ୍ୱାଧିନତା ପ୍ରାପ୍ତିର ଠିକ୍ ପରବର୍ତ୍ତୀ ସମୟରେ ପ୍ରାଦେଶିକ ବା ଜାତୀୟ ରାଜନୈତିକ ନେତୃତ୍ୱରେ ସ୍ୱାଧୀନତା ପ୍ରାପ୍ତିର ଉନ୍ମାଦନାରୁ ହେଉ ବା ମହାତ୍ମାଙ୍କ ଭଳି ଜଣେ ଆଶ୍ଚର୍ଯ୍ୟ ବ୍ୟକ୍ତିତ୍ୱର କାଉଁରି ସ୍ପର୍ଶରେ ହେଉ, ଯେଉଁ ଜାତୀୟ ଭାବନାର ଚିହ୍ନ ଦେଖିବାକୁ ମିଳୁଥିଲା, ତାହା ସମୟ ଗଡ଼ିବା ସହ ବ୍ୟକ୍ତିସ୍ୱାର୍ଥର ମହାଦ୍ରବଣରେ ଦ୍ରବୀଭୂତ ହୋଇଗଲା । ରାଜନୈତିକ ନେତୃତ୍ୱ କ୍ରମଶଃ 'ମାଫିଆ' ଚରିତ୍ର ସମ୍ପନ୍ନ ହେବାରେ ଲାଗିଲା ।

ଗଣତାନ୍ତ୍ରିକ ବିଧିବ୍ୟବସ୍ଥା ମଧ୍ୟରେ ନେତୃତ୍ୱର କାର୍ଯ୍ୟ ପରିବର୍ତ୍ତନରେ ନାଗରିକମାନଙ୍କର ନକାରାତ୍ମକ ଭୂମିକାକୁ ଅଣଦେଖା କରାଯାଇନପାରେ । କାରଣ "People get the Government they deserve", ଅର୍ଥାତ୍ ଆମେ ଯେମିତି, ଆମ ସରକାର ସେମିତି । ଲୋକମାନେ ଯେତେବେଳେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାର ମୂଳ ପାଠ ନ ବୁଝି 'ରଜାପୁଅ ରାଜା' ଭଳି ମଧ୍ୟଯୁଗୀୟ ମାନସିକତାରେ ବାନ୍ଧି ହୋଇ ରହିବେ ନେତୃତ୍ୱ ପାରିବାରିକ ବା ବିତ୍ତଶାଳୀଙ୍କ ଏକଚାଟିଆ ବ୍ୟବସାୟ ହୋଇଯିବା ଅବିସମ୍ବାଦିତ । ସେହିଭଳି ଗରିବ ଲୋକମାନେ ଯେତେବେଳେ ୫୦୦ ହଜାରେ ଟଙ୍କା ଲୋଭରେ ଅଯୋଗ୍ୟ, ଅସାମାଜିକ ଲୋକଙ୍କୁ 'ପାରିବାର' ଭାବି ପ୍ରତିନିଧିତ୍ୱର ରାଜନୈତିକ ସ୍ୱୀକୃତି ଦେବେ ନେତୃତ୍ୱ ସ୍ଖଳିତ ହେବା ମଧ୍ୟ ଅନିବାର୍ଯ୍ୟ । ଲୋକଚରିତ୍ର ଓ ନେତୃତ୍ୱର ଦୁର୍ବଳତାର ସୁଯୋଗ ନେଇ ପ୍ରଶାସନ ଅବଲୀଳାକ୍ରମେ ସାମନ୍ତବାଦୀ ବା ଔପନିବେଶିକ ଚରିତ୍ର ଧାରଣ କରିବା ମଧ୍ୟ ଅବଶ୍ୟମ୍ଭାବୀ ଯାହା ଆମ କ୍ଷେତ୍ରରେ ଘଟିଚାଲିଛି । ଏସବୁର ସମ୍ମିଳିତ ନିଷ୍କର୍ଷ ଭାବରେ 'ସତ୍ୟମେବ ଜୟତେ'ର ଉଦ୍‌ଘୋଷଣା 'ଯେଉଁରି ବିଦ୍ୟା ନେଇଆଣି ଥୋଇପାରିଲେ (ସବୁଠୁ) ଭଲ' ମନ୍ତ୍ର ପାଖରେ ଆତ୍ମସମର୍ପଣ କରିଛି । "Foul is useful, fair is not" ହୋଇଯାଉଛି ଆମ ସମୟର ନିର୍ଣ୍ଣାୟକ ସ୍ୱର ।

ଭାରତ ଭଳି ଏକ ବିକାଶୋନ୍ମୁଖୀ ଦେଶର ସମସ୍ତ ପ୍ରଦେଶମାନଙ୍କ ଭିତରେ ଆମ ଓଡ଼ିଶା ବିକାଶ କ୍ଷେତ୍ରରେ ସର୍ବନିମ୍ନ ସ୍ଥାନରେ ଥିବା କଥା ଆଜି କାହାରିକୁ ଅଛପା ନାହିଁ; ହୁଅନ୍ତୁ ସେମାନେ ସର୍ବେକ୍ଷଣ ସଂସ୍ଥାସମୂହ ବା ନିତି ପ୍ରତିଦିନ 'ଅଫିସ୍' ଓ 'ଅଫିସର୍' ସଂସ୍କୃତି-ପ୍ରପୀଡ଼ିତ ନିୟମ ମାନି ଚଳିବାକୁ ଚେଷ୍ଟାରତ ସାଧାରଣ ମଣିଷ। ମାନବ ସଭ୍ୟତାର କାଳଜୟୀ ଉଦ୍‌ଘୋଷଣା ହେଲା ଯେ ଉନ୍ନତ ଶକ୍ତିଶାଳୀ ଶିକ୍ଷା ବ୍ୟବସ୍ଥା ହିଁ ସମୃଦ୍ଧିର ଏକମାତ୍ର ଅସ୍ତ୍ର ଓ ମନ୍ତ୍ର। କିନ୍ତୁ ଓଡ଼ିଶା ବୋଧହୁଏ ଏକମାତ୍ର ରାଜ୍ୟ ଯେଉଁଠି ଗତ ୨-୩ ଦଶନ୍ଧି ମଧ୍ୟରେ ଐତିହ୍ୟସମ୍ପନ୍ନ ଉତ୍‌ଥାନମୁଖୀ ପ୍ରାଥମିକ ବିଦ୍ୟାଳୟଠାରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ଶହ ଶହ ଶିକ୍ଷାନୁଷ୍ଠାନଙ୍କୁ ଖୋଦ୍ ସରକାର ହିଁ ପିଲାଙ୍କ ଉପରେ ଋପ ହ୍ରାସ, ଅର୍ଥାଭାବ, ସମୀକ୍ଷା, ସଂସ୍କାର ଇତ୍ୟାଦି ଆଳରେ ନଷ୍ଟବିନଷ୍ଟ କରିଦେଇଛନ୍ତି। 'ୱାର୍ଲଡ଼୍ କ୍ଲାସ୍', 'ଇନୋଭେସନ୍' ଭଳି ସାରଗର୍ଭକ ଶବ୍ଦଗୁଡ଼ିକର ବିଦ୍ରୁପ କରାଯାଉଛି। ଯଦି କେବେ ଓଡ଼ିଶାର ଶିକ୍ଷା ତଥା ଉନ୍ନତିର ନିରପେକ୍ଷ ଇତିହାସ ଲେଖା ହୁଏ ତେବେ ଓଡ଼ିଆ ଯୁବଗୋଷ୍ଠୀକୁ ଶୈକ୍ଷିକ ଉତ୍କର୍ଷରୁ ବଞ୍ଚିତ କରିବାର ଏହି କାଳଖଣ୍ଡର ସରକାରୀ ଅପକୀର୍ତ୍ତି, 'କଳାପାହାଡ଼'ର ଧର୍ମାନ୍ଧତାର ଅପକୀର୍ତ୍ତିକୁ ଯେ ମ୍ଳାନ କରିଦେବ ଏଥିରେ ସନ୍ଦେହ ନାହିଁ। ବହୁ ଉଦାହରଣ ମଧ୍ୟରୁ ଏହି ଗୋଟିକ ପ୍ରମାଣ କରିବାକୁ ଯଥେଷ୍ଟ ଯେ ଆମ ଦ୍ୱାରା ପାହାଚ ଓହ୍ଲାଇବା କେବଳ ସମ୍ଭବ, ପାହାଚ ଚଢ଼ିବା ନୁହେଁ। ଅନ୍ୟଥା କ'ଣ ଓଡ଼ିଶାର ଚିରଶତ୍ରୁ ପ୍ରାକୃତିକ ବିପର୍ଯ୍ୟୟର ମୁକାବିଲା ପାଇଁ ଦୀର୍ଘସ୍ଥାୟୀ ପଦକ୍ଷେପମାନ ନେଇ ହୁଅନ୍ତା ନାହିଁ; ସମୁଦ୍ର କୂଳେ କୂଳେ ହେନ୍ତାଳବଣ ସୃଷ୍ଟି କରିବାର ଯୋଜନା ବର୍ଷ ବର୍ଷ ଧରି କେବଳ କଥାରେ ନ ରହି କାର୍ଯ୍ୟରେ ପ୍ରତିଫଳିତ ହୁଅନ୍ତା ନାହିଁ; ବାତ୍ୟାପ୍ରବଣ ଅଞ୍ଚଳରେ ଅଗ୍ରାଧିକାର ଭିତ୍ତିରେ ପ୍ରକୃତ ହିତାଧିକାରୀମାନଙ୍କୁ 'ଇନ୍ଦିରା ଆବାସ', 'ମୋ କୁଡ଼ିଆ' ଭଳି ଯୋଜନା ମାଧ୍ୟମରେ ବାତ୍ୟା-ପ୍ରତିରୋଧକ୍ଷମ ଗୃହ ଯୋଗାଇ ଦିଆଯାଇପାରନ୍ତା ନାହିଁ; ବନ୍ୟା ବିଭୀଷିକାର ଉପଶମ ପାଇଁ ନଦୀମୁହାଣ ଓ ଶଯ୍ୟାଗୁଡ଼ିକର ନିୟମିତ ଖନନ କରି ସେଗୁଡ଼ିକୁ ସୁନାବ୍ୟା ରଖାଯାଇପାରନ୍ତା ନାହିଁ; ସହରଗୁଡ଼ିକରେ ନୂଆ ନୂଆ ଜନବସତି ସୃଷ୍ଟି ପୂର୍ବରୁ ରାସ୍ତା, ବିଦ୍ୟୁତ୍ ଯୋଗାଣ, ଜଳ ଓ ଆବର୍ଜନା ନିଷ୍କାସନ ଇତ୍ୟାଦିର ସରକାରୀ-ବେସରକାରୀ ନିର୍ବିଶେଷରେ ସୁଚିନ୍ତିତ ସମନ୍ୱିତ ପ୍ରାକ୍-ଯୋଜନା କରାଯାଇପାରନ୍ତା ନାହିଁ; ବିଦ୍ୟୁତ୍ ସରବରାହକୁ ପର୍ଯ୍ୟାୟକ୍ରମେ ଭୂତଳ ପାଇପ୍ ମାଧ୍ୟମରେ ନିଆଯାଇ ବାତ୍ୟା କ୍ଷୟକ୍ଷତିରୁ ରକ୍ଷା କରାଯାଇପାରନ୍ତା ନାହିଁ; ବିଶ୍ୱତାପନକୁ ଦୃଷ୍ଟିରେ ରଖି ଗାଁ-ଗଣ୍ଡାଗୁଡ଼ିକର ସୁନ୍ଦର ଶୀତଳ ପରିବେଶର ସୁରକ୍ଷା ସହ ରାସ୍ତାଘାଟ, ଶିକ୍ଷା,

ସ୍ୱାସ୍ଥ୍ୟ, କୃଷି ଓ କୃଷି ଭିତ୍ତିକ ମଧ୍ୟମ-ଶିଳ୍ପ (Intermediate Technology) ସହାୟତାରେ ଅର୍ଥୋପାର୍ଜନର ସୁଯୋଗ ସୃଷ୍ଟି ଦ୍ୱାରା ଗାଁ ଲୋକଙ୍କ ମନରୁ "ସହର ନ ଗଲେ ବଞ୍ଚି ହେବ ନାହିଁ" ମାନସିକତାକୁ ଦୂରେଇ ହୁଅନ୍ତା ନାହିଁ; ଦୃଢ଼ ରାଜନୈତିକ ଇଚ୍ଛାଶକ୍ତି ବଳରେ ପ୍ରତିଷେଧ ଓ ପ୍ରତିକାରର ବ୍ୟବସ୍ଥା ମାଧ୍ୟମରେ ଦୁର୍ନୀତିକୁ କବଳିତ କରି ହୁଅନ୍ତା ନାହିଁ। ଏସବୁ ନିଶ୍ଚୟ ସମ୍ଭବ ହୋଇପାରନ୍ତା ଯଦି ପ୍ରାକୃତିକ ଦୁର୍ବିପାକ ଅବ୍ୟବହିତ ପୂର୍ବରୁ ସଚିବାଳୟରେ ବସୁଥିବା 'ଚିନ୍ତନ ବୈଠକ'ଗୁଡ଼ିକ କେବଳ ବିପଦକାଳୀନ ନ ହୋଇ ସର୍ବକାଳୀନ ସମସ୍ୟାଗୁଡ଼ିକର ସମାଧାନ ତଥା ସମୃଦ୍ଧିର ସୂତ୍ର ନିର୍ଣ୍ଣୟ ନିମିତ୍ତ ଏକ ନିୟମିତ ପ୍ରକ୍ରିୟା ହୁଅନ୍ତେ। ତାତ୍କାଳିକ ସଫଳତାକୁ ନେଇ କୌଣସି ନେତା ରାଷ୍ଟ୍ର-ନେତା ହୁଅନ୍ତି ନାହିଁ। ରାଷ୍ଟ୍ର-ନେତା ସେ ଯିଏ ଜାତି ଉ ।ନର ଦୀର୍ଘକାଳୀନ ପଦକ୍ଷେପ ନେଇ ସଫଳ କାମ ହୁଅନ୍ତି; ଯିଏ ଭୋଟ୍ ଆଶାରେ ଗରିବ ଓ ଅଶିକ୍ଷିତ ବହୁଳ ଜାତିକୁ ମାଗଣା ବା ରିଲିଫ୍‌ରେ ବଞ୍ଚିବାର ଦୁଷ୍ଟଚକ୍ର ଭିତରକୁ ଅଧିକରୁ ଅଧିକ ଠେଲି ନ ଦେଇ ବରଂ ମୁକ୍ତି ଦେଇ ସ୍ୱାବଲମ୍ବନ ଓ ସ୍ୱାଭିମାନ ସହ ବଞ୍ଚିବାର ସ୍ୱାଦ ଚଖେଇ ପାରନ୍ତି। ସେହି ମାନଦଣ୍ଡରେ ତ ଏବେକାର ସୁପ୍ରିମୋମାନେ ଭୋଟ ଜିତିଜିତି ଜିରୋ ହେଲା ବେଳକୁ ବିଜୁବାବୁଙ୍କ ଭଳି ନେତାମାନେ ନିର୍ବାଚନ ହାରିହାରି ହିରୋ !

ଅନ୍ୟପକ୍ଷରେ ଗୋଟିଏ ସ୍ୱାଧୀନ ଉନ୍ନତିକାମୀ ଦେଶର ନାଗରିକ ଭାବରେ ଲୋକମାନଙ୍କର-ବିଶେଷକରି ଶିକ୍ଷିତ, ସଚେତନ ସମାଜର-ମଧ୍ୟ ଗୁରୁଦାୟିତ୍ୱ ରହିଛି। ବିଭିନ୍ନ ବୃତ୍ତିରେ ଥିବା ନାଗରିକମାନେ ଯଦି ଦକ୍ଷତା ଓ ସାଧୁତାର ସହ ନିଜ ନିଜ ଦରମା-ପ୍ରତିବଦଳ-କର୍ତ୍ତବ୍ୟ ସମ୍ପାଦନ କରିପାରନ୍ତେ ତା'ହେଲେ ତ ଜାତୀୟ ଜୀବନରେ ତତ୍‌କ୍ଷଣାତ୍ ଏକ ପରିବର୍ତ୍ତନ ଦେଖିବାକୁ ମିଳନ୍ତା। କିନ୍ତୁ ଆମ ଚରିତ୍ରରେ ସେଭଳି କିଛି ଉପାଦାନ ଦେଖିବାକୁ ମିଳେ ନାହିଁ। ରାଜନୀତି ବା ଜନସେବା କରି କାଙ୍ଗାଳ କୋଟିପତି ହେବାର ଦୃଷ୍ଟାନ୍ତ ଦେଖିବାକୁ ମିଳୁଛି, କିନ୍ତୁ ମଧୁବାବୁଙ୍କ ପରି କୋଟିପତି କାଙ୍ଗାଳ ହେବାର ଉଦାହରଣ ଆଉ ମିଳୁନି। ସେହିପରି ଭାରତ ଭଳି ଏକ ଦରିଦ୍ର ଦେଶର ଦରିଦ୍ରତମ ପ୍ରଦେଶର ଅଧିବାସୀ ହୋଇ ମଧ୍ୟ ଆମେ ଲଜ୍ଜାହୀନ ଭାବେ ସଂସ୍କୃତି ନାଁରେ ଅଳ୍ପ କେତୋଟି ଦିନ ପାଇଁ ଯେପରି ପୂଜା, ପାର୍ବଣ, ଉତ୍ସବ, ମହୋତ୍ସବ ଭଳି ମନୋରଞ୍ଜନଧର୍ମୀ କାର୍ଯ୍ୟକ୍ରମ ଆୟୋଜନରେ କୋଟି କୋଟି ଟଙ୍କାର ଅପବ୍ୟୟ କରୁ ତାହା କୌଣସି ଦୃଷ୍ଟିରୁ ଆମ ସୁସ୍ଥ ସମାଜବୋଧର ପରିଚୟ ଦିଏ ନାହିଁ। ସେହି ଅର୍ଥର ଅଳ୍ପାଂଶରେ ମଧ୍ୟ ଆମେ ଅନେକ ସ୍ଥାନୀୟ ସମସ୍ୟାର ସମାଧାନର ସୂତ୍ରଧର ହୋଇପାରନ୍ତେ। ସ୍ଥାନୀୟ ସ୍ତରରେ ଆମେ ମଧ୍ୟ 'ମାଗଣା' ଓ 'ରିଲିଫ୍'

ନାଗଫାଶର ଜୀବନ-ବିଧ୍ୱଂସକାରୀ ବନ୍ଧନକୁ କୋହଳ କରିବାରେ ସକ୍ଷମ ହୋଇପାରନ୍ତେ।

ଏସବୁ 'ଛୋଟ ମୁହଁରେ ବଡ଼ କଥା' ଭଳି ଲାଗୁଥିଲେ ମଧ୍ୟ ଯେତେବେଳେ 'ବଡ଼ ମୁହଁର ବଡ଼ କଥା' ଓ 'ବଡ଼ ଲୋକଙ୍କ ବଡ଼ କାମ' ବର୍ଷ ବର୍ଷ ଧରି ସାଧାରଣ ଲୋକଙ୍କ କାଳ ସାଜିଛିଲିଛି ସେତେବେଳେ ଛୋଟ ମୁହଁଗୁଡ଼ିକ ଯେତେ ସଂଖ୍ୟାରେ ଖୋଲିବେ ସେତେ ମଙ୍ଗଳ। ତେଣୁ ନା ଏଥିରେ ଅଛି ସୌମ୍ୟବାବୁଙ୍କ ସହ ବିବାଦ, ନା 'ହଁ, ଆମେ ପାରିବା' ସହ ବିତର୍କ ବରଂ ଅତୀତର ଅଭିଜ୍ଞତା ଓ ଅନୁଭୂତି ଆଶ୍ରିତ 'ନାହିଁ, ଆମେ ପାରିବା ନାହିଁ'ର ଅନ୍ଧକାର ଭିତରୁ 'ହଁ, ଆମେ ପାରିବା'ର ଆଲୋକ ରଶ୍ମିଟିଏ ଉତ୍କୀର୍ଣ୍ଣ ହେଉ ଏହା ହିଁ ସମସ୍ତଙ୍କର ଆନ୍ତରିକ ଆଶା; ଏହି ଲେଖକର ବି।



# ପାଚିଲା ବେଲକୁ ଅନାଇ କାଉର ବିଳାପ

ପ୍ରତିବର୍ଷ ଅକ୍ଟୋବର ମାସର ପ୍ରଥମ ସପ୍ତାହରେ ନୋବେଲ ପୁରସ୍କାର ଘୋଷଣା ପୃଥିବୀର ଏକ ବଡ଼ ଖବର ପାଲଟି ଯାଏ। ଭାରତୀୟ ଗଣମାଧ୍ୟମ ମଧ୍ୟ ସେଗୁଡ଼ିକୁ ଯଥାରୀତି ଲୋକମାନଙ୍କ ଆଗରେ ପରିବେଷଣ କରନ୍ତି। ସମସ୍ତେ କିନ୍ତୁ ଜାଣନ୍ତି ଯେ ନୋବେଲ ପୁରସ୍କାର ଖବର ଭାରତର ୯୦-୯୫ ପ୍ରତିଶତ ଲୋକଙ୍କ ପାଇଁ ଆଦୌ ଖବରର ମାନ୍ୟତା ରଖେନାହିଁ। କାରଣ ନୋବେଲ ପୁରସ୍କାର ଭାରତୀୟମାନଙ୍କ ଗଣତନ୍ତ୍ରର ପରିପନ୍ଥୀ; ନୋବେଲ ପୁରସ୍କାର ବୌଦ୍ଧିକ ଉତ୍କର୍ଷ ଓ ସ୍ୱାଧୀନ ଚିନ୍ତା ପାଇଁ ଏକ ପ୍ରେରଣା ଓ ପ୍ରତୀକ ହୋଇଥିବାବେଳେ ଭାରତୀୟ ଗଣତନ୍ତ୍ର ଅଶିକ୍ଷା, ଦାରିଦ୍ର୍ୟ ଓ ଭୃତ୍ୟଗିରିର ପ୍ରତୀକ। ସବୁଜାଣି ମଧ୍ୟ କିଛି ଗଣମାଧ୍ୟମ ଆତ୍ମଗ୍ଲାନିରୁ ହେଉ ଅବା ନିଜ ଉତ୍ତରିତ ଚିନ୍ତାଧାରାର ଫମ୍ପା ବିଜ୍ଞାପନ ପାଇଁ ହେଉ - 'ଶହେ କୋଟିରୁ ଊର୍ଦ୍ଧ୍ୱ ଲୋକ ଥିବା ଭାରତରୁ କାହିଁକି କେହି ନୋବେଲ ପୁରସ୍କାର ପାଉ ନାହାନ୍ତି ?' ଶୀର୍ଷକ ବିତର୍କ ବା ଆଲୋଚନା ଭଳି ନିଷ୍ଫଳ ଚଢ଼ିରେ ଅଳ୍ପକାଳ ପାଇଁ ମାତିଯାଆନ୍ତି। ଚଳିତବର୍ଷ ଏହି ପ୍ରକାର ଆଲୋଚନାରେ କିଛି ଆଧିକ୍ୟ ଦେଖିବାକୁ ମିଳିଛି, କାରଣ ରସାୟନ ବିଜ୍ଞାନରେ ଜଣେ ଭାରତୀୟ ବଂଶୋଦ୍ଭବ ନୋବେଲ ପୁରସ୍କାର ପାଇଛନ୍ତି।

କେତୋଟି ଉଦାହରଣ ନିଆଯାଉ - କଳ୍ପନା ଚାୱ୍ଲାଙ୍କ ଜନ୍ମ ଓ ଶିକ୍ଷା ଭାରତରେ ହେଲେ ମଧ୍ୟ ଉଚ୍ଚତର ଶିକ୍ଷା ଆମେରିକାରେ। ସେ ଥିଲେ ଆମେରିକୀୟ ଗବେଷଣା ସଂସ୍ଥା 'ନାସା'ର କର୍ମଚାରୀ ଓ ଗ୍ରହଣ କରି ନେଇଥିଲେ ଆମେରିକାର ନାଗରିକତ୍ୱ। ସେ ମହାକାଶଚାରୀ ହେବାର କୃତିତ୍ୱରେ ଭାରତରେ ଅସ୍ୱାଭାବିକ ଅହେତୁକ ଆନନ୍ଦ। ଚନ୍ଦ୍ରପୃଷ୍ଠରେ ଜଳର ସନ୍ଧାନ ଆଉ ଏକ ଉଦାହରଣ। ଯେଉଁ ଯନ୍ତ୍ରଟି ଚନ୍ଦ୍ରପୃଷ୍ଠରେ ଉଦଜାନ ଥିବାର ସୂଚନା ପାଇଥିଲା ସେଇଟି ଆମେରିକୀୟ ମହାକାଶ ସଂସ୍ଥା 'ନାସା'ର। ଯନ୍ତ୍ରଟି ପଠାଯାଇଥିଲା କେବଳ ଭାରତୀୟ ମହାକାଶଯାନ ଚନ୍ଦ୍ରଯାନ-୧ରେ। ସେତିକିରେ ଆମର ନାହିଁ ନ ଥିବା ଖୁସି। 'ନାସା' ତ ଉଦଜାନର ସୂଚନା ପାଇବା

---

★ ଦୈନିକ "ସମାଜ"; ୨୭ ଅକ୍ଟୋବର ୨୦୦୯

ମାତ୍ରେ ଚନ୍ଦ୍ରର ଅନ୍ଧକାର ଭାଗର ମେରୁ ଦେଶରେ କୃତ୍ରିମ ବିସ୍ଫୋରଣ କରି ଜଳ ସନ୍ଧାନର ଅଭିଯାନକୁ ଆଗେଇବାରେ ଲାଗିଛି। ଆମେ କ'ଣ କରିଛେ ! ଶେଷରେ ନୋବେଲ ଉପାଖ୍ୟାନ। ଏଥରର ରସାୟନ ବିଜ୍ଞାନରେ ନୋବେଲ ପୁରସ୍କାର ବିଜେତା ଭେଙ୍କଟରମନ୍ ରାମକ୍ରିଷ୍ଣଙ୍କ ଜନ୍ମ ତାମିଲନାଡୁରେ। ପ୍ରି-ୟୁନିଭରସିଟି ଶିକ୍ଷା ଆନାମଲାଇ ବିଶ୍ୱବିଦ୍ୟାଳୟରେ, ପଦାର୍ଥ ବିଜ୍ଞାନରେ ସ୍ନାତକ ଶିକ୍ଷା ବରୋଦାରେ, ତା'ପରର ସମସ୍ତ ଶିକ୍ଷା ଆମେରିକାରେ। ଅଧୁନା ସେ ଇଂଲଣ୍ଡର କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ-ସହରରେ ଅବସ୍ଥିତ ବିଖ୍ୟାତ ଭେଷଜବିଜ୍ଞାନ ଗବେଷଣା ସଂସ୍ଥାରେ ଗବେଷଣାରତ ଓ ଆମେରିକାର ନାଗରିକ। ଅମର୍ତ୍ତ୍ୟ ସେନ୍‌ଙ୍କ ଭଳି ତାଙ୍କର ଦ୍ୱୈତ ନାଗରିକତ୍ୱ ମଧ୍ୟ ନାହିଁ କି ତାଙ୍କର ପୁରସ୍କାର ଯୋଗ୍ୟ ଗବେଷଣା ସହ ଭାରତର ସାମାନ୍ୟତମ ସମ୍ପର୍କ ନାହିଁ। ଅଥଚ ଜଣେ ଭାରତୀୟ ନୋବେଲ ପୁରସ୍କାର ପାଇଛନ୍ତି ବୋଲି କହି ଆମେ ଖୁସିରେ ଗଦ୍‌ଗଦ୍। ସେହିଭଳି ହରଗୋବିନ୍ଦ ଖୁରାନା ଓ ସୁବ୍ରମଣ୍ୟମ୍ ଚନ୍ଦ୍ରଶେଖର ନୋବେଲ ପୁରସ୍କାର ପାଇଲାବେଳକୁ ଆମେରିକାର ନାଗରିକତ୍ୱ ଗ୍ରହଣ କରିସାରିଥିଲେ। ଖୁରାନାଙ୍କ ଗବେଷଣା କ୍ଷେତ୍ର ଥିଲା ଇଂଲଣ୍ଡ, ଜର୍ମାନୀ ଓ ଆମେରିକା ଏବଂ ଚନ୍ଦ୍ରଶେଖରଙ୍କ ପୁରସ୍କାର ପ୍ରାପ୍ତ ଗବେଷଣା ହୋଇଥିଲା ଇଂଲଣ୍ଡର କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ। ତେଣୁ ଖୁବ୍ ଭଲ ହୁଅନ୍ତା ଆମେ ସେମାନଙ୍କ ଭାରତରେ ଜନ୍ମ ହେବାର ଆକସ୍ମିକତାରେ ବିଭୋର ନ ହୋଇ, ପର ଗହଣାରେ ଦେହ ନ ସଜେଇ, ସେମାନେ କାହିଁକି ଭାରତ ବାହାରେ ଗବେଷଣା କଲେ, ସେମାନେ କାହିଁକି 'ମହାନ୍ ଭରତ'ର ନାଗରିକତ୍ୱ ଛାଡ଼ି ବିଦେଶୀ ହେଲେ ଇତ୍ୟାଦି ପ୍ରଶ୍ନର ତର୍ଜମା କରନ୍ତେ। ଏହା ଦ୍ୱାରା ହୁଏତ ଭବିଷ୍ୟତ କାର୍ଯ୍ୟକ୍ରମ ପାଇଁ ସୂତ୍ରଟିଏ ମିଳନ୍ତା।

ସମସ୍ତେ ଜାଣିଛନ୍ତି ସି.ଭି.ରମନ୍ ଓ ସୁବ୍ରମଣ୍ୟମ୍ ଚନ୍ଦ୍ରଶେଖର ଦୁଇଜଣ ନୋବେଲ ବିଜେତା ଗୋଟିଏ ପରିବାରର; ଦାଦା, ପୁତୁରା। ସତେ ଯେପରି ନୋବେଲ ପୁରସ୍କାର ଜିନ୍‌ର ବ୍ୟାପାର। ସେହିପରି ରମନ୍, ଚନ୍ଦ୍ରଶେଖର ଓ ରାମକ୍ରିଷ୍ଣ ସମସ୍ତେ ତାମିଲନାଡୁର ଲୋକ। ରୋନାଲଡ୍ ରସ୍, ରମନ୍, ମଦର ଟେରେସା ସମସ୍ତେ ବଙ୍ଗଳା ରାଜ୍ୟର ପରିବେଶରେ ହିଁ ସେମାନଙ୍କର ପୁରସ୍କାର ଯୋଗ୍ୟ କାର୍ଯ୍ୟ ବା ଗବେଷଣା କରିବାକୁ ସକ୍ଷମ ହୋଇଥିଲେ। ଅମର୍ତ୍ତ୍ୟ ସେନ୍‌ଙ୍କ ବାଲ୍ୟକାଳ ରବୀନ୍ଦ୍ରନାଥଙ୍କ ଦ୍ୱାରା ପ୍ରଭାବିତ ହୋଇଥିବାବେଳେ ତାଙ୍କ ଅର୍ଥନୀତି କୁମାରପ୍ପା-ଗାନ୍ଧୀ ଅର୍ଥନୀତିର ଆଧୁନିକ ରୂପ। ସେଥିଲାଗି ତ ସେ ଅର୍ଥନୀତିଜ୍ଞଙ୍କ ମଧ୍ୟରେ ଦାର୍ଶନିକର ଆଖ୍ୟା ପାଉଛନ୍ତି। ତେଣୁ ଏହି କୃତି ସନ୍ତାନମାନଙ୍କ କୃତିତ୍ୱ ତଳେ ଲୁଚି ରହିଥିବା ତାମିଲନାଡୁ ବା ବଙ୍ଗଳାର ଶକ୍ତିଶାଳୀ

ଶିକ୍ଷା ବ୍ୟବସ୍ଥା ଓ ଜ୍ଞାନପ୍ରୀତି ବା ସେମାନଙ୍କ ପାରିବାରିକ, ଶୈକ୍ଷିକ ସ୍ୱଜନାତ୍ମକ ପରିବେଶକୁ ଚିହ୍ନିବା ପରିବର୍ତ୍ତେ ଏକ ସୃଜନ-ପରିପନ୍ଥୀ ପରିବେଶକୁ ହୃଷ୍ଟପୁଷ୍ଟ କରିବା କାର୍ଯ୍ୟରେ ଆମେ ମାତିଛୁ। ଫଳସ୍ୱରୂପ ସ୍ୱାଧୀନତାର ଛଅଦଶନ୍ଧି ପରେ ବି ଆମ ଦେଶର ବହୁ ମେଧାବୀ ଛାତ୍ର ସେମାନଙ୍କ ସ୍ୱପ୍ନ ଓ ସର୍ଜନାଭିଳାଷକୁ ଚରିତାର୍ଥ କରିବା ପାଇଁ ଭାରତ ଛାଡ଼ିବାକୁ ଶ୍ରେୟ ମଣୁଛନ୍ତି।

ଭାରତର ଗବେଷଣା ପ୍ରତିଷ୍ଠାନଗୁଡ଼ିକ ବିଶ୍ୱବିଦ୍ୟାଳୟ ପରିସରରେ କାର୍ଯ୍ୟ କରିବା ବିଧେୟ ବୋଲି ରମନ୍, ଚନ୍ଦ୍ରଶେଖରଙ୍କ ଭଳି ବିଜ୍ଞାନୀମାନଙ୍କ ମତ ଆମ ସରକାରଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହୋଇଥିଲା। ଏହି ନିଷ୍ପତ୍ତିର ଫଳସ୍ୱରୂପ ଆମ ବିଶ୍ୱବିଦ୍ୟାଳୟ ଓ ଗବେଷଣା ପ୍ରତିଷ୍ଠାନ ମଧ୍ୟରେ ସ୍ଥୂଳତଃ "ବିବାହ ବିଚ୍ଛେଦ" ହୋଇଗଲା। ଜ୍ଞାନପିପାସୁ ଯୁବ ମାନସ ରହିଲା ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ପରିସରରେ ଓ ଗବେଷଣା ଚାଲିଲା ସେମାନଙ୍କଠାରୁ ଅପହଞ୍ଚଦୂରସ୍ଥ ଗବେଷଣା ପ୍ରତିଷ୍ଠାନରେ ! ଗବେଷଣାର ମାନ ତେଣୁ ଯେତିକି ଅପେକ୍ଷିତ ସେତିକି ହିଁ ହେଉଛି। 'ଛିନ୍ନ ମୂଳେ ନୈବ ଶାଖା ନ ପତ୍ରମ୍'।

ଆମ ଓଡ଼ିଶାର ଅବସ୍ଥା ଅତ୍ୟନ୍ତ ସାଂଘାତିକ। ଆମ ଦେଶର ଭଲ ଅନୁଷ୍ଠାନ ଭାବେ ପରିଗଣିତ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ, ଆଇ.ଆଇ.ଟି. ଆଦି କେନ୍ଦ୍ର ସରକାରଙ୍କ ଅନୁଷ୍ଠାନଗୁଡ଼ିକ ଯେଉଁ ନିୟମରେ ଚାଲେ ରାଜ୍ୟ ସରକାରଙ୍କ ଅନୁଷ୍ଠାନରେ ସେତକ ମଧ୍ୟ ନାହିଁ। ମନ୍ତ୍ରୀ-ସଚିବ ସର୍ବସ୍ୱ ସରକାରଙ୍କ ସଯତ୍ନ ଲାଳନପାଳନରେ ପ୍ରାଥମିକ ବିଦ୍ୟାଳୟଠାରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ସବୁ ଅନୁଷ୍ଠାନ କଙ୍କାଳସାର ଅବସ୍ଥାରେ। ବିଜ୍ଞାନ ଶିକ୍ଷାର ଅବସ୍ଥା ନ କହିଲେ ଭଲ। ସରକାର ଉବାଚ; ମାଧ୍ୟମିକ ସ୍ତରରେ ବିଜ୍ଞାନ ପଢ଼ା ହେବ, କିନ୍ତୁ ପରୀକ୍ଷା (ଏକ୍ସପେରିମେଣ୍ଟ) କୋର୍ସରେ ରହିବ ନାହିଁ। ଏହା ଓଡ଼ିଶାର ବିଶ୍ୱସ୍ତରୀୟ ସରକାରଙ୍କର ଏକ ବିଶ୍ୱସ୍ତରୀୟ ବ୍ୟବସ୍ଥା ! ମହାବିଦ୍ୟାଳୟରେ ଏତେ "ବଳିଷ୍ଠ" ନିୟମ ନାହିଁ, କିନ୍ତୁ ଅନୁଦାନ ଅଭାବରୁ ପରୀକ୍ଷାଗାରଗୁଡ଼ିକ ଯନ୍ତ୍ରପାତି, ରାସାୟନିକ ଦ୍ରବ୍ୟ ଶୂନ୍ୟ-ପ୍ରାୟ। ତେଣୁ ୨୦-୨୫ଟି ପରୀକ୍ଷା ପରିବର୍ତ୍ତେ ୫-୬ଟି କରି 'ବସ୍ତ୍ରାଭାବେ ସୂତ୍ରଂ ଦଦାତି' ନ୍ୟାୟରେ କାର୍ଯ୍ୟ ସମାପନ କରାଯାଉଛି। ବିଶ୍ୱବିଦ୍ୟାଳୟଗୁଡ଼ିକରେ ଗବେଷଣା ପାଇଁ ଭିତ୍ତିଭୂମିର ଘୋର ଅଭାବ। ବିଜ୍ଞାନ ବହି, ପତ୍ରପତ୍ରିକା ଓ ଯନ୍ତ୍ରପାତିର ଦାମ ବଢ଼ିଚାଲିଥିବାବେଳେ ଅନୁଦାନ ସମାନୁପାତିକ ଭାବେ କମିବାରେ ଲାଗିଛି ବା ସ୍ଥିର ରହୁଛି। ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟଗୁଡ଼ିକର ପରିବେଶ ଛାତ୍ର, ଶିକ୍ଷକ ଓ ଦଳୀୟ ରାଜନୀତିରେ ଭାରାକ୍ରାନ୍ତ।

ପ୍ରତି କ୍ଷେତ୍ରରେ ସଚିବସ୍ତରୀୟ ତଥାକଥିତ ଅଜ୍ଞାନ ପ୍ରପିଡ଼ିତ ସମୀକ୍ଷା ଓ ଶିକ୍ଷକ ପଦବୀ ଉଚ୍ଛେଦ। ଏପରି ଏକ ନିକୃଷ୍ଟମାନର ସାମଗ୍ରିକ ଜଳବାୟୁରେ କି ବିଜ୍ଞାନ ଶିକ୍ଷା ହେବ? ସମସ୍ତ ପ୍ରତିବନ୍ଧକ ସତ୍ତ୍ୱେ ଯଦିବା କେଉଁଠି ସଫଳତା ଦୃଷ୍ଟିଗୋଚର ହୁଏ, ତେବେ ତାକୁ ପ୍ରତିହତ କରିବାକୁ ସରକାରୀକଳ ସଦା ସଚେଷ୍ଟ ଥାଏ।

ଉତ୍କଳ ବିଶ୍ୱବିଦ୍ୟାଳୟର ପଦାର୍ଥ ବିଜ୍ଞାନ କଥା ଏଠାରେ ପ୍ରାସଙ୍ଗିକ ମନେ ହୁଏ। ପ୍ରଫେସର ବିଭୂତି ଭୂଷଣ ଦେଓ ଏହି ବିଭାଗରେ ମୁଖ୍ୟ ଭାବରେ ଯୋଗଦାନ କରିବା ପରେ କେବଳ ବିଶ୍ୱବିଦ୍ୟାଳୟ ନୁହେଁ, ଓଡ଼ିଶାରେ ଆଧୁନିକ ପଦାର୍ଥ ବିଜ୍ଞାନ ଗବେଷଣାର ଆନୁଷ୍ଠାନିକ ଭିତ୍ତିଭୂମି ପ୍ରତିଷ୍ଠିତ ହେଲା। ପଦାର୍ଥ ବିଜ୍ଞାନ ଅଧ୍ୟାପନାରେ ଉଚ୍ଚମାନ ଓ ଶୃଙ୍ଖଳା ଆସିଲା। ଧୀରେ ଧୀରେ ବିଭାଗ ପଦାର୍ଥ ବିଜ୍ଞାନ ଶିକ୍ଷା ଓ ଗବେଷଣା କ୍ଷେତ୍ରରେ ଜାତୀୟ ଦୃଷ୍ଟି ଆକର୍ଷଣ କଲା। ବିଭାଗର ସମସ୍ତ ଶିକ୍ଷକ ପୃଥିବୀର ଖ୍ୟାତନାମା ଅନୁଷ୍ଠାନଗୁଡ଼ିକରେ ଗବେଷଣାର ସୁଯୋଗ ଲାଭ କଲେ। ସେମାନଙ୍କ ଜ୍ଞାନ ଶ୍ରେଣୀଗୃହ ଶିକ୍ଷାଦାନକୁ ଉନ୍ନତ କଲା। ବିଭାଗରେ ସ୍ନାତକୋତ୍ତର ଶିକ୍ଷା ଲାଭ କରିଥିବା ଛାତ୍ରଛାତ୍ରୀମାନେ ଦେଶର ବିଭିନ୍ନ ଆଇ.ଆଇ.ଟି., କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ଓ ପ୍ରମୁଖ ଗବେଷଣା ପ୍ରତିଷ୍ଠାନମାନଙ୍କରେ ଗବେଷଣା କରିବା ସହ ଦକ୍ଷିଣ କୋରିଆର ଜାତୀୟ ବିଶ୍ୱବିଦ୍ୟାଳୟ, ଜାପାନର ଜାତୀୟ ଗବେଷଣା ପ୍ରତିଷ୍ଠାନ (K.E.K), ଜର୍ମାନୀର ଜାତୀୟ ଗବେଷଣା ପ୍ରତିଷ୍ଠାନ (D.E.S.Y.), ସୁଇଜରଲାଣ୍ଡର ଜେନିଭାସ୍ଥିତ ୟୁରୋପୀୟ ଗବେଷଣା ପ୍ରତିଷ୍ଠାନ (C.E.R.N.), ଆମେରିକାର ଜାତୀୟ ପରୀକ୍ଷାଗାର (SLAC, FERMI LAB, B.N.L.) ଓ କେମ୍ବ୍ରିଜ, ଅକ୍ସଫୋର୍ଡ଼, ପ୍ରିନ୍ସଟନ୍ ବିଶ୍ୱବିଦ୍ୟାଳୟ ଭଳି ପୃଥିବୀ ବିଖ୍ୟାତ ଅନୁଷ୍ଠାନଗୁଡ଼ିକରେ ଖ୍ୟାତନାମା ଓ ନୋବେଲ ବିଜେତା ବୈଜ୍ଞାନିକମାନଙ୍କ ସହ ଗବେଷଣା କରି ପ୍ରଶଂସିତ ହେଲେ। ଫଳତଃ ବିଗତ ୧୦-୧୫ ବର୍ଷ ମଧ୍ୟରେ ବିଭାଗରୁ ଉତ୍ତୀର୍ଣ୍ଣ ଛାତ୍ରଛାତ୍ରୀମାନେ ଭାରତର ଟାଟା ଇନ୍‌ଷ୍ଟିଚ୍ୟୁଟ ଫର୍ ଫଣ୍ଡାମେଣ୍ଟାଲ ରିସର୍ଚ୍ଚ (T.I.F.R.), ମୁମ୍ବାଇ; ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମାଥମେଟିକାଲ୍ ସାଇନ୍ସ (I.M.S.C.), ଚେନ୍ନାଇ; ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଫିଜିକ୍ସ (I.O.P.), ଭୁବନେଶ୍ୱର; ଇଣ୍ଟର ୟୁନିଭରସିଟି ସେଣ୍ଟର ଫର୍ ଆଷ୍ଟ୍ରୋନୋମି ଆଣ୍ଡ୍ ଆଷ୍ଟ୍ରୋଫିଜିକ୍ସ (I.U.C.A.A.), ପୁନେ; ସାହା ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ନ୍ୟୁକ୍ଲିୟର ଫିଜିକ୍ସ (S.I.N.P.), କୋଲକାତା; ଭାରିଏବଲ ଏନର୍ଜି ସାଇକ୍ଲୋଟ୍ରନ୍ ସେଣ୍ଟର (V.E.C.C.), କୋଲକାତା; I.S.E.R., କୋଲକାତା; NISER, ଭୁବନେଶ୍ୱର; ଦିଲ୍ଲୀ, ବନାରସ, ହାଇଦ୍ରାବାଦ ଭଳି କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ; ମୁମ୍ବାଇ, ଦିଲ୍ଲୀ, ଗୌହାଟୀ, ହାଇଦ୍ରାବାଦ, ଭୁବନେଶ୍ୱର, ଭୋପାଳ

ଆଇ.ଆଇ.ଟି. ତଥା ରାଉରକେଲା, ରାୟପୁର, ଦୁର୍ଗାପୁର ଏନ୍.ଆଇ.ଟି. ଭଳି ମର୍ଯ୍ୟାଦାଜନକ ଅନୁଷ୍ଠାନଗୁଡ଼ିକରେ ସ୍ଥାୟୀ ନିଯୁକ୍ତି ଲାଭ କରିବାରେ ସକ୍ଷମ ହୋଇଛନ୍ତି। ଏହି ବିଭାଗର ଛାତ୍ରଛାତ୍ରୀମାନେ ଉତ୍ସାହଜନକ ଭାବରେ ଭାବା ପରମାଣୁ ଗବେଷଣା କେନ୍ଦ୍ର (B.A.R.C.), ଟ୍ରମ୍ବେ ଓ ଭାରତ ସରକାରଙ୍କର ପ୍ରତିରକ୍ଷା ଗବେଷଣା ଓ ଉନ୍ନୟନ ସଂସ୍ଥା (D.R.D.O.) ଇତ୍ୟାଦିରେ ମଧ୍ୟ ନିୟମିତ ଯୋଗ ଦେଉଛନ୍ତି। ଏପରିକି ଭାବା ଗବେଷଣା କେନ୍ଦ୍ରରେ ନିଯୁକ୍ତ ବିଜ୍ଞାନୀଙ୍କ ମଧ୍ୟରେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ଥାନ ସଂଖ୍ୟା ଭାରତରେ ପ୍ରଥମ। ଚଳିତବର୍ଷ ବିଭାଗର ୩୦ ଜଣ ଛାତ୍ରଛାତ୍ରୀଙ୍କ ମଧ୍ୟରୁ ୧୪ ଜଣ ଜାତୀୟ ସ୍ତରର ଗେଟ୍ (G.A.T.E.) ପରୀକ୍ଷା ଓ ୧୦ ଜଣ ନେଟ୍ (N.E.T.) ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛନ୍ତି ଓ ଜଣେ ସର୍ବଭାରତୀୟ ସ୍ତରରେ ପ୍ରଥମ ହୋଇଛନ୍ତି। ବିଭାଗର ଛାତ୍ରଛାତ୍ରୀମାନେ ମଧ୍ୟ ବ୍ୟାଙ୍କ ଓ ପ୍ରଶାସନିକ ଚାକିରି ପାଇବାରେ ସଫଳ ହେଉଛନ୍ତି। ଆଇ.ଏ.ଏସ୍. ଚାକିରିରେ ନିଯୁକ୍ତ ଜଣେ ଛାତ୍ରୀ ନିକଟରେ ଆମେରିକାର ପ୍ରସିଦ୍ଧ ପ୍ରିନ୍ସଟନ୍ ବିଶ୍ୱବିଦ୍ୟାଳୟର ଉଡ୍ରୋ ୱିଲସନ୍ ଆନ୍ତର୍ଜାତିକ ବ୍ୟାପାର ଅନୁଷ୍ଠାନରୁ ମ୍ୟାନେଜମେଣ୍ଟ ଉପାଧି ଲାଭ କରିଛନ୍ତି। ପରିଣାମ ସ୍ୱରୂପ ଉତ୍କଳ ବିଶ୍ୱବିଦ୍ୟାଳୟର ପଦାର୍ଥବିଜ୍ଞାନ ବିଭାଗ ଆଜି ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ନିଜ ପାଇଁ ଏକ ସ୍ଥାନ ସୃଷ୍ଟି କରିପାରିଛି। ଏହି ସଫଳତାର ପୁରସ୍କାର ସ୍ୱରୂପ ନିକଟରେ ଦୂରଦର୍ଶୀ ଓଡ଼ିଶା ସରକାର ବାହାଦୁର ତାଙ୍କର ମନ୍ତ୍ରୀ-ସଚିବ ସ୍ତରୀୟ ସମୀକ୍ଷାର କତୁରୀ ଲଗାଇ ବିଭାଗର ଶିକ୍ଷକ ସଂଖ୍ୟା ୧୪ ରୁ ୯କୁ କମେଇ ଦେଇଛନ୍ତି !

ଯେତେଦିନ ଯାଏ ନେତାଙ୍କ ନଜର ଭୋଟ୍‌ବାକ୍ସ ଉପରେ ଲାଖି ରହିଥିବ ଓ ପ୍ରଶାସନରେ ଉପନିବେଶୀୟ ଔଦ୍ଧତ୍ୟ ଓ ମଧ୍ୟଯୁଗୀୟ ବିଚାରଧାରା ବଳବତ୍ତର ଥିବ ସେ ପର୍ଯ୍ୟନ୍ତ ନୋବେଲ ପୁରସ୍କାର ସମ୍ବନ୍ଧରେ ସମସ୍ତ ଆଲୋଚନା ଓ ବିତର୍କ ନିର୍ଲଜ୍ଜର ବିଳାପ ହୋଇରହିଥିବ। ପାଚିଲା ବେଲକୁ ଅନେଇ କାଉର ବିଳାପ ଭଳି 'ଜଗତେ କେବଳ ଜନେ ହସିବେ, ଏହି ତହୁଁ ଫଳ' ସାର ହେବ।

❑❑❑

# ରହିଁଲେ ଉଚ୍ଚଶିକ୍ଷା ପୁଣି ହସିବ

ଓଡ଼ିଶାରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା ୧୯୪୩ ମସିହାରେ ଓଡ଼ିଶାର ପ୍ରଥମ ବିଶ୍ୱବିଦ୍ୟାଳୟ ଭାବେ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପୃଷ୍ଠପଟରେ। କାଳକ୍ରମେ ଓଡ଼ିଶାରେ ମହାବିଦ୍ୟାଳୟ, ବୈଷୟିକ ମହାବିଦ୍ୟାଳୟ ଓ ଉଭୟ ସାଧାରଣ ଓ ବୈଷୟିକ ବିଶ୍ୱବିଦ୍ୟାଳୟ ସଂଖ୍ୟା ମଧ୍ୟ ବୃଦ୍ଧି ପାଇଛି। ସାଧାରଣ ବିଶ୍ୱବିଦ୍ୟାଳୟଗୁଡ଼ିକ ମଧ୍ୟରେ ଅଛନ୍ତି ଉତ୍କଳ, ସମ୍ବଲପୁର, ବ୍ରହ୍ମପୁର, ଉତ୍ତର ଓଡ଼ିଶା, ଫକୀରମୋହନ, ରେଭେନ୍ସା, ସଂସ୍କୃତି, ସଂସ୍କୃତ ବିଶ୍ୱବିଦ୍ୟାଳୟଗୁଡ଼ିକ। ଡାକ୍ତରୀପାଠ ଶିକ୍ଷାଦାନ ଏହିଭଳି କିଛି ବିଶ୍ୱବିଦ୍ୟାଳୟ ମାଧ୍ୟମରେ ପରିଚାଳିତ ହେଉଛି। କୃଷି, ଇଞ୍ଜିନିୟରିଂ ଓ ମ୍ୟାନେଜମେଣ୍ଟ କ୍ଷେତ୍ରରେ ଓଡ଼ିଶା କୃଷି ବୈଷୟିକ ବିଶ୍ୱବିଦ୍ୟାଳୟ (O.U.A.T.), ବିଜୁ ପଟ୍ଟନାୟକ ବୈଷୟିକ ବିଶ୍ୱବିଦ୍ୟାଳୟ (B.P.U.T.) ଓ ବୀର ସୁରେନ୍ଦ୍ର ସାଏ ବୈଷୟିକ ବିଶ୍ୱବିଦ୍ୟାଳୟ ଭଳି ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟମାନ ପ୍ରତିଷ୍ଠିତ ହୋଇଛି। ଏହି କ୍ଷେତ୍ରରେ କଳିଙ୍ଗ ଶିଳ୍ପ-ବୈଷୟିକ (KIIT) ଓ ଶିକ୍ଷା ଓ ଅନୁସନ୍ଧାନ (S.O.A.) ଭଳି ଦୁଇଟି ଘରୋଇ ଡିମ୍ଡ଼-ବିଶ୍ୱବିଦ୍ୟାଳୟ ମଧ୍ୟ ଓଡ଼ିଶାରେ ରହିଛି। ସୂଚନା ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ଆନ୍ତର୍ଜାତିକ ସୂଚନା ପ୍ରଯୁକ୍ତି ବିଦ୍ୟା ପ୍ରତିଷ୍ଠାନ (I.I.I.T.) ମଧ୍ୟ ପ୍ରତିଷ୍ଠିତ ହୋଇଛି। ଏହା ସହିତ ରହିଛି ରାଉରକେଲାଠାରେ ପ୍ରତିଷ୍ଠିତ ଜାତୀୟ ବୈଷୟିକ ପ୍ରତିଷ୍ଠାନ (N.I.T.), ଭୁବନେଶ୍ୱରଠାରେ ପ୍ରତିଷ୍ଠିତ ପଦାର୍ଥ ବିଜ୍ଞାନ ପ୍ରତିଷ୍ଠାନ (I.O.P.), ଜାତୀୟ ବିଜ୍ଞାନ ଶିକ୍ଷା ଓ ଗବେଷଣା ପ୍ରତିଷ୍ଠାନ (NISER), ଭାରତୀୟ ବୈଷୟିକ ପ୍ରତିଷ୍ଠାନ (I.I.T.), ଭାରତୀୟ ଧାତୁ ଓ ଖଣିଜ ପଦାର୍ଥ ଗବେଷଣା କେନ୍ଦ୍ର (I.M.M.T.), କେନ୍ଦ୍ରୀୟ ମତ୍ସ୍ୟ ଗବେଷଣା କେନ୍ଦ୍ର (SIFA), ଜୀବ ବିଜ୍ଞାନ ପ୍ରତିଷ୍ଠାନ (I.L.Sc.), କଟକଠାରେ ପ୍ରତିଷ୍ଠିତ ଜାତୀୟ ଆଇନ୍ ବିଶ୍ୱବିଦ୍ୟାଳୟ (M.L.S.) ଓ କୋରାପୁଟଠାରେ ଅବସ୍ଥିତ ଓଡ଼ିଶା ଜାତୀୟ ବିଶ୍ୱବିଦ୍ୟାଳୟ ଇତ୍ୟାଦି। ସେଇଭଳି ଭୁବନେଶ୍ୱରଠାରେ ସର୍ବଭାରତୀୟ ଭେଷଜ ବିଜ୍ଞାନ ପ୍ରତିଷ୍ଠାନର ଏକ ଶାଖା ଖୁବ୍ ଶୀଘ୍ର

---

★ ଦୈନିକ "ସମ୍ବାଦ"; ୨୪ ଅକ୍ଟୋବର ୨୦୧୧

କାର୍ଯ୍ୟକ୍ଷମ ହେବାକୁ ଯାଉଛି । ଗଣିତ ଗବେଷଣା ଓ ପ୍ରୟୋଗ ଉଦ୍ଦେଶ୍ୟରେ ଓଡ଼ିଶା ସରକାର ଭୁବନେଶ୍ୱରଠାରେ ଗୋଟିଏ ଗଣିତ ଓ ପ୍ରୟୋଗ ପ୍ରତିଷ୍ଠାନ ସ୍ଥାପନ କରିଛନ୍ତି । ମ୍ୟାନେଜମେଣ୍ଟ କ୍ଷେତ୍ରରେ ଶିକ୍ଷା ଓ ଗବେଷଣାର ଅନୁଷ୍ଠାନ ଭାବରେ ଜାତିୟଗ ପ୍ରତିଷ୍ଠାନ ୧୯୮୭ ମସିହାରୁ ଭୁବନେଶ୍ୱରଠାରେ କାର୍ଯ୍ୟ କରି ଆସୁଛି । ଇନ୍ଦିରା ଗାନ୍ଧୀ ଜାତୀୟ ମୁକ୍ତ ବିଶ୍ୱବିଦ୍ୟାଳୟ ଓ ବିଭିନ୍ନ ବିଶ୍ୱବିଦ୍ୟାଳୟର ଦୂର-ନିରନ୍ତର ଶିକ୍ଷାକେନ୍ଦ୍ରଗୁଡ଼ିକ ମଧ୍ୟ ଉଚ୍ଚଶିକ୍ଷାର ସୁବିଧା ଯୋଗାଇ ଆସୁଛନ୍ତି ।

ଗୋଟିଏ ପରିସଂଖ୍ୟାନାନୁଯାୟୀ ଓଡ଼ିଶାରେ ପ୍ରାୟ ୫୨୫ଟି ଯୁକ୍ତ-ତିନି (+୩) ବା ଡିଗ୍ରୀ ମହାବିଦ୍ୟାଳୟ ଅଛି । ଏଥିରୁ ପାଖାପାଖି ୬୦ଟି କଲେଜ ସରକାରୀ । ଓଡ଼ିଶାରେ ଥିବା ୧୧୦ଟି ଇଞ୍ଜିନିୟରିଂ ଶିକ୍ଷାନୁଷ୍ଠାନ ମଧ୍ୟରୁ କେବଳ ୩ଟି ସରକାରୀ । ସେହିଭଳି ରାଜ୍ୟର ୧୯ଟି ମେଡ଼ିକାଲ କଲେଜ (ଏଲୋପାଥି, ହୋମିଓପାଥି, ଆୟୁର୍ବେଦିକ ଓ ଦନ୍ତ ଚିକିତ୍ସା ମିଶି) ମଧ୍ୟରୁ ମାତ୍ର ୮ଟି ରାଜ୍ୟ ସରକାରଙ୍କ ଦ୍ୱାରା ପରିଚାଳିତ । ଏହି ଛୋଟ ପରିସଂଖ୍ୟାନରୁ ଏହା ସ୍ପଷ୍ଟ ଯେ ରାଜ୍ୟର ଯୁବଗୋଷ୍ଠୀର ଉଚ୍ଚଶିକ୍ଷିତ ହେବାର ଉଚ୍ଚ ଆଶା ଚରିତାର୍ଥ କରିବାରେ ଘରୋଇ ଉଦ୍ୟମ ହିଁ ମୁଖ୍ୟ । ଏହା ମଧ୍ୟ ସ୍ପଷ୍ଟ ଯେ କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟା କ୍ଷେତ୍ରରେ ଶିକ୍ଷା ଆବଶ୍ୟକତା ସହ ତାଳ ଦେଇ ବିଭିନ୍ନ ଧରଣର ଶିକ୍ଷାନୁଷ୍ଠାନ ସୃଷ୍ଟି କରିବାରେ ସରକାର ବିଫଳ ହୋଇଛନ୍ତି ।

ଶିକ୍ଷାର ଘରୋଇକରଣ ଅବଲୀଳାକ୍ରମେ ବ୍ୟବସାୟୀକରଣରେ ପରିଣତ ହୋଇଛି । ଘରୋଇ ଶିକ୍ଷାନୁଷ୍ଠାନଗୁଡ଼ିକ ନିଜ ନିଜର ପାଠ୍ୟକ୍ରମ ପାଇଁ ଲକ୍ଷ ଲକ୍ଷ ଟଙ୍କାର ଫି ଧାର୍ଯ୍ୟ କରିଥିବାରୁ ଗାଁ-ଗହଳର ବହୁ ମେଧାବୀ ଛାତ୍ରଛାତ୍ରୀ ବୈଷୟିକ ଶିକ୍ଷାରୁ ବଞ୍ଚିତ ହେଉଛନ୍ତି । ଗୋଟିଏ ଜନମଙ୍ଗଳ ରାଷ୍ଟ୍ରରେ ସବୁ ମଙ୍ଗଳ ମୂଳରେ ଥିବା ଶିକ୍ଷା କ୍ଷେତ୍ରକୁ ଛାଡ଼ି ସରକାର ପଳାୟନପନ୍ଥୀ ସାଜିବା ଯୋଗୁଁ ଉତ୍ତମ ଶିକ୍ଷା ସାର୍ବଜନୀନ ହୋଇପାରି ନାହିଁ । ଏହା ଏକ ଚରମ ବିଡ଼ମ୍ବନା ।

ଦେଶରେ ଶିକ୍ଷାର ବିକାଶ ଓ ମାନବୃଦ୍ଧି ପାଇଁ ଭାରତ ସରକାର କୋଠାରୀ କମିସନ, ରାଧାକୃଷ୍ଣନ କମିସନ, ଜାତୀୟ ଶିକ୍ଷାନୀତି ୧୯୬୮ ଓ ୧୯୮୬, ଜାତୀୟ ନଲେଜ କମିସନ ଓ ଯଶପାଲ୍ କମିଟି ଇତ୍ୟାଦି ବସାଇଛନ୍ତି । ସେହିସବୁ କମିସନର କିଛି କିଛି ସୁପାରିସ ଗ୍ରହଣ କରି କେନ୍ଦ୍ର ସରକାର ପଦକ୍ଷେପ ନେବା ଫଳରେ ଜାତୀୟ ସ୍ତରର ଶିକ୍ଷାନୁଷ୍ଠାନଗୁଡ଼ିକ ମୋଟାମୋଟି ଭାବରେ ନୀତି, ଶୃଙ୍ଖଳା ଓ ଗୁଣବତ୍ତାକୁ ବଜାୟ ରଖିପାରିଛନ୍ତି । କିନ୍ତୁ, ରାଜ୍ୟ ସରକାର ସେଭଳି କିଛି ପଦକ୍ଷେପ ନେଇ ନାହାନ୍ତି । କେନ୍ଦ୍ର ସରକାରଙ୍କର ତାଗିଦ୍‌ରେ ନିକଟ ଅତୀତରେ କାର୍ଯ୍ୟ ସଂପାଦନ

କରିଥିବା ଉଚ୍ଚଶିକ୍ଷା ଟାସ୍କଫୋର୍ସର ସୁପାରିସଗୁଡ଼ିକ କିଭଳି ଭାବରେ ରୂପାୟିତ ହେବ ତାହା ସମୟ ହିଁ କହିବ।

ଉଚ୍ଚଶିକ୍ଷାର ବିକାଶରେ ୟୁଜିସିର ଅବଦାନ ଅନସ୍ୱୀକାର୍ଯ୍ୟ। ରାଜ୍ୟର ବହୁସଂଖ୍ୟକ ମହାବିଦ୍ୟାଳୟରେ ଭିତ୍ତିଭୂମି, ଲାଇବ୍ରେରି, ଲାବୋରେଟୋରି ଇତ୍ୟାଦି ପ୍ରତିଷ୍ଠା ପାଇଁ, ବିଶ୍ୱବିଦ୍ୟାଳୟଗୁଡ଼ିକରେ ନୂତନ ଶିକ୍ଷକ ପଦପଦବି ସୃଷ୍ଟି ପାଇଁ, ଗବେଷଣା ପାଇଁ ୟୁଜିସି ଅନୁଦାନ ଦେଇଥାଏ। ସେଇଭଳି ଦେଶ ବିଦେଶରେ ଗବେଷଣା ଚକ୍ରରେ ଯୋଗ ଦେବାପାଇଁ, ଶିକ୍ଷକମାନଙ୍କ ପାଇଁ ନୂତନ ୟୁଜିସି ଦରମା ହାର ପ୍ରଚଳନ ସମୟରେ ଦରମା ବାବଦରେ ବଳକା ଖର୍ଚ୍ଚର ଶତକଡ଼ା ୮୦ ଭାଗ ବହନ କରିବା ଇତ୍ୟାଦି ପାଇଁ ୟୁଜିସି ଅନୁଦାନ ଦେଇଥାଏ। କିନ୍ତୁ, ଏ ପ୍ରଭୃତ ଅନୁଦାନ ସତ୍ତ୍ୱେ ରାଜ୍ୟର ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟଗୁଡ଼ିକର ଜରାଜୀର୍ଣ୍ଣ ଅବସ୍ଥା ରାଜ୍ୟ ସରକାରଙ୍କର ଶିକ୍ଷା କ୍ଷେତ୍ରରେ ଉଦାସୀନତା, ଅପାରଗତା ତଥା ଅଦୂରଦର୍ଶିତାକୁ ହିଁ ସୂଚାଇ ଥାଏ। ନିଜର ଅପାରଗତାକୁ ଘୋଡ଼ାଇବାକୁ ଯାଇ ରାଜ୍ୟ ସରକାର ବେଦାନ୍ତ ଭଳି ଘରୋଇ ସଂସ୍ଥାଗୁଡ଼ିକ ସହ ସମ୍ପାଦିତ ଏମ୍‌ଓୟୁ ବା କେନ୍ଦ୍ର ସରକାରଙ୍କ ଅନୁଷ୍ଠାନଗୁଡ଼ିକୁ ଦେଖାଇ ବାହାବା ନେବାକୁ ଚେଷ୍ଟା କରୁଛନ୍ତି। ଏଇଠି ମନେପଡ଼େ ବିଖ୍ୟାତ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟର କୁଳପତି ତଥା ଆନ୍ତର୍ଜାତିକ ରସାୟନ-ଜୀବବିଜ୍ଞାନୀ ପ୍ରଫେସର ଆଣ୍ଡ୍ରୁ ହାମିଲ୍‌ଟନ୍‌ଙ୍କ କଥା। ଦୁଇ ବର୍ଷ ତଳେ ସେ ଭାରତ ଗସ୍ତରେ ଆସିଥିଲେ। ସେତେବେଳକୁ କେନ୍ଦ୍ର ଶିକ୍ଷାମନ୍ତ୍ରୀ କପିଲ ଶିବଲଙ୍କ ବିଦେଶୀ-ବିଶ୍ୱବିଦ୍ୟାଳୟ ବିଲ୍ କଥା ବାୟୁମଣ୍ଡଳରେ ଘୂରି ବୁଲୁଥାଏ। ଦିଲ୍ଲୀରେ ସାମ୍ବାଦିକମାନେ ବହୁ ଉତ୍ସାହର ସହିତ ପଚାରିଲେ, "ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟ ଭାରତରେ କେବେ ଦ୍ୱିତୀୟ କାମ୍ପସ ଖୋଲୁଛି ?" ହାମିଲଟନ୍ ସରଳ ଭାବରେ କହିଲେ, "ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟକୁ ଆମେ ହଜାରେ ବର୍ଷ ଧରି ତିଆରି କରୁଛୁ। ଗୋଟିଏ ବିଶ୍ୱବିଦ୍ୟାଳୟ କ'ଣ ହାମ୍‌ବର୍ଗର (ଆମ ଭାଷାରେ ବରା ଗୁଲୁଗୁଲା କହିଲେ ଚଳିବ) ହୋଇଛି ଯେ ଯେଉଁଠି ନାହିଁ ସେଠି ଦୋକାନ ଖୋଲି ବ୍ୟବସାୟ କରି ହେବ ?" କିନ୍ତୁ ଆମ ରାଜ୍ୟ ସରକାରଙ୍କ ଚିନ୍ତା ଏହାର ଠିକ୍ ଓଲଟା। ସଂଖ୍ୟାରେ ଅଧିକ ବିଶ୍ୱବିଦ୍ୟାଳୟ ସ୍ଥାପନ କରି ଉଚ୍ଚଶିକ୍ଷାର ବିକାଶ କରାଯାଇଛି ବୋଲି କହିବା କେବଳ ନିର୍ବୋଧର ବିଳାପ ହିଁ ହେବ।

ଗତ ଶତାବ୍ଦୀର ଷାଠିଏ ଦଶକର ଶେଷ ଭାଗକୁ ରାଜ୍ୟ ସରକାର କେତେଗୁଡ଼ିଏ ଘରୋଇ ମହାବିଦ୍ୟାଳୟକୁ ଆପଣେଇ ନେଇ କାର୍ଯ୍ୟରତ ଶିକ୍ଷକମାନଙ୍କୁ କଲେଜରେ

ଯୋଗଦାନ ଦିନଠାରୁ ପଛୁଆ ଭାବରେ ସରକାରୀ କର୍ମଚାରୀ କରି ଦେଲେ। ସେମାନଙ୍କ ସମସାମୟିକ ତଥା ଓଡ଼ିଶା ଲୋକସେବା ଆୟୋଗ ଦ୍ୱାରା ଯୋଗ୍ୟ ବିବେଚିତ ସାଥୀମାନେ ସେମାନଙ୍କଠାରୁ ଜୁନିଅର ହୋଇଗଲେ। ଏହା ହିଁ ବୋଧହୁଏ ରାଜ୍ୟ ଶିକ୍ଷା କ୍ଷେତ୍ରରେ ଅସଙ୍ଗତିର ପ୍ରଥମ ଉଦାହରଣ। ସେହିଭଳି ଅଶୀ ଦଶକରେ ବହୁ ଆଡ଼ହକ୍ ଅଧ୍ୟାପକ ଦୀର୍ଘଦିନର ଅଧ୍ୟାପନା ଆଳରେ କୋର୍ଟ କଚେରି ଦ୍ୱାରସ୍ଥ ହୋଇ ନିୟମିତ ହୋଇଗଲେ; ଆଡ଼ହକ୍ ନିଯୁକ୍ତି ବୋଲି ଭାବି ବର୍ଷ ବର୍ଷ ଧରି ଆବେଦନ କରି ନ ଥିବା ମେଧାବୀ ଛାତ୍ରମାନେ ଶିକ୍ଷକତାରୁ ବଞ୍ଚିତ ହେଲେ। ସେହି ଅଶୀ ଦଶକର ଶେଷ ଭାଗରେ ରାଜ୍ୟ ସରକାର ସରକାରୀ କଲେଜ ଶିକ୍ଷକମାନଙ୍କୁ ୟୁଜିସି ଦରମା ନ ଦେବାର ନିଷ୍ପତ୍ତି ନେଲେ। ଓଡ଼ିଶାର କଲେଜ ଶିକ୍ଷକମାନେ ଜାତୀୟ ସ୍ରୋତରୁ ବାହାର ହୋଇଗଲେ। ଅଧ୍ୟାପନା ସବୁଦିନ ପାଇଁ ତା'ର ଆକର୍ଷଣ ହରାଇ ବସିଲା। ସେହିଭଳି ଏକବିଂଶ ଶତାବ୍ଦୀର ପ୍ରାରମ୍ଭରେ ରାଜ୍ୟ ସରକାର ପ୍ରଶାସନିକ ଅଫିସରମାନଙ୍କ ଦ୍ୱାରା ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ଶିକ୍ଷକଙ୍କ କାର୍ଯ୍ୟ ଭାର ସମୀକ୍ଷା କରାଇ ପଦ-ଉଚ୍ଛେଦ ବିପ୍ଳବ ଆରମ୍ଭ କଲେ। ମହାବିଦ୍ୟାଳୟଗୁଡ଼ିକର ଭୁଲ୍ ମୂଲ୍ୟାୟନ ଆଶ୍ରୟରେ ଯେତିକି ପଦବି ଅନୁମୋଦନ କଲେ ସେତକ ମଧ୍ୟ ଯୋଗାଇ ପାରିଲେ ନାହିଁ। ଭିତ୍ତିଭୂମିର ଅଭାବ ସହ ଶିକ୍ଷକ ଅଭାବ ଯୋଡ଼ି ହୋଇ ମହାବିଦ୍ୟାଳୟଗୁଡ଼ିକରେ ଶିକ୍ଷା ବିପର୍ଯ୍ୟସ୍ତ ହେଲା। ସରକାରୀ ମେଡ଼ିକାଲ ଓ ଇଞ୍ଜିନିୟରିଂ କଲେଜଗୁଡ଼ିକରେ ଶିକ୍ଷକ ଅଭାବର ପ୍ରଭାବ ମଧ୍ୟ କିଛି କମ୍ ନୁହେଁ। ସେଥିପାଇଁ ବିଲାତ ସରକାରଙ୍କର ଡି.ଏଫ୍.ଆଇ.ଡ଼ି. ଭଳି ପରାମର୍ଶଦାତା ସଂସ୍ଥା କୁଆଡ଼େ ରାଜ୍ୟ ସରକାରଙ୍କର ତାରିଫ କଲେ। ସେହି ଉପାୟରେ ଉତ୍କଳ, ସମ୍ବଲପୁର ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟଗୁଡ଼ିକରୁ ୨୦୦ ପାଖାପାଖି ପଦ ଉଚ୍ଛେଦ କରି ଉତ୍ତର ଓଡ଼ିଶା, ଫକୀରମୋହନ ଓ ରେଭେନ୍ସା ବିଶ୍ୱବିଦ୍ୟାଳୟଗୁଡ଼ିକୁ ଦିଆଗଲା। ବିଶ୍ୱବିଦ୍ୟାଳୟଗୁଡ଼ିକର ଗବେଷଣାର ଦୁରାବସ୍ଥା ଦେଖି ପ୍ରତିଭାବାନ ମେଧାବୀ ଯୁବଗୋଷ୍ଠୀ ଏଥିରେ ଶିକ୍ଷକତା କରିବାକୁ ଆଉ ଆଗଭର ହେଉ ନାହାନ୍ତି।

ଶିକ୍ଷା ବିଭାଗ ପରିଚାଳନାରେ ମଧ୍ୟ ରାଜ୍ୟ ସରକାରଙ୍କର ବହୁ ପ୍ରମାଦ। ବର୍ତ୍ତମାନ ଓଡ଼ିଶାର ସମ୍ପୂର୍ଣ୍ଣ ଶିକ୍ଷା ବ୍ୟବସ୍ଥା ପ୍ରଶାସନିକ ଅଧିକରୀଙ୍କ କବଳରେ। କୁଳପତି ଚୟନ ମଧ୍ୟ ପରିଣତ ହୋଇଛି ଏକ ନିଷ୍ଠାଶୂନ୍ୟ ଗତାନୁଗତିକ ଧାରାରେ। କୁଳପତି ଚୟନ କମିଟିକୁ ମନୋନୀତ ଓ ଅମନୋନୀତ ପ୍ରତ୍ୟେକ ପ୍ରାର୍ଥୀଙ୍କ ବିଷୟରେ ସକାରଣ ଟିପ୍ପଣୀ ଦେବାକୁ କୁଳାଧିପତିଙ୍କ ସ୍ପଷ୍ଟ ନିର୍ଦ୍ଦେଶ ଥିଲାବେଳେ ପ୍ରାୟ ପ୍ରତ୍ୟେକ ଚୟନ

କମିଟି "ସବୁ ଦୃଷ୍ଟିରୁ ବିଚାର କରି" ଭଳି ବାକ୍ୟାଂଶ ଭିତ୍ତିରେ ସେମାନଙ୍କ ମନୋନୀତ ବ୍ୟକ୍ତି ବିଶେଷଙ୍କ ନାମ ସୁପାରିସ କରି କର୍ତ୍ତବ୍ୟ ଶେଷ କରନ୍ତି। କିଛି ବର୍ଷ ତଳେ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ଦାର୍ଶନିକ ଜିତେନ୍ଦ୍ର ନାଥ ମହାନ୍ତି 'ସମ୍ବାଦ'କୁ ସାକ୍ଷାତକାର ସମୟରେ କହିଥିଲେ ଯେ, "କୌଣସି ସଭ୍ୟ ଦେଶରେ ପ୍ରଶାସନିକ ଅଧିକାରୀ କୁଳପତି ହେବାର ଦୃଷ୍ଟାନ୍ତ ନାହିଁ।" ଆମେ କିନ୍ତୁ ସଭ୍ୟତାର ଆଉ ପାଦେ ଆଗକୁ ଯାଇ ସେମାନଙ୍କୁ କେବଳ କୁଳପତି କରୁ ନାହିଁ, କୁଳପତି ଚୟନ କମିଟିର ସଦସ୍ୟ ଓ ମୁଖ୍ୟ ମଧ୍ୟ କରୁଛୁ। ଶୁଣିବାକୁ ମିଳେ ଯେ ପୂର୍ବ ସମୟର କୁଳପତି ଚୟନକୁ କୁଳାଧିପତି ଅଫିସ ଏପରି ଗୁରୁତ୍ୱର ସହ ବିଚାର କରୁଥିଲେ ଯେ ବିଭିନ୍ନ ବିଶ୍ୱବିଦ୍ୟାଳୟ ପରିସରରୁ ବରିଷ୍ଠ ପ୍ରଫେସରମାନଙ୍କ ଶୈକ୍ଷିକ ଯୋଗ୍ୟତା, ଅଧ୍ୟାପନା ଉତ୍କର୍ଷ, ଗବେଷଣାଗତ ପାରଦର୍ଶିତା, ପ୍ରାଶାସନିକ ଦକ୍ଷତା, ଚାରିତ୍ରିକ ଶୁଦ୍ଧତା ତଥା ସାମିଜିକ ପ୍ରତିବଦ୍ଧତା ଇତ୍ୟାଦି ବିଷୟରେ ଗୁପ୍ତ ସୂଚନା ସଂଗ୍ରହ କରୁଥିଲେ। ବର୍ତ୍ତମାନ ଏହିସବୁ କଥା କାହାଣୀ ହୋଇଯାଇଛି।

ସେହିଭଳି ଆଉ ଗୋଟିଏ କଥା ହେଲା, ଉଚ୍ଚଶିକ୍ଷା, ଗଣଶିକ୍ଷା, ମେଡ଼ିକାଲ, ଇଞ୍ଜିନିୟରିଂ ଓ କୃଷିଶିକ୍ଷା ଆଦି ବିଭାଗରେ ବିଶେଷଜ୍ଞ ପରିଚାଳିତ ଡାଇରେକ୍ଟରେଟ୍ ଥିଲାବେଳେ ସଚିବାଳୟ ସ୍ତରରେ ସେଭଳି ବିଭାଗ ଖୋଲିବା ଅନାବଶ୍ୟକ। ଏହା ଦ୍ୱାରା କେବଳ ପ୍ରଭୂତ ଅର୍ଥ ଓ ସମୟ ଶ୍ରାଦ୍ଧ ହେଉଛି। ଏହା ଦ୍ୱାରା ବିଭାଗଗୁଡ଼ିକର ବିକାଶ ମଧ୍ୟ ବାଧାପ୍ରାପ୍ତ ହେଉଛି। ବିଡ଼ମ୍ବନାର କଥା ଯେ ଏକା ପରିବେଶରେ, ଗୋଟିଏ ପାଣି ପବନରେ ଘରୋଇ ଅନୁଷ୍ଠାନଗୁଡ଼ିକ ଅଗ୍ରଗତି କରିଚାଲିଥିବାବେଳେ ସରକାରୀ ଶିକ୍ଷାନୁଷ୍ଠାନଗୁଡ଼ିକ ବିପର୍ଯ୍ୟୟର ସମ୍ମୁଖୀନ ହୋଇଚାଲିଛନ୍ତି। ଏହାହିଁ ସରକାରୀ ପାରଦର୍ଶିତାର ସର୍ବୋତ୍କୃଷ୍ଟ ହସ୍ତାକ୍ଷର!

କୁହାଯାଏ ପ୍ରତ୍ୟେକଟି ଦୁର୍ଯୋଗ ଏକ ସୁଯୋଗର ଦ୍ୱାର ଖୋଲିଦିଏ। ତେଣୁ ଅତୀତର ଭୁଲ୍ ଭ୍ରାନ୍ତିର ଠିକ୍ ଚିହ୍ନଟ ମାଧ୍ୟମରେ ସୁଦୃଢ଼ ପ୍ରତିବଦ୍ଧତାପୂର୍ଣ୍ଣ ପଦକ୍ଷେପ ସାହାଯ୍ୟରେ ଏକ ସୁନେଲି ଭବିଷ୍ୟତର ଗଠନ କରାଯାଇପାରେ। ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଧ୍ୱସ୍ତବିଧ୍ୱସ୍ତ ଜର୍ମାନିରେ ଦାର୍ଶନିକ ତଥା ମନୋବିଜ୍ଞାନୀ କାର୍ଲ ୟାସ୍ପର୍ସ ଓ ସହଯୋଗୀମାନେ ନିଜ ଅଧ୍ୟୟନ ଓ ଅନୁଭୂତି ଆଧାରରେ ତ ପୁଣି ଜର୍ମାନିର ବିଶ୍ୱବିଦ୍ୟାଳୟଗୁଡ଼ିକୁ କେବଳ ପୁନର୍ଜନ୍ମ ଦେଇ ନ ଥିଲେ ବରଂ ବିଶ୍ୱସ୍ତରୀୟ କରିବାରେ ସକ୍ଷମ ହୋଇଥିଲେ। କିନ୍ତୁ ସର୍ବପ୍ରଥମେ ଆମକୁ ସ୍ଥିର ନିଶ୍ଚିତ ହେବାକୁ ପଡ଼ିବ ଯେ ଶିକ୍ଷା ଏକ ବ୍ୟବସାୟ ନୁହେଁ। ଏହା ଅଗଣିତ ପ୍ରାତଃସ୍ମରଣୀୟ ସତ୍ୟାନୁସନ୍ଧାନୀ ସାଧକମାନଙ୍କ ଅବଦାନ,

ବ୍ୟବସାୟୀମାନଙ୍କର ନୁହେଁ। ଶିକ୍ଷା କ୍ଷେତ୍ରରୁ ସମସ୍ତ ପଦପଦବି ବୌଦ୍ଧିକ ଓ ପ୍ରାୟୋଗିକ କ୍ଷେତ୍ରରେ ଉତ୍କର୍ଷ ଲାଭ କରିଥିବା ବିଭାଗୀୟ ବିଶେଷଜ୍ଞମାନଙ୍କ ତତ୍ତ୍ୱାବଧାନରେ ଛାଡ଼ି ଦେବା ସରକାରଙ୍କ ପ୍ରଥମ କର୍ତ୍ତବ୍ୟ। ଶିକ୍ଷାର ବିକାଶ ପାଇଁ ବାର୍ଷିକ ଓ ପଞ୍ଚବାର୍ଷିକ ବଜେଟ୍‌ରେ ୧୫-୨୦ ପ୍ରତିଶତ ଅନୁଦାନର ବ୍ୟବସ୍ଥା ରହୁ ଓ ଶିକ୍ଷା ବର୍ଷର ଆରମ୍ଭ ବେଳକୁ ଅନୁଷ୍ଠାନଗୁଡ଼ିକୁ ତାହା ମିଳୁ। ଶିକ୍ଷା ବର୍ଷର ଶେଷ ବେଳକୁ ଅନୁଷ୍ଠାନଗୁଡ଼ିକର ଆୟବ୍ୟୟର ଅଡ଼ିଟ୍ ହେଉ କିନ୍ତୁ ଆବଶ୍ୟକ ଦିଗରେ ଅନୁଦାନ ଖର୍ଚ୍ଚ କରିବାର ସ୍ୱାଧୀନତା ଅନୁଷ୍ଠାନଗୁଡ଼ିକର ରହୁ। ରାଜ୍ୟରେ ନୂଆ ଯୁଗୋପଯୋଗୀ ଅନୁଷ୍ଠାନ ସୃଷ୍ଟି ତଥା ପୁରୁଣା ଅନୁଷ୍ଠାନଗୁଡ଼ିକର କ୍ରମୋନ୍ନତି ନିମନ୍ତେ ଏକ ସକ୍ରିୟ ରାଜ୍ୟସ୍ତରୀୟ ଯୋଜନା ପ୍ରଣୟନକାରୀ (ଓଡ଼ିଶା ଲୋକସେବା ଆୟୋଗ ଭଳି ନିଷ୍କ୍ରିୟ ନୁହେଁ) ସଂସ୍ଥା ରହିବା ମଧ୍ୟ ଜରୁରୀ। ସାରା ଦେଶରେ ରାଜ୍ୟ ଓ କେନ୍ଦ୍ରୀୟ ଅନୁଷ୍ଠାନ ନିର୍ବିଶେଷରେ ବିଭିନ୍ନ ଶିକ୍ଷା କାର୍ଯ୍ୟକ୍ରମରେ ସମାନ ସ୍ତର ପାଇଁ ସମାନ ପାଠ୍ୟ ଖସଡ଼ା, ସମାନ ପରିଚାଳନାଗତ ନିୟମାବଳୀ, ଶିକ୍ଷକମାନଙ୍କ ପାଇଁ ସମାନ ଦରମା ଓ ଚାକିରି ସର୍ତ୍ତାବଳୀ ଓ ଶିକ୍ଷାନୁଷ୍ଠାନଗୁଡ଼ିକ ପାଇଁ ସମାନ ଭିତ୍ତିଭୂମିର ବ୍ୟବସ୍ଥା କରାଯାଉ। ଆବଶ୍ୟକ ହେଲେ ଶିକ୍ଷାକୁ ବିଶେଷ କରି ଉଚ୍ଚଶିକ୍ଷାକୁ 'କନ୍‌କରେଣ୍ଟ ଲିଷ୍ଟ'ରୁ କାଢ଼ି 'କେନ୍ଦ୍ରୀୟ ଲିଷ୍ଟ'କୁ ମଧ୍ୟ ନିଆଯାଇପାରେ। ତା'ହେଲେ ଆଗାମୀ ଦିନରେ ଉଚ୍ଚଶିକ୍ଷାର ସ୍ଥିତି ସୁଧୁରିପାରେ। ଚାହଁଲେ ଉଚ୍ଚଶିକ୍ଷା ପୁଣି ହସିବ।



# ଆମ ବିଦ୍ୟାଳୟ ଆମକୁ ଫେରାଇ ଦିଅ !

ନିକଟରେ ପରିମଳ ଭଟ୍ଟାଚାର୍ଯ୍ୟଙ୍କ ଲିଖିତ "A face of Bengal" (Looking through the Prism of Basic Education) ବହିଟି ପଢ଼ିବାର ମୁଁ ସୁଯୋଗ ପାଇଲି। ସୁଖପାଠ୍ୟ ବହିଟି ପଢ଼ିବାରେ ଅତ୍ୟନ୍ତ ଆନନ୍ଦ ମିଳିଲା। ବହିଟି ଉତ୍ସର୍ଗ କରାଯାଇଛି ଗାଁର ମଳିମୁଣ୍ଡିଆ ଶିକ୍ଷକମାନଙ୍କୁ ଯେଉଁମାନେ ସବୁ ଅସୁବିଧାସତ୍ତ୍ୱେ ସେମାନଙ୍କ ସ୍ନେହ ଦେଇ ଗ୍ରାମୀଣ ଶିକ୍ଷା ବ୍ୟବସ୍ଥାକୁ ଜୀବନ୍ତ ରଖିଛନ୍ତି। ମନ ଦୁଃଖ ବି ହେଲା, କାରଣ ପ୍ରାଥମିକ ଶିକ୍ଷା ଆଧାରରେ ଗୋଟିଏ ସମାଜକୁ ଚିହ୍ନିବାର ପ୍ରଚେଷ୍ଟା ନୂଆ ନୂଆ ଲାଗିଲେ ମଧ୍ୟ ଓଡ଼ିଶାରେ ଏଭଳି ଏକ ବହି ଅଛି ବୋଲି ମୋର ମନେ ହୁଏ ନାହିଁ। ହଁ, ଗୁଡ଼ାଏ ସରକାରୀ ଦସ୍ତାବିଜ୍ ଥାଇପାରେ। ସେଥିରେ କିନ୍ତୁ ନା ଥାଏ ସତ୍ୟତା, ନା ଶିକ୍ଷାର ତୃଣମୂଳ ସମସ୍ୟାର ଅବତାରଣା ନା ସେଗୁଡ଼ିକର ସାଧୁ ସମାଧାନର ସୂତ୍ର। ପଢ଼ିଲେ ଖୁବ୍‌ଶୀଘ୍ର ଜଣାପଡ଼ିଯିବ ଯେ ନିଶ୍ଚିତ ରୋଜଗାର ଯୋଜନାରେ ନିୟୋଜିତ କିଛି ଫମ୍ପା ମସ୍ତିଷ୍କଗୁଡ଼ିକର କିଛି ଇଂରାଜୀ ବହି ବା ବିବରଣୀଗୁଡ଼ିକର ଆକ୍ଷରିକ ଓଡ଼ିଆ ଅନୁବାଦ ଭଳି। ଏହି ପ୍ରକାର ନିମ୍ନମାନ 'ଦିଗ୍‌ଦର୍ଶନ'ର ଶିକାର ହୋଇ ଆଜି ଆମ ପ୍ରାଥମିକ ଶିକ୍ଷା ମୁମୂର୍ଷୁ-ପ୍ରାୟ ପଡ଼ିରହିଛି; ଅତୀତର ଶକ୍ତି, ସାମର୍ଥ୍ୟ ଓ ଔଜ୍ଜ୍ୱଲ୍ୟ ହରାଇବସିଛି। ଆସନ୍ତୁ ଶରଶଯ୍ୟାରେ ଶାୟିତ ପ୍ରାଥମିକ ଶିକ୍ଷାର ଗୋଟିଏ ଗୋଟିଏ ସମସ୍ୟା ଉପରେ ଯତ୍‌କିଞ୍ଚିତ ଦୃଷ୍ଟିପାତ କରିବା। ଆଉ କିଛି ହେଉ କି ନ ହେଉ ଗୋଟିଏ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଦିଗ ଉପରେ ଚିନ୍ତା କରିବାରେ ତ ଅନ୍ତତଃ କିଛି ସମୟ କଟିବ।

ପ୍ରାଥମିକ ଶିକ୍ଷାର ଗୁରୁତ୍ୱ ବିଷୟରେ ପୁନରାଲୋଚନା ଯେ ଅନାବଶ୍ୟକ, କହିବା ବାହୁଲ୍ୟ। ପ୍ରାଥମିକ ଶିକ୍ଷାର ବିଭିନ୍ନ ଦିଗକୁ ନେଇ ଲିଖିତ ବିଷୟବସ୍ତୁକୁ ଏକାଠି କଲେ ବିଶ୍ୱର ସର୍ବବୃହତ୍ ପାଠାଗାରଟିଏ ହେବ। କିନ୍ତୁ ସବୁ ଲେଖା ଭିତରେ ଗୋଟିଏ କଥୋପକଥନ ଯେତିକି ପ୍ରାଣସ୍ପର୍ଶୀ, ସେତିକି ଶିକ୍ଷଣୀୟ। କଥୋପକଥନଟି ଦୁଇଜଣ ବିଶ୍ୱବିଖ୍ୟାତ ଋଷ୍ ଦେଶର ଚିନ୍ତାନାୟକଙ୍କ ମଧ୍ୟରେ। ଜଣେ ଆଣ୍ଟନ ସେକୋଭ ଓ

ଅନ୍ୟଜଣେ ମାକ୍ସିମ୍ ଗର୍କି। ଆଜକୁ ପ୍ରାୟ ୧୫୦ ବର୍ଷ ତଳର କଥା ହେବ। ଦୁଇ ବନ୍ଧୁଙ୍କର ସେ ଥିଲା ଚ'ପାନ ଅବସର। ସେକୋଭ୍ ତାଙ୍କ ମନକଥା କହିବାକୁ ଯାଇ ଗର୍କିଙ୍କୁ କହିଥିଲେ, 'ତୁମକୁ ମୋ' ସ୍ୱପ୍ନ ବିଷୟରେ ଶୁଣିବାକୁ ଭଲ ଲାଗିବ ତ! ମୋତେ ସେ ବିଷୟରେ ଗପିବାକୁ ବହୁତ ଭଲ ଲାଗେ। ତୁମେ କେବେ ଋଷିଆର ଗାଁ-ଗହଳରେ ନିଷ୍ଠାପର, ବୁଦ୍ଧିମାନ ଓ ପ୍ରବୀଣ ଶିକ୍ଷକଙ୍କର ଏକାନ୍ତ ଆବଶ୍ୟକତା ଅନୁଭବ କରିଛ କି ? ଋଷିଆର ଶିକ୍ଷକମାନଙ୍କ ପାଇଁ ଆମକୁ ଅସାମାନ୍ୟ ଅନୁକୂଳ ବାତାବରଣ ସୃଷ୍ଟି କରିବାକୁ ପଡ଼ିବ ଓ ଯେତେଶୀଘ୍ର ସେତେ ମଙ୍ଗଳ। କାରଣ ମୁଁ ଉପଲବ୍ଧ କରେ ଯେ ଯଦି ଜନସାଧାରଣ ସର୍ବମୁଖୀ ଶିକ୍ଷା ନ ପାଆନ୍ତି ତେବେ ସମାଜ ଦରପୋଡ଼ା ଇଟାରେ ତିଆରି ଘର ଭଳି ଭୁଷୁଡ଼ି ପଡ଼ିବ....'। ଅଳ୍ପ କେତୋଟି ବାକ୍ୟରେ ପ୍ରାଥମିକ ଶିକ୍ଷାର ଗୁରୁତ୍ୱ, ପରାକାଷ୍ଠା ଓ ତାକୁ ସାକାର କରିବାର ପଦକ୍ଷେପ ସବୁକିଛି ନିହିତ। ଋଷିଆ ତଥା ଆଜିର ଉନ୍ନତ ଦେଶଗୁଡ଼ିକ ଏହିଭଳି ଅନେକ ସ୍ୱପ୍ନଗୁଡ଼ିକର ସଫଳ ଦୃଷ୍ଟାନ୍ତ ମାତ୍ର। ଦୁଃଖର କଥା ଆମ ଦେଶରେ ଶିକ୍ଷାକୁ ନେଇ ବସ୍ତା ବସ୍ତା ଲେଖାଅଛି। କେତେ ଯେ କମିଶନ କେତେ କେତେ ସୁନ୍ଦର ସୁନ୍ଦର କଥା ଲେଖି ନାହାନ୍ତି! କିନ୍ତୁ ସରକାରୀ ପ୍ରତିବଦ୍ଧତା ଅଭାବରୁ ଆଜି ଭାରତରେ ରାଷ୍ଟ୍ରୀୟ ପ୍ରାଥମିକ ଶିକ୍ଷା ବ୍ୟବସ୍ଥା ସମ୍ପୂର୍ଣ୍ଣ ଭାବରେ ଧୂଳିସାତ ହୋଇଯାଇଛି।

ପ୍ରାଥମିକ ଶିକ୍ଷାପ୍ରତି ସରକାରୀ ଉଦାସୀନତାର ଗୋଟିଏ ପ୍ରକୃଷ୍ଟ ଉଦାହରଣ ହେଉଛି ଗୋଟିଏ ପରେ ଗୋଟିଏ କମିଶନ ବସାଇବାର ବ୍ୟାଧି। କୌଣସି ଗୋଟିଏ କମିଶନର ଗୁରୁତ୍ୱପୂର୍ଣ୍ଣ ସୁପାରିଶକୁ କାର୍ଯ୍ୟକାରୀ କରାଯାଏ ନାହିଁ। ଧର୍ମକୁ ଆଖି ମିଟିକା ମାରିଲା ଭଳି କେବଳ କେତୋଟି ପ୍ରଭାବଶୂନ୍ୟ ସୁପାରିଶକୁ ପ୍ରତିବଦ୍ଧତାଶୂନ୍ୟ ଭାବରେ କାର୍ଯ୍ୟକାରୀ କରାଯାଏ। ଭଲ ଫଳ କିଛି ଫଳେ ନାହିଁ ବରଂ ଫଳ ଓଲଟା ହୁଏ। କଥାଟା ବୁଝିବାପାଇଁ ସହଜ ହେବ ଯଦି ଆମେ ମନେ ପକାଇବା ଯେ ଭାରତ ସ୍ୱାଧୀନ ହେବାର ବହୁବର୍ଷ ପୂର୍ବରୁ, ଭାରତୀୟ ଜାତୀୟ କଂଗ୍ରେସ ଗଠନ ଅବ୍ୟବହିତ ଅବସରରେ ଇଂରେଜ ସରକାର ୧୮୮୨ ମସିହାରେ ଭାରତ ଇତିହାସରେ ପ୍ରଥମଥର ପାଇଁ ଶିକ୍ଷା କମିଶନ ବସାଇଥିଲେ। ତା'ର ଅଧ୍ୟକ୍ଷ ଡବ୍ଲୁ.ଡବ୍ଲୁ.ହଣ୍ଟର ସାହେବ ଥିବାରୁ ତାକୁ ହଣ୍ଟର କମିଶନ ମଧ୍ୟ କୁହାଯାଏ। ଭାବିଲେ ଆଶ୍ଚର୍ଯ୍ୟ ଲାଗିବ ଯେ ଗୋଟିଏ ବିଦେଶୀ ଉପନିବେଶୀ ସରକାର ଭାରତରେ ପ୍ରାଥମିକ ଶିକ୍ଷାର ଉତ୍କର୍ଷ ପାଇଁ ଏହି କମିଶନଟି ବସାଇଥିଲେ। ପ୍ରାଥମିକ ଶିକ୍ଷା କ୍ଷେତ୍ରରେ କମିଶନର ସୁପାରିଶଗୁଡ଼ିକ ଆଜିର ସମୟରେ ମଧ୍ୟ ବହୁ ଗୁରୁତ୍ୱ ବହନ କରେ ଯଥା ମାତୃଭାଷାରେ ଶିକ୍ଷାଦାନ, ପାଠ୍ୟବସ୍ତୁ ପିଲାର

ଜୀବନ ସହ ସମ୍ପୃକ୍ତ ହେବା ଆବଶ୍ୟକ ଓ ପ୍ରାଥମିକ ଶିକ୍ଷା ବ୍ୟବସ୍ଥା ସମ୍ପୂର୍ଣ୍ଣ ଭାବରେ ସରକାର (ମ୍ୟୁନିସିପାଲଟି ବୋର୍ଡ଼) ଅଧିନରେ ରହିବା ଇତ୍ୟାଦି। ସେହିଭଳି ମାଧମିକ ଶିକ୍ଷା କ୍ଷେତ୍ରରେ ତାଙ୍କ ସୁପାରିଶ ଥିଲା ଦୁଇଟି ଧାରା ପ୍ରଚଳନ ପାଇଁ; ଗୋଟିଏ ଧନ୍ଦାମୂଳକ ଓ ଅନ୍ୟଟି ବିଶ୍ୱବିଦ୍ୟାଳୟ ଶିକ୍ଷାପାଇଁ ଉଦ୍ଦିଷ୍ଟ। ଆଜିମଧ ଏହାର ସମସାମୟିକ ଗୁରୁତ୍ୱ ଉପଲବ୍ଧ କରି ହୁଏ। ଏହାର ବିଫଳତା ହିଁ ଆଜି ଆମ ଶିକ୍ଷା ଓ ସାମାଜିକ ବ୍ୟବସ୍ଥାକୁ ପଙ୍ଗୁ କରି ଦେଇଛି। ହଣ୍ଟର କମିଶନ ପରେ ସ୍ୱାଧୀନ ଭାରତରେ ଶିକ୍ଷା ଉପରେ ୧୯୪୮ରେ ବିଶ୍ୱବିଦ୍ୟାଳୟ ଶିକ୍ଷା ବା ରାଧାକ୍ରିଷ୍ଣନ କମିଶନ, ୧୯୫୨ରେ ମାଧମିକ ଶିକ୍ଷା ବା ମୁଦାଲିୟର କମିଶନ, ୧୯୬୪ରେ ଭାରତୀୟ ଶିକ୍ଷା ବା କୋଠରୀ କମିଶନଗୁଡ଼ିକ ସେମାନଙ୍କର ସୁଚିନ୍ତିତ ସୁପାରିଶ ଦେଇଛନ୍ତି। କୋଠରୀ କମିଶନ ସୁପାରିଶ ବା ୧୯୬୮ ଜାତୀୟ ଶିକ୍ଷାନୀତି ଅନୁସାରେ ଆଜି ୧୦ +୨ +୩ ପାଠ୍ୟକ୍ରମ ସାରାଦେଶରେ ପ୍ରଚଳିତ ହେଉଛି। କିନ୍ତୁ ଏତକ ମାତ୍ର ଛାଡ଼ିଦେଲେ ଅନ୍ୟ କୋଠାରୀ କମିଶନ ସୁପାରିଶ ଯଥା ସମ୍ପୂର୍ଣ୍ଣ ମାଗଣା ଶିକ୍ଷାବ୍ୟବସ୍ଥା ବା ବିଦ୍ୟାଳୟ ଶିକ୍ଷାରେ ବିଜ୍ଞାନକୁ ଗୁରୁତ୍ୱ ଦେବା କାର୍ଯ୍ୟକାରୀ ହୋଇନାହିଁ। ତା'ପରେ ୧୯୬୮ର ଆଉ ଏକ ଶିକ୍ଷାନୀତି ଆସିଲା, ଏହିଠାରୁ ହିଁ ଦେଶରେ ଶିକ୍ଷା କ୍ଷେତ୍ରରେ ବ୍ୟବସାୟୀକରଣ ତଥା ଶବ୍ଦଚାତୁରୀରେ ମନ୍ଦ ଉଦ୍ଦେଶ୍ୟକୁ ଲୁଚାଇବା ପ୍ରବୃତ୍ତିର ଆରମ୍ଭ ହେଲା। ଶିକ୍ଷା ମଣିଷତିଆରି ଓ ଚରିତ୍ର ଗଠନର ମାଧମ ନହୋଇ ଲାଭପାଇଁ ପୁଞ୍ଜିନିବେଶର କ୍ଷେତ୍ର ହୋଇଗଲା। ସରକାରଗୁଡ଼ିକ ଲିଖିତ ଭାବରେ ଶିକ୍ଷା ପ୍ରଦାନ ଦାୟିତ୍ୱରୁ ମୁକ୍ତ ହୋଇଗଲେ, ସେ ଦାୟିତ୍ୱ ବାପା-ମାଙ୍କର ହୋଇଗଲା। ଏସବୁ ନୀତି WTO, GATT, WORLD BANK ଭଳି ଆନ୍ତର୍ଜାତିକ ବ୍ୟବସାୟୀସଂସ୍ଥାଗୁଡିକ ପରାମର୍ଶରେ ହିଁ ପ୍ରଣୀତ ହେଲା। ମଧ୍ୟଯୁଗୀୟ ପ୍ରଶାସନିକ ଉପନିବେଶବାଦ ହଟିଯାଇ ତା' ଜାଗାରେ ଶୈକ୍ଷିକ ଓ ଅର୍ଥନୈତିକ ଉପନିବେଶବାଦ ପ୍ରତିଷ୍ଠିତ ହେଲା। ପରେ ପରେ ଭାରତ ସରକାରଙ୍କ ଦ୍ୱାରା ୨୦୦୦ରେ ବିର୍ଲାଅମ୍ବାନୀ (କୁମାର ମଙ୍ଗଳମ୍ ବିର୍ଲା ଓ ମୁକେଶ ଅମ୍ବାନୀ) ଶିକ୍ଷା ଉପଦେଷ୍ଟା କମିଟି, ଜାତୀୟ ଜ୍ଞାନ କମିଶନ ୨୦୦୬, ଉଚ୍ଚଶିକ୍ଷା ପାଇଁ ଯଶପାଲ କମିଟି ୨୦୦୬ ଇତ୍ୟାଦି ବସାଯାଇଛି। ତା' ସହିତ ଜାତୀୟ ଶିକ୍ଷାନୀତି ସଂଶ୍ଳିଷ୍ଟ ୧୯୮୮ର 'କଳାପଟା ଅଭିଯାନ', ୧୯୯୩ରେ ପ୍ରାଥମିକ ବିଦ୍ୟାଳୟ ଛାତ୍ରଙ୍କ ଶୈକ୍ଷିକ ବୋଝ କମାଇବା ପାଇଁ ଯଶପାଲ ଉପଦେଷ୍ଟା କମିଟି, ୧୯୯୪ର ଦିଲ୍ଲୀ ଶିକ୍ଷା ଯୋଜନା (ଡି.ପି.ଇ.ପି), ୨୦୦୧ର ୟୁନେସ୍କୋ ପ୍ରବର୍ତ୍ତିତ ୨୦୧୫ ସୁଦ୍ଧା 'ସମସ୍ତଙ୍କ ପାଇଁ ଶିକ୍ଷା ଯୋଜନା' ତଥା ୨୦୦୯ର ଭାରତ ସରକାରଙ୍କ 'ଶିକ୍ଷା ଅଧିକାର ଆଇନ' ଗୁଡ଼ିକର

ପ୍ରବର୍ତ୍ତନ ସମାଜରେ ଶିକ୍ଷାର ଯେ ସର୍ବଶ୍ରେଷ୍ଠ ଗୁରୁତ୍ୱ ପ୍ରତିପାଦନ କରୁଛି କହିବା ବାହୁଲ୍ୟମାତ୍ର। ଆଗକୁ ବଢ଼ିବା ପୂର୍ବରୁ କିନ୍ତୁ ଗୋଟିଏ କଥା ଆମକୁ ସ୍ପଷ୍ଟ ଭାବରେ ମନେରଖିବା ଉଚିତ ହେବ ଯେ ୧୯୮୬ ଶିକ୍ଷାନୀତି ପ୍ରଣୟନ ପୂର୍ବରୁ ଶିକ୍ଷା ଏକ ପରମ ଜନହିତୈଷୀ କାର୍ଯ୍ୟକ୍ରମ ଭାବରେ ଗୃହୀତ ହୋଇଥିବା ସ୍ଥଳେ ପରବର୍ତ୍ତୀ କାମରେ ଏହା ଏକ ଶ୍ରେଷ୍ଠ ଲାଭଜନକ ବ୍ୟବସାୟରେ ପରିଣତ ହୋଇଛି। ଏହି ସମୟରୁ ହିଁ ଗୋଟିଏ ଶ୍ରେଣୀକୁ-ଜଣେ ଶିକ୍ଷକର ସୁସ୍ଥ ପରମ୍ପରା ବଦଳି ନିର୍ଦ୍ଦିଷ୍ଟସଂଖ୍ୟକ ଛାତ୍ର (ତିରିଶ ବା ଚାଳିଶ)ଙ୍କ ପାଇଁ ଜଣେ ଶିକ୍ଷକ ଭଳି ଅସୁସ୍ଥ ଅଯୌକ୍ତିକ ପଦ୍ଧତିର ସୂତ୍ରପାତ ହେଲା।

ଯେଉଁ କଥାଗୁଡ଼ିକୁ ନେଇ ଆଗକୁ ବଢ଼ିବା ସେଗୁଡ଼ିକ ମୋଟାମୋଟି ଭାବରେ ସାଧାରଣଜ୍ଞାନର କଥା। କମିଶନଗୁଡ଼ିକ ବା ଅନ୍ୟ ବିଜ୍ଞ ବ୍ୟକ୍ତିମାନେ ସେହି କଥାକୁ ନିଜ ନିଜ ଭାଷା ଓ ଶୈଳୀରେ ଯାହା କହିଛନ୍ତି ମାତ୍ର। ସେଗୁଡ଼ିକ ହେଲା ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ଶିକ୍ଷାଦାନର ମାଧ୍ୟମ ମାତୃଭାଷା ହେବା ଜରୁରୀ, ଶିକ୍ଷାଦାନର ବିଷୟ ପିଲାମାନଙ୍କ ଜୀବନ ସହ ସମ୍ପୃକ୍ତ ହେବା ବିଧେୟ, ଶିକ୍ଷାୟତନର ପରିବେଶ ପିଲାଙ୍କ ମନକୁ ଛୁଇଁବା ଆବଶ୍ୟକ ତଥା ଶିକ୍ଷକମାନେ ଦକ୍ଷ, ଜ୍ଞାନୀ, ଗୁଣବନ୍ତ ଓ ନିଜ ବୃତ୍ତିରେ ଆତ୍ମସନ୍ତୋଷ ଲାଭ କରୁଥିବା ଜରୁରୀ। ପ୍ରକୃତ କଥା ହେଉଛି ଏହି ସାଧାରଣ କଥାଗୁଡ଼ିକ ଉପରେ କମିଶନ ଉପରେ କମିଶନ ବସାଇ ତୁମ୍ବିତୋଫାନ କରିବାରେ କାହିଁକି ଯେ ସରକାରଗୁଡ଼ିକ ଗରିବ ଲୋକମାନଙ୍କର ଅର୍ଥ ଶ୍ରାଦ୍ଧ କରୁଛନ୍ତି ବୁଝି ହୁଏନି। ବହୁ ଆଡ଼ମ୍ବରରେ ଲଘୁକ୍ରିୟା ଭଳି ଉପରୋକ୍ତ ପ୍ରତ୍ୟେକ କ୍ଷେତ୍ରରେ ସରକାର ସାମଗ୍ରିକ ଭାବରେ ବିଫଳ ହେବା ହିଁ ସାର ହୋଇଛି।

ପ୍ରଥମେ ଭାଷାର କଥା। ଜ୍ଞାନୀ, ଗୁଣୀ, ବୈଜ୍ଞାନିକ ତଥା ମନସ୍ତତ୍ତ୍ୱବିତ୍ ସମସ୍ତଙ୍କର କହିବା କଥା ଯେ ପିଲାଟେ ତା'ର ମାତୃଭାଷା ମାଧ୍ୟମରେ ହିଁ ବାହ୍ୟ ଜଗତ ସହ ନିଜକୁ ଯୋଡ଼େ। ତେଣୁ ତା'ର ଧୀଶକ୍ତି ଉତ୍ତରଣରେ ମାତୃଭାଷା ଶ୍ରେଷ୍ଠ ସହାୟ। ସବୁ ଜାଣି ମଧ୍ୟ ତୃତୀୟ ବା ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ କେବଳ ମାତୃଭାଷାରେ ପାଠ ପଢ଼ାଇବା ପାଇଁ ସରକାରୀ ନିର୍ଦ୍ଦେଶ ନାହିଁ। ଓଡ଼ିଶାରେ ଇଂରାଜୀ ଭାଷା ମାଧ୍ୟମରେ ପାଠ ଆରମ୍ଭ କରୁଥିବା ପିଲାଙ୍କ ସଂଖ୍ୟା ସହରରେ ଶତକଡ଼ା ୭୦-୮୦ ହୋଇଥିବା ସ୍ଥଳେ ଗାଁ-ଗଣ୍ଡାକୁ ମଧ୍ୟ ରୋଗ ବ୍ୟାପି ଚାଲିଛି। କେବଳ ଅତ୍ୟନ୍ତ ଗରିବ ବାପା-ମା'ଙ୍କ ପିଲାମାନେ ହିଁ ଓଡ଼ିଆରେ ଶିକ୍ଷାରମ୍ଭ କରୁଛନ୍ତି। ଫଳତଃ ମନ୍ଦାରଗଛରେ "ହିବିସକସ୍" ଫୁଟୁଛି ତ ଡାଳିମ୍ବ ଗଛରେ "ପୋମେଗ୍ରାନେଟ୍" ଫଳୁଛି। ଓଡ଼ିଆ ପିଲାଏ କଳା ବା ମାଟିଆ ସା'ବ ପାଲଟି ଯାଉଛନ୍ତି। ଆଦିବାସୀ ଛୁଆଙ୍କ କ୍ଷେତ୍ରରେ ଏହାର ପରିଣତି ଆହୁରି

ଭୟଙ୍କର। ସେମାନଙ୍କର କଥିତ ମାତୃଭାଷା ଓଡ଼ିଆ ବି ନୁହେଁ, ସେମାନଙ୍କ କିଛି ଭାଷାର ନିଜସ୍ୱ ଲିପି ମଧ୍ୟ ଅଛି। ସେମାନଙ୍କ ଭାଷା ଓ ଲିପି ବଦଳରେ ଓଡ଼ିଆ ବା ଇଂରାଜୀରେ ପଢ଼ାଇବା ସେମାନଙ୍କ ପାଇଁ ଏକାକଥା; ଉଭୟ ବିଦେଶୀ ଭାଷା। ପଢ଼ା ହେବ ବା କିପରି? ବହି ତ ନାହିଁ, ପଢ଼େଇବାକୁ ଶିକ୍ଷକ ନିଯୁକ୍ତ କରାଯାଇ ନାହିଁ। ସରକାରୀ ସ୍ତରରେ ଏସବୁ ବିଷୟରେ ଗୁରୁତ୍ୱର ସହ ବିଚାର କରାଯାଇ ନାହିଁ। ନିଜ ମାତୃଭାଷାରେ ପ୍ରାଥମିକ ଶିକ୍ଷା ନ ପାଇ ଅନ୍ୟ ଭାଷାର ଶବ୍ଦକୁ ଘୋଷିଘୋଷି ଆମ ପିଲାମାନେ ସୃଜନଶୀଳ ନ ହୋଇ 'ଘୋଷା ବଳଦ' ହିଁ ହୋଇ ବାହାରୁଛନ୍ତି। ଜୀବନର ପରବର୍ତ୍ତୀ କାଳରେ ଏହା ସ୍ପଷ୍ଟ ହୋଇ ଧରାପଡୁଛି। ଲୋକସଂଖ୍ୟାର ଆଧିକ୍ୟ ସତ୍ତ୍ୱେ ଆମେ ଗବେଷଣା, ଆବିଷ୍କାର ଓ ଉଦ୍ଭାବନ କ୍ଷେତ୍ରରେ ଲୁଚି ଯାଉଛୁ।

ତା'ପରେ ଆସନ୍ତୁ ପାଠ୍ୟକ୍ରମ ଉପରେ ନଜର ପକାଇବା। ପ୍ରଥମ କଥା ଯାହା ଦୃଷ୍ଟିରେ ପଡ଼ିବ ସେହିଟି ହେଲା ବହିଗୁଡ଼ିକର ପୃଥୁଳ ଶରୀର। ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଶ୍ରେଣୀଗୁଡ଼ିକରେ ସାହିତ୍ୟ, ପରିବେଶ ଇତ୍ୟାଦି ବହିରେ ପ୍ରାୟ ୧୫-୨୦ଟି ବିଷୟ ରହୁଛି। ପ୍ରତିଟି ବିଷୟକୁ ପିଲାମାନଙ୍କୁ ଭଲ ଭାବରେ ବୁଝି ହେଲାଭଳି ଓ ପିଲାଙ୍କ ମନକୁ ଛୁଇଁଲା ଭଳି ପଢ଼ାଇବାକୁ ହେଲେ ସେଥିପାଇଁ ୮-୧୦ଟି ପିରିୟଡ଼୍ ଦରକାର, କିନ୍ତୁ ଶିକ୍ଷାବର୍ଷ ମଧ୍ୟରେ ଏତିକି ପାଠପଢ଼ା ଦିନ ମିଳେ ନାହିଁ। ସେହିଭଳି ଗଣିତରେ ମଧ୍ୟ ସ୍ଥାନେ ସ୍ଥାନେ ବେଶି ବୁଝାଇବାକୁ ଯାଇ ବିଷୟଟିକୁ ଜଟିଳ କରି ଦିଆଯାଏ। ଏହାର ଗୋଟିଏ ଉଦାହରଣ ହେଲା ଚତୁର୍ଥ ଶ୍ରେଣୀରେ ଜ୍ୟାମିତି ବିଷୟର ଶିକ୍ଷା ଆରମ୍ଭ ହେବାର ଶୈଳୀ। ଜ୍ୟାମିତି ଆରମ୍ଭ ହେଉ ହେଉ ରେଖାଖଣ୍ଡ, ସରଳରେଖା ଓ ରଶ୍ମି ଇତ୍ୟାଦିର ତତ୍ତ୍ୱ ପିଲାଙ୍କ ପାଖରେ ପରଶି ଦିଆଯାଉଛି। ପିଲାଙ୍କୁ ସରଳରେଖା ବା ତାକୁ ନେଇ ସୃଷ୍ଟି ହେଉଥିବା କିସମ କିସମର ଜ୍ୟାମିତିକ କ୍ଷେତ୍ର କଥା ନ କହି, ଜ୍ୟାମିତି ପ୍ରତି ପ୍ରଥମେ ଆକୃଷ୍ଟ ନ କରି, ରଶ୍ମିତତ୍ତ୍ୱ ବାଢ଼ିବାରେ କିଛି ଗାଣିତିକ ଲାଭ ନାହିଁ ବୋଲି ମୋର ଧାରଣା। ବରଂ ସରଳରେଖାର ଦୁଇପ୍ରାନ୍ତ ବିନ୍ଦୁ 'ଅନନ୍ତ' ଦୂରରେ କହି ପ୍ରଥମରୁ ହିଁ ପିଲାର ମୁଣ୍ଡକୁ 'ଅନନ୍ତ' ଓ 'ସୀମିତି' ତତ୍ତ୍ୱ ଦ୍ୱାରା ଭାରାକ୍ରାନ୍ତ କରି ଦିଆଯାଉଛି। ସେହିଭଳି ଇଂରାଜୀ ବହିଗୁଡ଼ିକ ମଧ୍ୟ ପିଲାର ଭାଷା ଆହରଣ ଦକ୍ଷତାକୁ ଠିକ୍ ଭାବେ ଆକଳନ କରି ନ ଥିବା ବା 'କାଳ' (Tense)କୁ ନେଇ ଧିରେ ଧିରେ ଆଗକୁ ଯାଉଥିବା ଦେଖିବାକୁ ମିଳୁନାହିଁ। ଅନ୍ୟପକ୍ଷରେ ବିଷୟବସ୍ତୁଗୁଡ଼ିକର ସଂଖ୍ୟା ଓ କ୍ଲିଷ୍ଟତା ବଢ଼ିବା ସହ ତାଳଦେଇ ଶିକ୍ଷାଦାନ ହୋଇପାରୁ ନାହିଁ। ନ ହୋଇପାରିବାର କାରଣ ଅନେକ ଯଥା ଶିକ୍ଷକଙ୍କର ପ୍ରଭୂତ ଅଭାବ, ଶିକ୍ଷକ ଥିଲେ ଯୋଗ୍ୟତାର ଅଭାବ,

ଯୋଗ୍ୟତା ଥିଲେ ମନର ଅଭାବ, ଯୋଗ୍ୟତା ଓ ମନ ଥିଲେ ଅମଲାତନ୍ତ୍ର ତାଙ୍କ ଉପରେ ଲଦି ଦେଉଥିବା ଅଣଶୈକ୍ଷିକ କାର୍ଯ୍ୟଯୋଗୁଁ ସମୟର ଅଭାବ ଓ ସର୍ବୋପରି ସବୁକିଛି ଥିଲେ ମଧ୍ୟ ସରକାରୀ କଳ ଦ୍ୱାରା ଦରମା ଆଧାରରେ ୪-୫ ପ୍ରକାର ଶିକ୍ଷକ ଗୋଷ୍ଠୀ ସୃଷ୍ଟି ହେବାରୁ ସେମାନଙ୍କ ମଧ୍ୟରେ ଶ୍ରଦ୍ଧା, ସହଯୋଗର ଅଭାବ। ତେଣୁ ୧୯୯୩ରେ ଭାରତ ସରକାରଙ୍କ ଦ୍ୱାରା ଗଠିତ ଯଶପାଲ୍ କମିଟିର ସୁପାରିଶ ସତ୍ତ୍ୱେ ନା ପ୍ରାଥମିକ ଶିକ୍ଷାସ୍ତରରେ ନାମଲେଖା ପରୀକ୍ଷା ବନ୍ଦ ହେଉଛି, ନା ପିଲାଙ୍କ ହୋମ୍‌ୱାର୍କ ବନ୍ଦ ହେଉଛି ନା ପିଲାମାନଙ୍କ ବହି ବା ବସ୍ତାନୀର ଓଜନ କମୁଛି। ପାଠ ଯେଉଁ ତିମିରେକୁ ସେହି ତିମିରେ।

ତା'ପରେ ଦୃଷ୍ଟି ଦେବା ପ୍ରାଥମିକ ଶିକ୍ଷାନୁଷ୍ଠାନଗୁଡ଼ିକରେ ପିଲାମାନଙ୍କ ପାଇଁ ଉପଲବ୍ଧ ଶୈକ୍ଷିକ ସୁବିଧାସୁଯୋଗ ଉପରେ। ବିଗତ ଦିନର ଭଙ୍ଗା ଚଉକିଟି ଉପରେ ଶିକ୍ଷକ ଓ ତଳେ ମାଟି ଚଟାଣ ଉପରେ ୧୦-୧୫ ଜଣ ପିଲା ବସିଥିବାର ଚିତ୍ର ଆଜି ମଧ୍ୟ ବହୁ ବିଦ୍ୟାଳୟରେ ଅକ୍ଷତ ରହିଛି। ଭାରତ ସରକାରଙ୍କର ୧୯୮୮ ମସିହାର ବହୁଚର୍ଚ୍ଚିତ 'କଳାପଟା ଅଭିଯାନ' ସରକାରଙ୍କର ଆନ୍ତରିକତା ଓ ଭାରତୀୟ ସମାଜରେ ସାଧୁତା ଓ ସଚ୍ଚୋଟତାର ଅଭାବରୁ ଚରମ ବିଫଳତାର ଶିକାର ହେଲା। ଫଳସ୍ୱରୂପ ୧୯୮୬ ଜାତୀୟ ଶିକ୍ଷା ନୀତିରେ ପ୍ରତି ବିଦ୍ୟାଳୟରେ ପ୍ରାପ୍ତ ହେବାକୁ ଘୋଷିତ ହୋଇଥିବା ସଂଶୋଧନଗୁଡ଼ିକ ପୁଣିଥରେ ୨୦ ବର୍ଷ ପରେ ୨୦୦୯ ଶିକ୍ଷା ଅଧିକାର ଆଇନରେ ପୁନର୍ଘୋଷିତ ହେଲା। ସେଗୁଡ଼ିକ ହେଲା - (୧) ସ୍କୁଲର କୋଠାଘର ଯେଉଁଥିରେ ପ୍ରତି ଶ୍ରେଣୀ ପାଇଁ ଓ ପ୍ରଧାନ ଶିକ୍ଷକଙ୍କ ଅଫିସ ପାଇଁ ସ୍ୱତନ୍ତ୍ର କୋଠରୀ ଥିବ, (୨) ବିଦ୍ୟାଳୟକୁ ବିଦ୍ୟୁତ ସଂଯୋଗୀକରଣ ହୋଇଥିବ, (୩) ପୁଅ ଓ ଝିଅଙ୍କ ପାଇଁ ଅଲଗା ଶୌଚାଳୟ ଥିବ, (୪) ଭିନ୍ନକ୍ଷମଙ୍କ ଯିବା ଆସିବା ପାଇଁ ଗଡ଼ାଣିଆ ରାସ୍ତା ବ୍ୟବସ୍ଥା ଥିବ, (୫) ଲାଇବ୍ରେରୀ ଓ ଛୋଟ ଧରଣର ଲାବୋରେଟୋରୀ ଥିବ, (୬) ବିଶୁଦ୍ଧ ପିଇବା ପାଣିର ବ୍ୟବସ୍ଥା ଥିବ, (୭) ଖେଳପଡ଼ିଆ ଥିବ, (୮) କମ୍ପ୍ୟୁଟର ଶିକ୍ଷାର ସୁବିଧା ଥିବ ଓ (୯) ବିଦ୍ୟାଳୟ ପରିସରର ପାଚେରୀ ଥିବ ଇତ୍ୟାଦି। କିନ୍ତୁ ଶିକ୍ଷା ଅଧିକାର ଆଇନ କାର୍ଯ୍ୟକାରୀ ହେବାର ୫ ବର୍ଷ ଶେଷ ହେବାକୁ ମାତ୍ର ବର୍ଷଟେ ବାକିଥିଲେ ମଧ୍ୟ ଶିକ୍ଷା ଅଧିକାର ଫୋରମ ଭଳି ଏକ ବେସରକାରୀ ସଂସ୍ଥାର ଅନୁସନ୍ଧାନ ଭିତ୍ତିକ ବିବରଣୀ ଯେତିକି ନୈରାଶ୍ୟଜନକ, ସେତିକି ଉଦ୍‌ବେଗଜନକ। ବିବରଣୀ ଅନୁସାରେ ଶତକଡ଼ା ୯୫ ଭାଗ ସରକାରୀ ବିଦ୍ୟାଳୟରେ ଉପରୋକ୍ତ ୯ଟି ସୁବିଧା ଉପଲବ୍ଧ ନୁହେଁ, ପ୍ରତି ୧୦ଟିରୁ ଗୋଟିକରେ ପିଇବା ପାଣିର ସୁବିଧା ନାହିଁ, ଶତକଡ଼ା ୪୦

ଭାଗ ବିଦ୍ୟାଳୟରେ ବ୍ୟବହାର ଉପଯୋଗୀ ଶୌଚଳାୟ ନାହିଁ, ୪୦ ପ୍ରତିଶତ ବିଦ୍ୟାଳୟରେ ପୁଅ ଝିଅଙ୍କ ପାଇଁ ଅଲଗା ଶୌଚଳୟର ବ୍ୟବସ୍ଥା ନାହିଁ, ଶତକଡ଼ା ୬୦ ପ୍ରତିଶତ ସ୍କୁଲରେ ବିଦ୍ୟୁତ୍ ସଂଯୋଗୀକରଣ ହୋଇ ନାହିଁ, ଦେଶରେ ପ୍ରାୟ ୬.୯ ଲକ୍ଷ ସ୍ୱୀକୃତି ପ୍ରାପ୍ତ ଶିକ୍ଷକ ପଦବୀ ଖାଲିପଡ଼ିଛି, ୬.୭ ଲକ୍ଷ ଶିକ୍ଷକ ଅଣତାଲିମପ୍ରାପ୍ତ, ୫୦ ପ୍ରତିଶତ ସ୍କୁଲରେ ଭିନ୍ନକ୍ଷମ ପିଲାଙ୍କ ଯିବାଆସିବା ପାଇଁ ସୁବିଧା ନାହିଁ, ଇତ୍ୟାଦି ଇତ୍ୟାଦି। ଏଭଳି ପରିସଂଖ୍ୟାନ ପାଇଁ ଅବଶ୍ୟ କୌଣସି ଅନୁସନ୍ଧାନ ଦରକାର ନାହିଁ। କେବଳ ନିଜ ବାସସ୍ଥାନର ନିକଟବର୍ତ୍ତୀ ସରକାରୀ ବିଦ୍ୟାଳୟକୁ ଅନେଇଲେ ଯଥେଷ୍ଟ। ଏଗୁଡ଼ିକ ବର୍ତ୍ତମାନ କେବଳ ମଧ୍ୟାହ୍ନଭୋଜନାଗ୍ରହୀ ବାପା-ମା'ଙ୍କ ପିଲାମାନଙ୍କର ଜୀବନ ଧାରଣର ଶେଷସମ୍ବଳ ଭାବରେ ତିଷ୍ଠି ରହିଛନ୍ତି; ପିଲାମାନଙ୍କର ଶୈକ୍ଷିକ ବା ବୌଦ୍ଧିକ ଉନ୍ନତି ପାଇଁ ନୁହେଁ। ଗତ ଶତାବ୍ଦୀର ୭୦ ଦଶକର ପ୍ରାରମ୍ଭରେ ମୁଁ ରାଜଧାନୀ ଭୁବନେଶ୍ୱରର ଆଚାର୍ଯ୍ୟ ବିହାରରେ ରହୁଥିଲି। ପ୍ରାୟ ସମକାଳରେ ଦୁଇଟି କୋଠା ତିଆରି ହେଲା ସରକାରୀ ଉଦ୍ୟୋଗରେ; ଗୋଟିଏ ୨-୩ ମହଲାର ବଜାର ଓ ଅନ୍ୟଟି ପ୍ରାଥମିକ ବିଦ୍ୟାଳୟ। ବଜାର କୋଠା ତୁଳନାରେ କି ଦୟନୀୟ ଦଶୁଥିଲା ସେ ବିଦ୍ୟାଳୟ ଘରଟି ସତେ। କିଛିଦିନ ଭିତରେ ବିଦ୍ୟାଳୟର ଝରକା-କବାଟ ସବୁ କୁଆଡ଼େ ଉଭାନ ହୋଇଗଲା କେହି ଜାଣନ୍ତି ନାହିଁ। ଏହା ଯେ 'Keep your doors and windows open'ର ସରଳ, ସହଜ ସମାଧାନ ଏକଥା କାହାରି ମନକୁ ଛୁଇଁ ନ ଥିବା। ତା' ସହିତ ମଧ୍ୟ ମନେ ପକାଇଲି ଏଚ୍.ଜି.ଓ୍ୱେଲସ୍‌ଙ୍କ କଥା, "Human history is becoming more and more a race between education and catastrophe"। ଆଜି ପର୍ଯ୍ୟନ୍ତ ଆମେ ଯଦି କାଟାଷ୍ଟ୍ରଫିରେ ନ ପହଞ୍ଚୁଛେ ବୋଲି ଭାବୁଛେ, ତେବେ ଏହା କେବଳ ମୁର୍ଖାମି ଛଡ଼ା ଆଉ କିଛି ନୁହେଁ।

ତା'ପରେ ଶିକ୍ଷକମାନଙ୍କ କଥା। ଏଇଠି ମନେ ପକାନ୍ତୁ ୧୯୮୬ ଜାତୀୟ ଶିକ୍ଷାନୀତି ସଂଲଗ୍ନ ଚିନ୍ତାଧାରାକୁ ଯାହା କହେ, Of all factors which determine the quality of education and its contribution to national development, the teacher is undoubtedly the most important....' କିନ୍ତୁ ଶିକ୍ଷା କ୍ଷେତ୍ରରେ ସବୁ ଓଲଟା। ପ୍ରାଥମିକ ଶିକ୍ଷାକ୍ଷେତ୍ରରେ ନିୟୋଜିତ ରେଗୁଲାର ଶିକ୍ଷକ, ଶିକ୍ଷା ସହାୟକ, ଠିକା ଶିକ୍ଷକ ଭଳି ଦରମା ଭିତ୍ତିରେ ଅନେକ ଗୋଷ୍ଠୀ। ରେଗୁଲାର ଶିକ୍ଷକମାନେ ମାସିକ ୨୦-୨୫ ହଜାର ଟଙ୍କା ଦରମା ପାଉଥିବା ସ୍ଥଳେ ଶିକ୍ଷା ସହାୟକ ଓ ଠିକା ଶିକ୍ଷକମାନଙ୍କ ଦରମା ଦେଢ଼ ହଜାରରୁ ତିନି ହଜାର ମଧ୍ୟରେ। ଏମାନଙ୍କ ଦରମା ସ୍କୁଲର ରେଗୁଲାର

ପିଅନମାନଙ୍କ ଠାରୁ ଯଥେଷ୍ଟ କମ୍। କେଉଁ ମାନସିକ ପୁଷ୍ଟି ନେଇ ଏମାନେ ଶିକ୍ଷାଦାନ ଭଳି ଗୁରୁଦାୟିତ୍ୱ ସମ୍ଭାଳିବେ। ସବୁପ୍ରକାର ଶିକ୍ଷକମାନଙ୍କ ମଧ୍ୟରେ ଶିକ୍ଷାଗତ ଯୋଗ୍ୟତା ମଧ୍ୟ ନିମ୍ନମାନର। ଓଡ଼ିଶା ସରକାରଙ୍କ ଉଚ୍ଚଶିକ୍ଷା ପରିଷଦରେ ସାଧାରଣ +୨ ଓ ଧନ୍ଦାମୂଳକ +୨ ମଧ୍ୟରେ ସମାନତା ଭଳି ଉଦ୍ଭଟ ନିୟମ ଆଧାରରେ ନିକୃଷ୍ଟ ମେଧାସମ୍ପନ୍ନ ପିଲାମାନେ ହିଁ ବହୁସଂଖ୍ୟାରେ ସି.ଟି. ଟ୍ରେନିଂ ବା ଡିପ୍ଲୋମା ଇନ୍ ଏଜୁକେସନ୍ ପଢ଼ି ପ୍ରାଥମିକ ବିଦ୍ୟାଳୟ ଶିକ୍ଷକ ହେଉଛନ୍ତି। ସେଥିରେ ବି ତାଲିମପ୍ରାପ୍ତ ଶିକ୍ଷକଙ୍କ ବହୁ ଅଭାବ। ଏମିତି ବି ୩୦-୪୦ ଜଣ ଛାତ୍ରଙ୍କୁ ଜଣେ ଶିକ୍ଷକ ନୀତି ଅନୁସାରେ ମଧ୍ୟ ଶିକ୍ଷକ ସଂଖ୍ୟା ବହୁତ କମ୍। ଗୋଟିଏ ଆକଳନ ଅନୁସାରେ ରାଜ୍ୟରେ ସରକାରୀ ସ୍କୁଲଗୁଡ଼ିକରେ ପ୍ରଥମରୁ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ମଞ୍ଜୁରୀପ୍ରାପ୍ତ ଶିକ୍ଷକ ପଦବୀ ସଂଖ୍ୟା ୯୨,୩୩୭ ମଧ୍ୟରୁ ୩୨,୬୬୦ ଖାଲି ପଡ଼ିଛି। ଏତଦ୍ ବ୍ୟତୀତ ନିୟମ ଧାର୍ଯ୍ୟ ଛାତ୍ର ଶିକ୍ଷକ ଅନୁପାତ ଅନୁଯାୟୀ ଅଧିକ ୧୫,୪୬୩ ଶିକ୍ଷକ ଆବଶ୍ୟକ ଅର୍ଥାତ୍ ଶିକ୍ଷକ ଅଭାବ ସଂଖ୍ୟା ୫୦,୦୦୦ ପାଖାପାଖି। ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ହେଲା ଯେ, ଷଷ୍ଠ ବେତନ କମିଶନ ଧାର୍ଯ୍ୟ ଦରମା ଅନୁସାରେ ପ୍ରାୟ ୧ ଲକ୍ଷ ୨୦ ହଜାର ରେଗୁଲାର ପ୍ରାଥମିକ ଶିକ୍ଷକଙ୍କ ଦରମା ବାବଦ ସରକାରଙ୍କୁ ବାର୍ଷିକ ପ୍ରାୟ ୩ ହଜାର ୬ ଶହ କୋଟି ଟଙ୍କା (୨୦୧୨-୧୩ ଆର୍ଥିକ ବଜେଟ୍‌ର ପ୍ରାୟ ଏକ ପଞ୍ଚମାଂଶ) ଖର୍ଚ୍ଚ କରିବାକୁ ହେବ ଯାହା ବର୍ତ୍ତମାନର ଆର୍ଥିକ ପରିସ୍ଥିତି ତଥା ଅମଲାତାନ୍ତ୍ରିକ ସଂକୀର୍ଣ୍ଣ ବିଧିବ୍ୟବସ୍ଥା ମଧ୍ୟରେ ଅସମ୍ଭବ ପ୍ରାୟ ଲାଗୁଛି। ଏହା ହୁଏତ ସମ୍ଭବ ହୁଅନ୍ତା ଓଡ଼ିଶାର ଶିକ୍ଷା ତଥା ପ୍ରଶାସନ କ୍ଷେତ୍ରରେ ସେକୋଭ ଓ ଗର୍କିଙ୍କ ଭଳି ବା ମହାମନା ମାଲବ୍ୟଙ୍କ ଭଳି ବା ପରିମଳ ଭଟ୍ଟାଚାର୍ଯ୍ୟଙ୍କ ଭଳି ଦରଦୀ ଲୋକଙ୍କ ଦିଗ୍‌ଦର୍ଶନ ବଳରେ। କିନ୍ତୁ କାହାନ୍ତି ସେଭଳି ଲୋକ ବା ସେ ଦିଗ୍‌ଦର୍ଶନ!

ପ୍ରାକ୍ ପ୍ରାଥମିକ ଶିକ୍ଷା ଅର୍ଥାତ୍ ୩ ରୁ ୬ ବର୍ଷ ପର୍ଯ୍ୟନ୍ତ ପିଲାଙ୍କ ଶିକ୍ଷାର ମଧ୍ୟ କୌଣସି ସୁଚିନ୍ତିତ ବ୍ୟବସ୍ଥା ନାହିଁ। ୧୯୩୦ ରୁ ୧୯୭୫ ଯାଏ ଯେଉଁ ଶିଶୁ ଶ୍ରେଣୀର ସୁନ୍ଦର ବ୍ୟବସ୍ଥା ଥିଲା, ତାକୁ ବନ୍ଦ କରି ଦିଆଗଲା। ଗତ ୩ ଦଶନ୍ଧି ଧରି ଅଙ୍ଗନବାଡ଼ି ବ୍ୟବସ୍ଥା ଆରମ୍ଭ ହୋଇଥିଲେ ମଧ୍ୟ ପ୍ରାଥମିକ ବିଦ୍ୟାଳୟଗୁଡ଼ିକ ଭୋଗୁଥିବା ଭିତ୍ତିଭୂମିର ଅଭାବଗୁଡ଼ିକ ମଧ୍ୟ ଅଙ୍ଗନବାଡ଼ିଗୁଡ଼ିକୁ ଆକ୍ରାନ୍ତ କରି ରଖିଛି। ନା ସେଠି ପିଲାମାନଙ୍କ ପାଇଁ ସଠିକ୍ ସମୟରେ ମିଳୁଛି ସଠିକ୍ ପୁଷ୍ଟିକର ଖାଦ୍ୟ ନା ବିଶୁଦ୍ଧ ପାଣି ନା ମନମତାଣିଆ ଚିତ୍ର ବା ଖେଳଣା। ଅଙ୍ଗନବାଡ଼ିର ଶିକ୍ଷକମାନଙ୍କ ଯୋଗ୍ୟତା ବା କର୍ତ୍ତବ୍ୟ ପ୍ରତିବଦ୍ଧତା କଥା ନ କହିଲେ ଭଲ। ମୋ ନିଜ ଅଭିଜ୍ଞତାରୁ କହୁଛି, ମୋର ସାନପୁଅ ଡବଲିନ୍‌ରେ

ପ୍ରି-କିଣ୍ଡରଗାର୍ଟନରେ ନାଁ ଲେଖାଇଲା ପରେ ମୁଁ ସେ ଶ୍ରେଣୀ ଶିକ୍ଷୟିତ୍ରୀଙ୍କୁ (ସେ ମଧ୍ୟ ପ୍ରଧାନ ଶିକ୍ଷୟତ୍ରୀ) ପଚାରିଲି ଯେ ମୁଁ ଘରେ କ'ଣ କ'ଣ ପଢ଼ାଇବି। ସେ ଚମକି ପଡ଼ି ମତେ ଧିକ୍କାର କଲାଭଳି କହିଲେ, 'ତମେ ଘରେ ପଢ଼ାଇବ ତ ଆମେ ଏଠି କାହିଁକି ଅଛୁ ?' ସେମାନଙ୍କ ଶିକ୍ଷାବ୍ୟବସ୍ଥା ଓ ଆମ ବ୍ୟବସ୍ଥା ମଧ୍ୟରେ ଥିବା ଅଭେଦ୍ୟ ପ୍ରଭେଦକୁ ବୁଝିବା ପାଇଁ ସେତିକି କଥା ଥିଲା ଯଥେଷ୍ଟ।

ସର୍ବଶେଷରେ ଆସନ୍ତୁ ପରୀକ୍ଷା କଥାକୁ। ଭାରତ ସରକାର ସମସ୍ତ ବିଦ୍ୟାଳୟ ପରୀକ୍ଷାଗୁଡ଼ିକୁ ସମ୍ପୂର୍ଣ୍ଣ ଉଚ୍ଛେଦ ବା ଅତିକମ୍‌ରେ ଇଚ୍ଛାଧୀନ କରିବାକୁ ଆଗ୍ରହୀ। ଯୁକ୍ତି ହେଲା ଯେ ପରୀକ୍ଷା ପିଲାଙ୍କ ଉପରେ ମାନସିକ ଚାପ ସୃଷ୍ଟି କରୁଛି। କିନ୍ତୁ ପ୍ରକୃତ କଥା ହେଲା ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଜୀବନର ଅନ୍ୟନାମ ଚାପ। କେତେବେଳେ ନିଜ ଖେଳଣାକୁ ଜଗି ରଖିବା, ନିଜ ଭାଗକ ଖାଇବା ସବୁ ଚାପ ତ ଆଉ କେତେବେଳେ ବିଭିନ୍ନ ପ୍ରକାର ପରୀକ୍ଷାରେ ଭାଇ-ଭଉଣୀ ଭାବରେ, ପୁଅଝିଅ ଭାବରେ, ବାପା-ମା' ଭାବରେ, ଚାକିରୀ ହାତେଇବାରେ ଉତ୍ତୀର୍ଣ୍ଣ ହେବାର ଚାପ। ଏମିତି ଦେଖିବାକୁ ଗଲେ ଚାପକୁ ସାମ୍ନା କରିବାର କୌଶଳ ହିଁ ଜୀବନ। ତେଣୁ ଭାରତ ସରକାରଙ୍କ ଇଚ୍ଛା ସତ୍ତ୍ୱେ ସବୁ ଶ୍ରେଣୀର ସବୁ ପିଲା ପରୀକ୍ଷା ଦେଇ ନିଜ ଦକ୍ଷତା ମାପିବାକୁ ଆଗ୍ରହୀ। ସରକାରଙ୍କ ପକ୍ଷରେ ସଠିକ୍ ବାଟ ହୁଅନ୍ତା ଏପରି ଏକ ବିଦ୍ୟାଳୟ ଶିକ୍ଷାଦାନ ବ୍ୟବସ୍ଥା ପ୍ରତିଷ୍ଠା କରନ୍ତେ, ଯେଉଁଥିରେ ପରୀକ୍ଷା ହେଲେ ମଧ୍ୟ ବୋଝ ଭଳି ହୁଅନ୍ତା ନାହିଁ, ଅଙ୍କ ସାହିତ୍ୟରେ ରୁଚି ନ ଥିବା ପିଲା ଖେଳକୁଦ, ଚିତ୍ରକଳା ଓ ସଙ୍ଗୀତ-ନୃତ୍ୟରେ ପାରଦର୍ଶିତା ମାଧ୍ୟମରେ ନିଜ ଜୀବନକୁ ଉପଭୋଗ କରିପାରନ୍ତା। ବିଦ୍ୟାଳୟ ପରିବେଶରେ ପିଲାମାନେ ନିଜ ନିଜର ପ୍ରବୃତ୍ତି ଓ ମେଧାନୁଯାୟୀ ବିକାଶଲାଭ କରିପାରନ୍ତେ। ଗୋଟିଏ ଛୋଟ ଉଦାହରଣ ନିଆଯାଉ। ୧୫-୨୦ ବର୍ଷ ତଳେ ବିଦ୍ୟାଳୟର ବାର୍ଷିକ ପରୀକ୍ଷା ଏପ୍ରିଲ୍ ଦ୍ୱିତୀୟ ସପ୍ତାହ ସୁଦ୍ଧା ଶେଷ ହେଉଥିଲା। ଏପ୍ରିଲ୍ ମାସ ଶେଷଆଡ଼କୁ ଫଳ ବାହାରି ମେ-ଜୁନ୍ ଖରାମାସ ପାଇଁ ସ୍କୁଲ ଛୁଟି ହେଉଥିଲା। ସେ ଦୁଇ ମାସ ପିଲା ଖୋଲାମନରେ ଘରେ, ଗାଁ ତୋଟାରେ ବା ବନ୍ଧୁଘରେ ବୁଲିବାଲି ମୌସୁମୀ ଆସିବାପରେ ଥଣ୍ଡା ପରିବେଶରେ ଜୁଲାଇ ମାସରେ ସ୍କୁଲରେ ତା'ର ନୂଆଶ୍ରେଣୀରେ ନୂଆ ଉତ୍ସାହ ଉଦ୍ଦୀପନାରେ ଯୋଗ ଦେଉଥିଲା। ବର୍ତ୍ତମାନ କିନ୍ତୁ ଫେବୃୟାରୀ-ମାର୍ଚ୍ଚରେ ପରୀକ୍ଷା କରି ଏପ୍ରିଲ୍‌ରେ ନୂଆ ଶ୍ରେଣୀର ପାଠ ଆରମ୍ଭ ହେଉଛି। ମାସେ ପଢ଼ା ହୋଇଛି କି ନାହିଁ ଦେଢ଼ମାସ-ଦୁଇମାସ ପାଇଁ ଖରାଛୁଟି ହେଉଛି। ଏହା ଏକ ନୀତିବିହୀନ ଉଦ୍ଭଟ ବ୍ୟବସ୍ଥା। ଗୋଟେ ମାସର ପାଠପଢ଼ା ମୋଟାମୋଟି ନଷ୍ଟ

ହେଉଛି। ପିଲାମାନଙ୍କ ଖରାଛୁଟି ମଧ୍ୟ ଦୁଇ ପାଠପଢ଼ା ଋତୁ ଭିତରେ ଚିପିହୋଇ ହଜିଯାଉଛି। ଶୁଣାଯାଏ ଯେ ଦିଲ୍ଲୀ ଭଳି ମେଟ୍ରୋ ସହରମାନଙ୍କରେ ଉଚ୍ଚଦରମା ପଡୁଥିବା ବେସରକାରୀ ବିଦ୍ୟାଳୟଗୁଡ଼ିକରେ ଅଭିଭାବକମାନେ ମେ-ଜୁନ୍ ଛୁଟି ମାସରେ ପିଲାଙ୍କ ଦରମା ଦେବାକୁ ଅନିଚ୍ଛା ପ୍ରକାଶ କରିବାରୁ ଫେବୃୟାରୀ-ମାର୍ଚ୍ଚରେ ନୂଆ ଶ୍ରେଣୀ ଆରମ୍ଭ ହେବାର କାରସାଦି ଆରମ୍ଭ ହୋଇଛି। ଟ୍ୟୁସନ ଜାଲରେ ପିଲାମାନଙ୍କୁ ଫସେଇବାର ଏହା ଏକ ଫନ୍ଦୀ। ଧିରେ ଧିରେ ଏନ୍.ସି.ଇ.ଆର.ଟି. ଏହି ପଦ୍ଧତି ଗ୍ରହଣ କରିବାରୁ ଦେଶସାରା ରାଜ୍ୟ ସରକାରଗୁଡ଼ିକ ମଧ୍ୟ ମେଣ୍ଢାଙ୍କଭଳି ଏହାକୁ ଗ୍ରହଣ କରି ନେଇଛନ୍ତି।

ଏହିଭଳି ଭାବରେ ଆମ ଦେଶ ତଥା ରାଜ୍ୟରେ ପ୍ରାଥମିକ ଶିକ୍ଷା ବହୁଧା ବିକାରଗ୍ରସ୍ତ ହୋଇପଡ଼ିଛି। ତେଣୁ ଆଶ୍ଚର୍ଯ୍ୟ ହେବାରେ କିଛି ନାହିଁ ଯେ ଆଜିବି ସ୍ୱାଧୀନତାର ୬୦ ବର୍ଷ ପରେ ପ୍ରତି ତିନି ଜଣରୁ ଜଣେ ଭାରତୀୟ ନିରକ୍ଷର। ଆଜ୍ଞା, ସମ୍ପୂର୍ଣ୍ଣ ନିରକ୍ଷର! ଭାରତୀୟ ସମାଜରେ ଦୃଷ୍ଟିଗୋଚର ହେଉଥିବା ସମସ୍ତ ବିଳକ୍ଷଣତାର ଏହାହିଁ ମୂଳ କାରଣ। ଆଜିବି ଯେପରି କୋମଳମତି ଶିଶୁଗଣ ଚିତ୍କାର କରି କହିଉଲିଛନ୍ତି, 'ହେ ପୃଥିବୀ ଶ୍ରେଣୀୟ ମହାମାନ୍ୟ ପଣ୍ଡିତ ଶିକ୍ଷାବିତ୍ ଗଣ, ଆମକୁ ଆମ ପୁରୁଣା ବିଦ୍ୟାଳୟ ଫେରାଇ ଦିଅ। ଆଉ ତା' ସହିତ ଆମ ପିଲାଦିନର ବିଭିନ୍ନ ପରୀକ୍ଷାରେ ସଫଳ ହେବାର ଆନନ୍ଦଗୁଡ଼ିକ ମଧ୍ୟ। ଆମକୁ 'ମାଗଣା ମୃତ୍ୟୁ'ରୁ ମୁକ୍ତ ଦିଅ।'

ସେମାନଙ୍କ କଥା ଶୁଣିବାକୁ ଆମ ଭିତରେ କେହି ଅଛନ୍ତି ?

□□□

# ସରକାରୀ ଅବ୍ୟବସ୍ଥାର ଗଣ୍ଠିରେ ବନ୍ଦୀ ଉଚ୍ଚଶିକ୍ଷା

ବହୁଦିନ ପରେ ଉଚ୍ଚଶିକ୍ଷା କ୍ଷେତ୍ରକୁ ସରକାରଙ୍କ ତରଫରୁ ଗୋଟିଏ ଭଲ ଖବର ଆସିଛି। ଖବରଟି ହେଲା ଯେ ସରକାରୀ ଡିଗ୍ରୀ କଲେଜମାନଙ୍କରେ ସରକାର ୟୁଜିସି ବେତନହାର ପୁନଃ ପ୍ରଚଳନ କରିବା ପାଇଁ ନିଷ୍ପତ୍ତି ନେଇଛନ୍ତି। କିନ୍ତୁ ଏହି ସ୍ୱାଗତଯୋଗ୍ୟ ଖବର ପଛରେ ଓଡ଼ିଶା ସରକାରଙ୍କ ଅବ୍ୟବସ୍ଥିତ ଚିତ୍ତର କାହାଣୀଟିଏ ଲୁଚି ରହିଛି। ଲକ୍ଷ୍ୟ ହାସଲ ଦିଗରେ ଅବ୍ୟବସ୍ଥିତ ଚିତ୍ତ ବିଭିନ୍ନ ବାଧାବିଘ୍ନ ସୃଷ୍ଟି କରିବ ବୋଲି ଆଶଙ୍କା କରିବା ସ୍ୱାଭାବିକ ହେଲେ ମଧ୍ୟ ପ୍ରଥମେ କାହାଣୀଟି। କାହାଣୀଟି ୟୁଜିସି ଦରମାହାର ସହ ଓଡ଼ିଶା ସରକାରଙ୍କ ସମ୍ପର୍କକୁ ନେଇ। ସମସ୍ତେ ଜାଣିଛନ୍ତି ଯେ ୧୯୭୩ ମସିହାରେ ତତ୍କାଳୀନ କେନ୍ଦ୍ର ଶିକ୍ଷାମନ୍ତ୍ରୀ ପ୍ରଫେସର ନୁରୁଲ୍‌ ହାସାନ ପାର୍ଲାମେଣ୍ଟରେ ଦେଶର କଲେଜ ଓ ବିଶ୍ୱବିଦ୍ୟାଳୟ ଶିକ୍ଷକଙ୍କ ପାଇଁ ଭାରତ ସରକାରଙ୍କ ପ୍ରଥମ ଶ୍ରେଣୀ କର୍ମଚାରୀଙ୍କ ଦରମା ସହ ସମାନ ଥିବା ଏକ ବେତନହାର ଗୃହୀତ କରାଇଥିଲେ। ଏହାକୁ ୟୁଜିସି ବେତନହାର ବୋଲି କୁହାଯାଏ। ଏହାର ମୂଳ ଉଦ୍ଦେଶ୍ୟ ଥିଲା ଦେଶର ମେଧାବୀ ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷକତା ପ୍ରତି ଆକୃଷ୍ଟ କରାଇବା। ଓଡ଼ିଶା ସରକାର ୧୯୭୪ ମସିହାଠାରୁ ଏହି ବେତନ ହାରକୁ ବିଶ୍ୱବିଦ୍ୟାଳୟ, ସରକାରୀ ଓ ବେସରକାରୀ କଲେଜ ଶିକ୍ଷକଙ୍କ ପାଇଁ ଲାଗୁ କଲେ। କିନ୍ତୁ ୧୯୮୬ ମସିହାର ନୂଆ ୟୁଜିସି ବେତନ ଲାଗୁ କରିବା ବେଳକୁ ଓଡ଼ିଶା ସରକାର ସମ୍ବଳର ଅଭାବ ଦର୍ଶାଇ ପଛଘୁଞ୍ଚା ଦେଲେ। ବିଶ୍ୱବିଦ୍ୟାଳୟ ଶିକ୍ଷକ ଓ କଲେଜଗୁଡ଼ିକରେ ଆଗରୁ ୟୁଜିସି ବେତନ ପାଉଥିବା ଶିକ୍ଷକମାନଙ୍କ ପାଇଁ ୟୁଜିସି ବେତନ ଲାଗୁ ରହିଲା କିନ୍ତୁ ନୂଆ ସରକାରୀ କଲେଜ ଚାକିରିଆଙ୍କ ପାଇଁ ୟୁଜିସି ବେତନ ବନ୍ଦ ହୋଇଗଲା। ଏହିପରି ଓଡ଼ିଶାର କଲେଜ ଶିକ୍ଷକମାନେ ଜାତୀୟ ମୁଖ୍ୟ ସ୍ରୋତରୁ ବିଚ୍ଛିନ୍ନ ହୋଇଗଲେ। ଓଡ଼ିଶା ସରକାରଙ୍କ ଏହି ନିଷ୍ପତ୍ତି ଫଳରେ ସରକାରୀ ଡିଗ୍ରୀ କଲେଜରେ ୟୁଜିସି ବେତନଭୋଗୀ ଶିକ୍ଷକ ବର୍ତ୍ତମାନ ପ୍ରାୟ କେହି ନାହାନ୍ତି କହିଲେ ଚଳେ। ପୁଣିଥରେ

---

★ ଦୈନିକ "ସମ୍ବାଦ"; ୧୩ ସେପ୍ଟେମ୍ବର ୨୦୧୨

ୟୁଜିସି ଦରମା ହାର ପ୍ରବର୍ତ୍ତନ କରିବାର ନିଷ୍ପତ୍ତି ନେଲା ବେଳକୁ ଦୀର୍ଘ ପ୍ରାୟ ୫୦ ବର୍ଷ ବିତିଗଲାଣି।

ଏହି ୫୦ ବର୍ଷ ମଧ୍ୟରେ ଉଚ୍ଚଶିକ୍ଷା କ୍ଷେତ୍ରରେ ବହୁ ପରିବର୍ତ୍ତନ ଘଟିଛି। ସେଥିମଧ୍ୟରୁ ଗୋଟିଏ ପ୍ରମୁଖ ଘଟଣା ହେଲା ପ୍ରମାଦପୂର୍ଣ୍ଣ ସଚିବ-ସ୍ତରୀୟ ସମୀକ୍ଷା ମାଧ୍ୟମରେ ଓଡ଼ିଶାର ସରକାରୀ କଲେଜଗୁଡ଼ିକର ଶିକ୍ଷକ ପଦ ଉଚ୍ଛେଦ କାର୍ଯ୍ୟକ୍ରମ। ତଥାକଥିତ ସମୀକ୍ଷା ମାଧ୍ୟମରେ ଶିକ୍ଷକ ସଂଖ୍ୟାକୁ ଅଧାଅଧି ହ୍ରାସ ପରେ ମଧ୍ୟ ସବୁ ସରକାରୀ କଲେଜରେ ଶିକ୍ଷକ ଅଭାବ ଏକ ସାଂଘାତିକ ଅବସ୍ଥାରେ ପହଞ୍ଚିଛି। ଆଜିର ଦିନରେ ଏ ଲେଖାଟି ଲେଖା ହେଲା ବେଳକୁ ରାଜଧାନୀ ଭୁବନେଶ୍ୱରର ବିଜେବି ଭଳି ପ୍ରମୁଖ କଲେଜରେ ପଦାର୍ଥ ବିଜ୍ଞାନ ବିଭାଗରେ ଜଣେ ହେଲେ ଶିକ୍ଷକ ନାହାନ୍ତି; ରସାୟନ ବିଜ୍ଞାନ ବିଭାଗର ଜଣେ ଶିକ୍ଷକ ପଦାର୍ଥ ବିଜ୍ଞାନ ବିଭାଗର ମୁଖ୍ୟ ଦାୟିତ୍ୱ ତୁଲାଉଛନ୍ତି। ବିଶ୍ୱାସ ହେଉନଥିଲେ ମଧ୍ୟ ଏହା ହିଁ ସତ୍ୟ। ଆଉ ଏହିଭଳି ଅବସ୍ଥା ଓଡ଼ିଶାର ବହୁ କଲେଜଗୁଡ଼ିକରେ। ବିଶ୍ୱବିଦ୍ୟାଳୟଗୁଡ଼ିକ ମଧ୍ୟ ଏହି ଷଡଯନ୍ତ୍ରରୁ ମୁକ୍ତ ନୁହଁନ୍ତି। ଉତ୍କଳ, ବ୍ରହ୍ମପୁର ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟଗୁଡ଼ିକରୁ ଶତାଧିକ ପଦ ଉଚ୍ଛେଦ କରି ଫକୀରମୋହନ, ଉତ୍ତର ଓଡ଼ିଶା ଓ ରେଭେନ୍ସା ଭଳି ନୂଆ ବିଶ୍ୱବିଦ୍ୟାଳୟଗୁଡ଼ିକୁ ଦିଆଯାଇଛି। କେବଳ ସେତିକି ନୁହେଁ; ଉଚ୍ଛେଦ ପରେ ମଧ୍ୟ ମଞ୍ଜୁରୀପ୍ରାପ୍ତ ପଦ ମଧ୍ୟରୁ ଅର୍ଦ୍ଧାଧିକ ପଦ ଖାଲି ପଡ଼ିଛି ବର୍ଷ ବର୍ଷ ଧରି ବିଭିନ୍ନ ପ୍ରଶାସନିକ ତଥା ନୀତି ନିୟମ ଜଟିଳତା କାରଣରୁ। ଏହି ପ୍ରକାର ତ୍ରୁଟି ବିଚ୍ୟୁତିର କଷାଘାତରେ ଓଡ଼ିଶାରେ ଉଚ୍ଚଶିକ୍ଷା ମୁମୂର୍ଷୁ ଅବସ୍ଥାକୁ ଆସିଛି।

ଏସବୁ ଅବତାରଣା କରିବାର ବିନମ୍ର ଉଦ୍ଦେଶ୍ୟ ହେଲା ବେତନ ଉଚ୍ଛେଦ, ପଦ ଉଚ୍ଛେଦ ଇତ୍ୟାଦି ଭଳି ଅବ୍ୟବସ୍ଥିତ ବ୍ୟବସ୍ଥା ଉପରେ ଶିକ୍ଷାର ତଥା ସରକାରୀ ଶିକ୍ଷାନୁଷ୍ଠାନଗୁଡ଼ିକର ଅଧୋଗତି ବିଷୟରେ ସୂଚନା ଦେବା। ଏଭଳି "ଘଡ଼ି-ଘଡ଼ିକେ ଆନ" ବିଧିବ୍ୟବସ୍ଥା ଭିତରେ ଶିକ୍ଷାର ଭବିଷ୍ୟତ ଯେ ଉଜ୍ଜ୍ୱଳ ତାହା କୁହାଯାଇନପାରେ। ତେଣୁ ଶିକ୍ଷା ଓ ଶିକ୍ଷାନୁଷ୍ଠାନଗୁଡ଼ିକୁ ୨୦-୩୦ ବର୍ଷର ପୂର୍ବ ସ୍ଥିତିରେ ଫେରି ପାଇବା ହିଁ ବର୍ତ୍ତମାନ ବଡ଼ ପ୍ରଶ୍ନ ହୋଇ ଠିଆ ହୋଇଛି; ଉନ୍ନତି କଥା ପଛେ ଥାଉ। "ଗୋଦରା କୋଡ଼େ ଯେତେ ମାଡ଼େ ସେତେ" ଭଳି କଥା ଇଏ।

ଆଉ ରହିଲା ଓଡ଼ିଶା ସରକାର ପରିଚାଳିତ ଉଚ୍ଚ ଶିକ୍ଷାନୁଷ୍ଠାନ ଯଥା କଲେଜ ଓ ବିଶ୍ୱବିଦ୍ୟାଳୟଗୁଡ଼ିକରେ ମେଧାବୀ ଛାତ୍ରମାନଙ୍କର ଯୋଗଦାନର କଥା; "ଫ୍ୟାଟ୍ ୟୁଜିସି ଦରମା"ର ଥୋପ ପକେଇ ମେଧାବୀ ଛାତ୍ରମାନଙ୍କୁ ଆକର୍ଷିତ କରିବାର

କଥା। ସରଳ ଭାବରେ କହିଲେ ସେପରି କିଛି ଘଟିବାର ସମ୍ଭାବନା ନାହିଁ। କାରଣ ତ ଅନେକ। କିନ୍ତୁ ପ୍ରଥମ କାରଣ ହେଲା କେନ୍ଦ୍ର ସରକାର ପରିଚାଳିତ ଶିକ୍ଷାନୁଷ୍ଠାନଗୁଡ଼ିକରେ ପ୍ରବର୍ତ୍ତିତ ୟୁଜିସି ଦରମା ଓ ଓଡ଼ିଶା ସରକାରଙ୍କ ୟୁଜିସି ଦରମା ସର୍ତ୍ତାବଳୀ ମଧ୍ୟରେ ପାର୍ଥକ୍ୟ। ଏହି ସବୁ ପାର୍ଥକ୍ୟ ଚାକିରି କାଳୀନ ସୁବିଧା ସୁଯୋଗ, ଅବସର ଗ୍ରହଣ ସମୟ ଓ ଅବସରକାଳୀନ ସୁବିଧା ସୁଯୋଗକୁ ନେଇ। ତା'ଛଡ଼ା କେନ୍ଦ୍ରୀୟ ଶିକ୍ଷାନୁଷ୍ଠାନଗୁଡ଼ିକର ପରିଚାଳନାଗତ ବ୍ୟବସ୍ଥା ତୁଳନାରେ ରାଜ୍ୟ ଶିକ୍ଷାନୁଷ୍ଠାନଗୁଡ଼ିକର ପରିଚାଳନା ଦକ୍ଷତା ଓ ବ୍ୟବସ୍ଥା ଅତ୍ୟନ୍ତ ନିକୃଷ୍ଟ ଧରଣର। ତେଣୁ ବର୍ତ୍ତମାନ ପରିସ୍ଥିତିରେ କୌଣସି ସରକାରୀ କଲେଜରେ ଶିକ୍ଷକଙ୍କ ପାଇଁ ଗବେଷଣା କଥା ଚିନ୍ତା କରିବା ମଧ୍ୟ ଅସମ୍ଭବ ହୋଇପଡ଼ିଛି ଯାହା ଅନ୍ତତଃ ଅତୀତରେ ବେଶି ହେଉ କି କମ୍ ହେଉ ସମ୍ଭବ ହୋଇପାରୁଥିଲା। ଆଉ ନିଜ ନିଜ କ୍ଷେତ୍ରରେ କିଛି କିଛି ଗବେଷଣା ମାଧ୍ୟମରେ ନିଜର ଜ୍ଞାନର ପରିସରକୁ ବ୍ୟାପକ କରିବା ହିଁ ମେଧାବୀ ଛାତ୍ରମାନଙ୍କର ପ୍ରଥମ ଓ ପ୍ରଧାନ ଲକ୍ଷ୍ୟ ଓ ଲକ୍ଷଣ। ସୌଭାଗ୍ୟବଶତଃ କେନ୍ଦ୍ର ସରକାର ବହୁ ବର୍ଷର ଶିଥିଳତା ପରେ ଗତ କିଛି ବର୍ଷ ଧରି ଶିକ୍ଷା କ୍ଷେତ୍ରରେ ବହୁ ସ୍ୱାଗତଯୋଗ୍ୟ ପଦକ୍ଷେପମାନ ନେଇଛନ୍ତି। ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଶିକ୍ଷା ଓ ଗବେଷଣା ସଂସ୍କୃତିକୁ ସୁଦୃଢ଼ କରିବା ପାଇଁ ବିପୁଳ ଅନୁଦାନ ସହ ଅନେକଗୁଡ଼ିଏ ଆଇସର (ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଫର୍ ସାଇନ୍ସ ଏଜୁକେସନ୍ ଆଣ୍ଡ୍ ରିସର୍ଚ୍ଚ), ନାଇସର (ନେସ୍‌ନାଲ୍ ଇନ୍‌ଷ୍ଟିଚ୍ୟୁଟ୍ ଫର୍ ସାଇନ୍‌ସ ଏଜୁକେସନ୍ ଆଣ୍ଡ୍ ରିସର୍ଚ୍ଚ), ଆଇଆଇଟି (ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍ନୋଲୋଜି), ଏମ୍‌ସ (ଅଲ୍ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ୍ ସାଇନ୍ସ) ଓ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ଇତ୍ୟାଦି ସୃଷ୍ଟି କରିଛନ୍ତି। ନିକଟ ଭବିଷ୍ୟତରେ ଆହୁରି ୨୦ଟି ଆଇ.ଆଇ.ଟି. ଓ ୧୪ଟି ୟୁନିଭରସିଟି ଅଫ୍ ଇନୋଭେସନ୍ ଖୋଲା ଯିବାର ଯୋଜନା ଅଛି। ତେଣୁ ଏହି ଅନୁଷ୍ଠାନଗୁଡ଼ିକ ମେଧାବୀ ଛାତ୍ରମାନଙ୍କର ନିଯୁକ୍ତିର ପ୍ରଥମ ପସନ୍ଦ ଭାବରେ ଯେ ରହିବେ କହିବା ବାହୁଲ୍ୟ। ଏପରିକି ଓଡ଼ିଶାର ବିଶ୍ୱବିଦ୍ୟାଳୟଗୁଡ଼ିକ ମଧ୍ୟ ଚର୍ଚ୍ଚିତ କାରଣଗୁଡ଼ିକ ଦୃଷ୍ଟିରୁ ଏହି ଦୌଡ଼ରେ ଶେଷ ପସନ୍ଦ ଭାବରେ ରହିବା ଅବଧାରିତ।

ଆମ ଦୃଷ୍ଟିକୁ ଆନ୍ତର୍ଜାତିକ ସ୍ତରକୁ ସଂପ୍ରସାରିତ କଲେ ପରିଷ୍କାର ଭାବରେ ଜଣାପଡ଼ିବ ଯେ କେନ୍ଦ୍ର ସରକାରୀ ଅନୁଷ୍ଠାନଗୁଡ଼ିକ ତୁଳନାରେ ଓଡ଼ିଶା ସରକାରୀ ଅନୁଷ୍ଠାନଗୁଡ଼ିକର ଅବସ୍ଥା ଯାହା ଉନ୍ନତ ଦେଶମାନଙ୍କର ଶିକ୍ଷା ବ୍ୟବସ୍ଥା ଓ ଶିକ୍ଷାନୁଷ୍ଠାନଗୁଡ଼ିକ ତୁଳନାରେ ଭାରତୀୟ କେନ୍ଦ୍ରୀୟ ଅନୁଷ୍ଠାନ ଓ ଶିକ୍ଷା ବ୍ୟବସ୍ଥାର

ଅବସ୍ଥା ଠିକ୍ ଅନୁରୂପ। ସେହି କାରଣରୁ କେନ୍ଦ୍ରୀୟ ସ୍ତରରେ ବହୁ ସୁବିଧା ସୁଯୋଗ ଓ ପ୍ରୋତ୍ସାହନର ବ୍ୟବସ୍ଥା ସତ୍ତ୍ୱେ ବହୁସଂଖ୍ୟକ ମେଧାବୀ ଯୁବ ବର୍ଗର ଦେଶାନ୍ତର ଗମନକୁ ପ୍ରତିହତ କରାଯାଇ ପାରୁନାହିଁ। ଏକଥା ମଧ୍ୟ ଦେଖାଯାଉଛି ନିଜ ଦେଶରେ ବହୁ ଅବାନ୍ତର ପ୍ରଶାସନିକ ଓ ଅମଲାତାନ୍ତ୍ରିକ କଟକଣା ମଧ୍ୟରେ ନିଜ ନିଜ ପ୍ରତିଭାର ବିକାଶ ତଥା ବୃତ୍ତିଗତ ଉତ୍କର୍ଷ ସାଧନରେ ବିଫଳ ହୋଇ ଆମ ଦେଶର ଅନେକ ମେଧାବୀ ଛାତ୍ର ଉନ୍ନତ ଦେଶମାନଙ୍କୁ ଯାଇ ବୌଦ୍ଧିକ ସାମର୍ଥ୍ୟ ବଳରେ ଖ୍ୟାତିସମ୍ପନ୍ନ ହେବା ସହ ଜୀବନର ସାର୍ଥକତା ଲାଭ କରିବାରେ ସଫଳ ହେଉଛନ୍ତି। ଏପରିକି ସ୍ଥଳ ବିଶେଷରେ ନୋବେଲ ପୁରସ୍କାର ଲାଭ କରିବାରେ ମଧ୍ୟ ସକ୍ଷମ ହେଉଛନ୍ତି। ଦେଶ ସମ୍ମୁଖୀନ ହେଉଥିବା ଏଭଳି ଏକ ଚିନ୍ତାଜନକ ପରିସ୍ଥିତିରୁ ମୁକୁଳିବା ଉଦ୍ଦେଶ୍ୟରେ ହୁଏତ କେନ୍ଦ୍ର ଶିକ୍ଷାମନ୍ତ୍ରୀ କପିଲ ଶିବଲ ଦାୟିତ୍ୱ ଗ୍ରହଣର ଅଳ୍ପଦିନ ମଧ୍ୟରେ ଷଷ୍ଠ ଆନ୍ତର୍ଜାତିକ ଶିକ୍ଷା ସମ୍ମିଳନୀର ଆୟୋଜନ କରିଥିଲେ। ଏଥିରେ ଆମେରିକାର ୟେଲ ସ୍କୁଲ ଅଫ୍ ମ୍ୟାନେଜମେଣ୍ଟର ପ୍ରଫେସର ଶ୍ୟାମ ସୁନ୍ଦର ଭାରତରେ ଶିକ୍ଷକ-ଛାତ୍ର ଅନୁପାତ ପୃଥିବୀର ବହୁ ଦେଶ ତୁଳନାରେ ସର୍ବନିମ୍ନ ବୋଲି କ୍ଷୋଭ ପ୍ରକାଶ କରିବା ସହ କହିଥିଲେ ଯେ, "The central government should take teachers out of pay-commission dependent salary mode and work at making teaching a more attractive option"। କେବଳ ଶ୍ୟାମସୁନ୍ଦର ନୁହନ୍ତି ରାଧାକୃଷ୍ଣନ କମିସନ, କୋଠାରୀ କମିସନ ତଥା ବହୁ ବିଦ୍ୱାନଙ୍କ ମତ ମଧ୍ୟ ଅନୁରୂପ। କିନ୍ତୁ ମନ୍ତ୍ରୀ ସଚିବଙ୍କ ଖାମଖିଆଲି ପରିଚାଳନା, ସଂଘୀୟ ବ୍ୟବସ୍ଥା ଓ ସମ୍ବିଧାନର ମିଳିତ ତାଲିକାରେ ସ୍ଥାନିତ ହେବାର କଦର୍ଥ ଓ ଦୁରୂପଯୋଗ ମାଧ୍ୟମରେ ବହୁ ସୁବିଧା ସୁଯୋଗ ରହିତ ଓ ବହୁ ଦିଗରୁ ପକ୍ଷଚ୍ଛେଦନର ଶିକାର ହୋଇଥିବା ୟୁଜିସି ବେତନହାରକୁ ଏକ ଅପୂର୍ବ ବେତନହାର ଭାବରେ ଚିତ୍ରଣ କରାଯାଉଛି। "ଆଜି ଅଛି-କାଲି କି ନାହିଁ" ଭଳି ନିଷ୍ପତ୍ତିଗୁଡ଼ିକ ଉପରେ ବିଶ୍ୱାସ ରଖି କେଉଁ ବୁଦ୍ଧିମାନ ପିଲା କାହିଁକି ନିଜ ବୃତ୍ତିଗତ ଭବିଷ୍ୟତକୁ ଅନିଶ୍ଚିତତା ମଧ୍ୟକୁ ଠେଲି ଦେବ ?

କହିବା ବାହୁଲ୍ୟ ଯେ ଶିକ୍ଷା ବ୍ୟବସ୍ଥାର ସଶକ୍ତୀକରଣ ଏକ ଧୀର ଧାରାବାହିକ ପ୍ରକ୍ରିୟା। ଗୋଟିଏ ଶିକ୍ଷାପ୍ରେମୀ ସମାଜର ଯୁଗ ଯୁଗ ଧରି ନିରନ୍ତର ପ୍ରତିବଦ୍ଧତାପୂର୍ଣ୍ଣ-ପ୍ରୟାସ ଆଧାରରେ ହିଁ ଏକ ସୁଦୃଢ଼ ଉଚ୍ଚମାନର ଶିକ୍ଷା ବ୍ୟବସ୍ଥା ପ୍ରତିଷ୍ଠିତ ହୁଏ। ଏହି କଥାକୁ ବିଖ୍ୟାତ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟର କୁଳପତି ତଥା ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଜୈବ-ରସାୟନବିତ୍ ପ୍ରଫେସର ଆଣ୍ଡ୍ର୍ୟୁ ହାମିଲଟନ୍ ଚମତ୍କାର ଭାବରେ କିଛି ବର୍ଷ

ତଳେ ଭାରତ ଗସ୍ତ ସମୟରେ ବ୍ୟକ୍ତ କରିଥିଲେ। କେନ୍ଦ୍ର ସରକାରଙ୍କର ବିଦେଶୀ ବିଶ୍ୱବିଦ୍ୟାଳୟ ବିଲ୍‌କୁ ଦୃଷ୍ଟିରେ ରଖି କିଛି ସାମ୍ବାଦିକଙ୍କ "ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟ ଭାରତରେ କେବେ ଶାଖା ଖୋଲୁଛି ?" ପ୍ରଶ୍ନର ଉତ୍ତରରେ ସେ କହିଥିଲେ, "ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟକୁ ଆମେ ହଜାରେ ବର୍ଷ ଧରି ଗଢ଼ିଚାଲିଛୁ। ଗୋଟିଏ ବିଶ୍ୱବିଦ୍ୟାଳୟ କ'ଣ ବରା-ପିଆଜି ବିକା ଠେଲାଗାଡ଼ି ହୋଇଛି ଯେ ଯେଉଁଠି ନାହିଁ ସେଠି ଠିଆ କରି ବ୍ୟବସାୟ କରି ହେବ।" ତେଣୁ ଅନୁଷ୍ଠାନଟି ତା'ର ଜନ୍ମଦିନରୁ 'ୱାର୍ଲଡ଼୍ କ୍ଲାସ୍' ହୋଇଯିବ ବୋଲି କହି ଆମ ନେତାଗଣ କେବଳ ମୂର୍ଖାମିର ପରିଚୟ ଦେଇଥାଆନ୍ତି। ଏହି ଦୃଷ୍ଟିକୋଣରୁ ବିଚାର କଲେ ଆମ ଶିକ୍ଷା ବ୍ୟବସ୍ଥା ରାଜନେତା ଓ ପ୍ରଶାସକଙ୍କ ହାତରେ ଏକ ଲକ୍ଷ୍ୟହୀନ ଶିକ୍ଷାବିନଷ୍ଟକାରୀ ପରୀକ୍ଷା ନିରୀକ୍ଷାର କ୍ଷେତ୍ରଟିଏ ପାଲଟି ଯାଇଛି। "କର୍ମାନୁଯାୟୀ ଫଳ" ଅନୁସାରେ ଆମ ଶିକ୍ଷା ବ୍ୟବସ୍ଥା, ବ୍ୟାପକତା ଓ ମାନ ଉଭୟ କ୍ଷେତ୍ରରେ ଅଧୋଗତିର ସମ୍ମୁଖୀନ ହୋଇଚାଲିଛି ବର୍ଷକୁ ବର୍ଷ। ବ୍ରିଟିଶ ଶାସକମାନଙ୍କଠାରୁ ମାଗି ଆଣିଥିବା ଭାରତୀୟ ପ୍ରଶାସନିକ ସେବା ସ୍ୱାଧୀନ ଭାରତରେ ସର୍ବୋତ୍କୃଷ୍ଟ ସରକାରୀ ଚାକିରିର ମାନ୍ୟତା ପାଇ ମଧ୍ୟ ବିଭିନ୍ନ ସର୍ବେକ୍ଷଣରେ ପୃଥିବୀ ନୁହେଁ ଏସିଆରେ ଏକ ନିକୃଷ୍ଟମାନର ଜନସେବା ପ୍ରଦାନକାରୀ ସଂସ୍ଥା ଭାବରେ ଖ୍ୟାତିଲାଭ କରିଥିବାବେଳେ, ଆଦର ଯତ୍ନ ରହିତ ଶିକ୍ଷା ବ୍ୟବସ୍ଥା କୌଣସି ସର୍ବେକ୍ଷଣରେ ଆନ୍ତର୍ଜାତିକ ସ୍ତରରେ ଉଚ୍ଚସ୍ଥାନ ଲାଭ କରିବାର ଶ୍ରେୟ ଯେ ପାଇପାରିବ ଆଶା କରିବା ବୃଥା।

ବହୁ ପରିଚାଳନାଗତ ଓ ନୀତିନିୟମ ଭିତ୍ତିକ ତ୍ରୁଟି ବିଚ୍ୟୁତିର ନାଗଫାସରେ ଚେତାଶୂନ୍ୟ ଓଡ଼ିଶାର ଶିକ୍ଷା ବ୍ୟବସ୍ଥାକୁ ମୁକ୍ତି ଓ ଚେତନାର ସ୍ପର୍ଶ ଦେଇ ହେବ କି ନାହିଁ ଏହାହିଁ ଆଜିର ବଡ଼ ପ୍ରଶ୍ନ। ଏହି ପ୍ରଶ୍ନର ଉତ୍ତର ହିଁ ନିର୍ଣ୍ଣୟ କରିବ ଓଡ଼ିଶାର ଓ ଓଡ଼ିଆଙ୍କ ଭାଗ୍ୟଲିପି; ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ଆମର ସ୍ଥିତି।



# ଓଡ଼ିଶାରେ ଉଚ୍ଚଶିକ୍ଷାର ଦୃଶ୍ୟ

ଏଚ୍.ଜି.ୱେଲ୍‌ସ ଥରେ କ୍ଷୋଭର ସହ କହିଥିଲେ, Human history is becoming more and more a race between education and catastrophe. ଅର୍ଥାତ୍ ମଣିଷ ଜାତିର ଇତିହାସ ଶିକ୍ଷା ଓ ବିନାଶ ମଧ୍ୟରେ ଏକ କ୍ରମବର୍ଦ୍ଧିଷ୍ଣୁ ସଂଘର୍ଷ ଭାବରେ ଉଭା ହୋଇ ଚାଲିଛି। ଶିକ୍ଷା ପ୍ରକୃତରେ ସେହି ଚାବି ଯାହାର ସୂଚନା ଦେବାକୁ ଯାଇ ଜଣୈକ ବୌଦ୍ଧ ଭିକ୍ଷୁ କହିଥିଲେ ଯେ, "ଭଗବାନ ମଣିଷ ହାତରେ ସ୍ୱର୍ଗର ଚାବିକାଠି ଦେଇଛନ୍ତି, କିନ୍ତୁ ସେହି ଗୋଟିଏ ଚାବିରେ ହିଁ ନର୍କର ଦ୍ୱାର ଖୋଲେ।" ଆଉ ଆଜିର ଦିନରେ ଶିକ୍ଷା କିଭଳି ବିକାଶ କି ବିନାଶର ପଥ ନିର୍ଦ୍ଧାରଣ କରିବାରେ ବା ସ୍ୱର୍ଗ କି ନର୍କର ଦ୍ୱାର ଖୋଲିବାରେ ନିର୍ଣ୍ଣାୟକ ଭୂମିକା ଗ୍ରହଣ କରେ ତା'ର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ହେଉଛି ଓଡ଼ିଶାର ଶିକ୍ଷା କ୍ଷେତ୍ର; ବିଶେଷ କରି ଉଚ୍ଚଶିକ୍ଷା କ୍ଷେତ୍ର। ଅବଶ୍ୟ ଆମର ଦୁର୍ଭାଗ୍ୟ ଯେ ଏହି ଉଦାହରଣଟି ଏକ ଅବ୍ୟବସ୍ଥିତ ଶିକ୍ଷା ବ୍ୟବସ୍ଥା କିଭଳି ବିନାଶ ଓ ନର୍କର ବାଟ ଖୋଲିବାରେ ସହାୟକ ହୁଏ ତା'ର ହିଁ ଏକ ଉଦାହରଣ।

ଉଚ୍ଚଶିକ୍ଷା ବିଷୟରେ ଆଲୋଚନା ଆଗକୁ ଆଗେଇ ନେବା ପୂର୍ବରୁ ଏତିକି କହିଲେ ଯଥେଷ୍ଟ ହେବ ଯେ ସମ୍ପୂର୍ଣ୍ଣ ଶିକ୍ଷା ବ୍ୟବସ୍ଥା-ପ୍ରାଥମିକ ଠାରୁ ବିଶ୍ୱବିଦ୍ୟାଳୟ ଯାଏ-ଗୋଟିଏ ବ୍ୟବସ୍ଥା। ଗୋଟିଏ ବୃକ୍ଷ ଭଳି। ଆଜି ଯଦି ସେ ବୃକ୍ଷର ଉଚ୍ଚଶିକ୍ଷା ରୂପକ ଉପରି ଭାଗ ବିବର୍ଣ୍ଣ ଓ ବିଦୀର୍ଣ୍ଣ, ତେବେ ତା'ର କାରଣ ହେଉଛି ପ୍ରାଥମିକ ଶିକ୍ଷାର ଚେର, ଜଳ ଓ ରସ ସଂଗ୍ରହ ପାଇଁ ଅକ୍ଷମ ଓ ହଳଦିଆ ପଡ଼ି ଯାଇଥିବା ମଧ୍ୟଭାଗ ମଧ୍ୟ ବାୟୁମଣ୍ଡଳରୁ ଅଙ୍ଗାରକାମ୍ଳ ଓ ସୂର୍ଯ୍ୟକିରଣରୁ ଶକ୍ତି ସଂଗ୍ରହ ପାଇଁ ଅଯୋଗ୍ୟ। ଏଭଳି ଏକ ଦୃଶ୍ୟ ଫୁଲ-ଫଳର ସମ୍ଭାରରେ ପରିବେଶକୁ ସୌନ୍ଦର୍ଯ୍ୟ ଓ

---

★ ଦୈନିକ "ସମ୍ବାଦ"; ୧୬ ଅକ୍ଟୋବର ୨୦୧୨

ଜନମାନସକୁ ଆନନ୍ଦରେ ଭରି ଦେବା ପରିବର୍ତ୍ତେ ନିଜର ଅସ୍ତିତ୍ୱ ବଜାୟ ରଖିବାକୁ ଅବକ୍ଷୟ ସହ ସଂଗ୍ରାମ କରୁଛି ମାତ୍ର।

ଅନେକ ବୁଦ୍ଧିଜୀବୀ ହୁଏତ ଭିନ୍ନ ମତ ପୋଷଣ କରୁଥାଇ ପାରନ୍ତି। ସେମାନେ କେବଳ ବେସରକାରୀ ଅନୁଷ୍ଠାନଗୁଡ଼ିକର କୋଠାବାଡ଼ି ବା ଅନ୍ୟାନ୍ୟ ଝକଚକ୍ୟରେ ପ୍ରଭାବିତ ହୋଇ ଏଭଳି ଭାବୁଥିବେ ବୋଲି କହିବା ମଧ୍ୟ ଅସମୀଚୀନ ହେବ। ତେବେ କୌଣସି ବ୍ୟବସ୍ଥାର ଆକଳନ ବ୍ୟକ୍ତିବିଶେଷଙ୍କ ମତାମତ ସର୍ବସ୍ୱ ହେବା ଅବାଞ୍ଛନୀୟ। ସବୁ କିଛି ପରୀକ୍ଷା ସାପେକ୍ଷ ହେବା ହିଁ ଉଚିତ। ଆଉ ଆଜିର ଦିନରେ ଉପଲବ୍ଧ ସମସ୍ତ ସର୍ବେକ୍ଷଣର ସର୍ବସମ୍ମତ ନିଷ୍କର୍ଷ ହେଲା ଶିକ୍ଷାର ମାନରେ ଅବକ୍ଷୟ। ଡିଗ୍ରୀଧାରୀ ବହୁତ କିନ୍ତୁ ନିଯୁକ୍ତିଯୋଗ୍ୟ ବହୁତ କମ୍। ଗୁରୁଗାଓଁସ୍ଥିତ 'ଆସ୍ପାୟାରିଂ ମାଇଣ୍ଡସ୍' ନାମକ ଏକ ସର୍ବେକ୍ଷଣ ସଂସ୍ଥାର ଆକଳନ ଅନୁଯାୟୀ ୫୫,୦୦୦ ଇଞ୍ଜିନିୟରିଂ ସ୍ନାତକଙ୍କ ମଧ୍ୟରୁ ଶତକଡ଼ା ୩ ଭାଗରୁ କମ୍ ଥିଲେ ଆଇ.ଟି କମ୍ପାନିମାନଙ୍କ ଦ୍ୱାରା ନିଯୁକ୍ତି ଯୋଗ୍ୟ। ଶତକଡ଼ା ୭୮ ପାଖାପାଖି ପ୍ରାର୍ଥୀଙ୍କର ଇଂରେଜୀ ଜ୍ଞାନ ଓ ଶତକଡ଼ା ୫୬ ଭାଗ ପ୍ରାର୍ଥୀଙ୍କର ବିଶ୍ଳେଷଣ ଦକ୍ଷତା ନିମ୍ନମାନର ଥିଲା। ଆଜି ଏହାହିଁ ଦେଖିବାକୁ ମିଳେ ଗାଁ-ଗଣ୍ଡାର ପ୍ରତି ଘରେ ଘରେ ତଥା ସ୍ନାତକ ଓ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନରତ ଛାତ୍ରଛାତ୍ରୀଙ୍କ କ୍ଷେତ୍ରରେ। ଗଣିତ, ସାହିତ୍ୟ ଓ ବିଜ୍ଞାନ ଭଳି ସବୁ କ୍ଷେତ୍ରରେ ସେମାନେ ଅପାରଗ। ଏହା ହିଁ ବିଗତ ଦିନର ମୋଟାମୋଟି ଭାବରେ ସଶକ୍ତ, ସୁଦୃଢ଼ ଓ ଉନ୍ନତମୁଖୀ ଶିକ୍ଷା ବ୍ୟବସ୍ଥାର ଧ୍ୱଂସାବଶେଷ। ଏଭଳି ସ୍ଥିତି ଆହୁରି ଯନ୍ତ୍ରଣାଦାୟକ ହୁଏ, ଯେତେବେଳେ ଆମେ ସ୍ମରଣ କରୁ ଯେ ଭାରତୀୟମାନେ ସେମାନଙ୍କ ରୋଜଗାରର ପ୍ରାୟ ଶତକଡ଼ା ୭.୫ ଭାଗ ସେମାନଙ୍କ ପିଲାମାନଙ୍କ ଶିକ୍ଷା ଉପରେ ଖର୍ଚ୍ଚ କରନ୍ତି ଯାହାକି ଚୀନ୍, ରୁଷିଆ ଓ ବ୍ରାଜିଲ ଭଳି ଦେଶମାନଙ୍କ ତୁଳନାରେ ବହୁ ଅଧିକ। ଗଣଙ୍କର ସ୍ୱପ୍ନକୁ ଗଣତାନ୍ତ୍ରିକ ସରକାରଗୁଡ଼ିକ ହିଁ ମାଟିରେ ମିଶାଇ ଦେଉଛନ୍ତି। କି ବିଡ଼ମ୍ବନା !

ଉଚ୍ଚଶିକ୍ଷା କ୍ଷେତ୍ରରେ ସବୁ କଲେଜ ଓ ବିଶ୍ୱବିଦ୍ୟାଳୟଗୁଡ଼ିକ ରାଜ୍ୟ ସରକାରଙ୍କର ଉଚ୍ଚଶିକ୍ଷା ବିଭାଗ ତଥା କୁଳାଧିପତିଙ୍କ ଅଫିସ ମାଧ୍ୟମରେ ପରିଚାଳିତ। ଏ ଦୁଇଟିଯାକ ସଂସ୍ଥା ଯେ ସେମାନଙ୍କ ଦାୟିତ୍ୱ ସମ୍ପାଦନରେ ସମ୍ପୂର୍ଣ୍ଣ ବିଫଳ ହୋଇଛନ୍ତି ତା'ର ଜ୍ୱଳନ୍ତ ଉଦାହରଣ ହିଁ ଆଜିର ଶିକ୍ଷା ଅବସ୍ଥା। ରାଜ୍ୟପାଳଙ୍କୁ କୁଳାଧିପତି ଭାବରେ ଅଧିଷ୍ଠିତ କରିବାର ଔଚିତ୍ୟ ଉପରେ ବହୁ ସମୟରେ ବହୁ ଶିକ୍ଷାପ୍ରେମୀ ବୁଦ୍ଧିଜୀବୀ ପ୍ରଶ୍ନ ଉଠାଇଛନ୍ତି। କିନ୍ତୁ ଦେଶର ଶାସନ ବ୍ୟବସ୍ଥା ବହୁ ପ୍ରତୀକ୍ଷିତ ଅନ୍ୟାନ୍ୟ ବହୁ ଗୁରୁତ୍ୱପୂର୍ଣ୍ଣ

ସଂସ୍କାର ଭଳି ଏଥିପ୍ରତି ମଧ ବୀତସ୍ପୃହ ରହି ଆସିଛନ୍ତି । ତେଣୁ କୁଳାଧିପତିଙ୍କ କାର୍ଯ୍ୟାଳୟ ରାଜ୍ୟ ସରକାରଙ୍କ କାର୍ଯ୍ୟାଳୟଗୁଡ଼ିକର ମନସ୍ତତ୍ତ୍ୱ ଓ ଦକ୍ଷତାର ପ୍ରଭାବହୀନ ସଂପ୍ରସାରିତ ଅଙ୍ଗ ଭାବରେ କାର୍ଯ୍ୟ କରି ଆସୁଛି । ଏହି କାରଣରୁ କୁଳପତି ଚୟନ ଭଳି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ନିର୍ବାହରେ ମଧ ବହୁ ଅସଂଗତି ଦୃଷ୍ଟିଗୋଚର ହେଉଛି । ରାଜ୍ୟ ସରକାରଙ୍କର ଉଚ୍ଚଶିକ୍ଷା, ଶିଳ୍ପ, କୃଷି ଓ ସ୍ୱାସ୍ଥ୍ୟ ବିଭାଗ ଇତ୍ୟାଦି (ଯେଉଁ ଗୁଡ଼ିକ ବୈଷୟିକ ଓ ଅଣବୈଷୟିକ ଶିକ୍ଷା ବ୍ୟବସ୍ଥା ଦାୟିତ୍ୱରେ ଅଛନ୍ତି) ମନ୍ତ୍ରୀ-ସଚିବ ପରିଚାଳିତ । ସେମାନଙ୍କ ତଳେ ଅଛନ୍ତି ପ୍ରତି ବିଭାଗର ଜଣେ ଜଣେ ନିର୍ଦ୍ଦେଶକ (ଡାଇରେକ୍ଟର) । ଏମାନେ ନିଜ ନିଜ ବିଭାଗ ସମ୍ବନ୍ଧିତ ବିଷୟର ବିଶେଷଜ୍ଞ । ସେମାନଙ୍କର ମଧ ଗୋଟିଏ ଗୋଟିଏ ସ୍ୱୟଂସମ୍ପୂର୍ଣ୍ଣ କାର୍ଯ୍ୟାଳୟ ଅଛି । ବିଶେଷଜ୍ଞ ଡାଇରେକ୍ଟର ଓ ସେମାନଙ୍କ କାର୍ଯ୍ୟାଳୟ ଥିବା ସତ୍ତ୍ୱେ ସଚିବାଳୟରେ ସେହି ବିଭାଗଗୁଡ଼ିକର ସଚିବସ୍ତରୀୟ ପରିଚାଳନା କେବଳ ଏକ ପୁରୁଣାକାଳିଆ ଅଣବୈଜ୍ଞାନିକ ବ୍ୟବସ୍ଥା ନୁହେଁ ବରଂ ବିଭାଗୀୟ ସେବା ପ୍ରଦାନରେ ଅଯଥା ଅର୍ଥ ଓ ସମୟର ଅପଚୟ ମାତ୍ର । ସବୁଠାରୁ ଆଶ୍ଚର୍ଯ୍ୟ କଥା ଯେ ଏତେ ସାଜସଜ୍ଜା ପରିପାଟି ସତ୍ତ୍ୱେ ସରକାରୀ ସ୍ତରରେ ଉଚ୍ଚଶିକ୍ଷାକୁ ନେଇ କୌଣସି ଦୀର୍ଘମିଆଦୀ ଯୋଜନା ନ ଥିଲା କି ନାହିଁ । ବୈଷୟିକ ଓ ଅଣବୈଷୟିକ କଲେଜ ଓ ବିଶ୍ୱବିଦ୍ୟାଳୟ ସଂଖ୍ୟା ୩-୪ ଦଶନ୍ଧି ତଳେ ଯାହା ଥିଲା ଆଜି ମଧ ସେତିକି ! ସବୁଠି କେବଳ ତାତ୍କାଳିକ ନ୍ୟାୟରେ ତାଳିପକା କାମ । ଉପଯୁକ୍ତ ସମୟୋଚିତ ସରକାରୀ ଯୋଜନା ଓ କାର୍ଯ୍ୟପନ୍ଥାର ଅଭାବ ଓ ଲୋକମାନଙ୍କ ଆଶା ଆକାଂକ୍ଷାକୁ ଚରିତାର୍ଥ କରିବାର ଆଡ଼ମ୍ବରଯୁକ୍ତ ବିଜ୍ଞାପନ ଭିତ୍ତିରେ ଶିକ୍ଷା ଧୀରେ ଧୀରେ ବେସରକାରୀ ସଂସ୍ଥାମାନଙ୍କ ହାତରେ ଏକ ପଞ୍ଚତାରକା ଶିଳ୍ପରେ ପରିଣତ ହୋଇଛି । ଶିକ୍ଷାର ଏ ବିରାଟ ବେପାର ଭିତରେ ଗାଁ-ଗଣ୍ଡାର ଲକ୍ଷ ଲକ୍ଷ ପ୍ରତିଭାବାନ ଗରିବ ପିଲାମାନଙ୍କର ଭବିଷ୍ୟତ ବଳି ପଡ଼ିଯାଇଛି । ଯେଉଁ ଅଭାବୀ ଅଶିକ୍ଷିତ ଲୋକମାନେ ରାଜନେତାମାନଙ୍କ ଚଟୁ କଥା ଓ ଅନୈତିକ କପଟରେ ଭୁଲି ସେମାନଙ୍କୁ ଭୋଟ୍ ଦେଉଛନ୍ତି ସେହିମାନେ ଓ ସେମାନଙ୍କ ଭବିଷ୍ୟତ ପିଢ଼ି ହିଁ ତଥାକଥିତ ଗଣତାନ୍ତ୍ରିକ ସରକାରଙ୍କର ପ୍ରଥମ ଓ ପ୍ରଧାନ ଶିକାର ପାଲଟୁଛନ୍ତି । ସରକାରଙ୍କ 'ମାଗଣା' ଦାନକୁ ଚାହିଁ ପଡ଼ି ରହୁଛନ୍ତି ସିନା କିନ୍ତୁ ଉନ୍ନତମାନର ଶିକ୍ଷା ଅଭାବରୁ ସେମାନଙ୍କ ଉତ୍ତର ପିଢ଼ିର ଉନ୍ନତିର ସବୁ ମାର୍ଗ ବନ୍ଦ କରି ଦିଆଯାଇଛି । ଯଥାର୍ଥରେ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ କହିଥିଲେ, "Elections and their corruptions, injustice and power and tyranny of wealth and inefficiency of administration

will make a hell of life as soon as freedom is given to us. Hope lies only in universal educations." ସେ ଆଶା ଟିକକ ମଧ୍ୟ ମରି ମରି ଯାଉଛି ।

ଉଚ୍ଚଶିକ୍ଷା କ୍ଷେତ୍ରରେ ତା'ହେଲେ ଆମର କ'ଣ ଦରକାର ? ଆମର ଦରକାର ଏପରି ଏକ ଶିକ୍ଷା ବ୍ୟବସ୍ଥା ଯେଉଁଠୁ ଆମେ ଆଶା କରିବୁ ଅଧ୍ୟୟନ, ଅଧ୍ୟାପନା ଓ ଗବେଷଣାର ଉତ୍କର୍ଷ ପାଇଁ ନ ଥିବ ତିଳେ ମାତ୍ର ପ୍ରତିରୋଧ; ଭିତ୍ତିଭୂମି ଦୃଷ୍ଟିକୋଣରୁ ହେଉ ବା ପ୍ରଶାସନିକ ସହାୟତା ଉପଲବ୍ଧିରେ ହେଉ ବା ଯୋଗ୍ୟ ପ୍ରତିଭାବାନ ଶିକ୍ଷକଙ୍କ ସାହଚର୍ଯ୍ୟ ହେଉ । ସେ ଶିକ୍ଷା ବ୍ୟବସ୍ଥା ଆମକୁ ଯୋଗାଇବ ଜାତି, ଧର୍ମ, ଲିଙ୍ଗ, ସଂସ୍କାର, ଆଚାର, ବ୍ୟବହାର ନିର୍ବିଶେଷରେ ସାମାଜିକ ପ୍ରତିବଦ୍ଧତା, ଦେଶପ୍ରେମ ଓ ଜ୍ଞାନାନୁସନ୍ଧାନର ଶକ୍ତି ଓ ସାହାସ । ଆମର ଉତ୍ତର ପିଢ଼ି ହେବେ କୁଶଳୀ ଶ୍ରମିକ, କୃଷକ, ଶିକ୍ଷକ, ପ୍ରଶାସକ, ଭାବୁକ, ଲେଖକ, ବୈଜ୍ଞାନିକ, ଆବିଷ୍କାରକ, ଉଦ୍ଭାବକ ଓ ଦାର୍ଶନିକ । ସେମାନଙ୍କ ସମୁଜ୍ଜ୍ୱଳ ସଫଳତାରେ ଉଦ୍‌ଭାସିତ ହେବ ଓଡ଼ିଆ ଜାତି ।

ଏ ସ୍ୱପ୍ନକୁ ସାକାର କରିବାକୁ ଆବଶ୍ୟକ ଯୁଗ ଯୁଗ ଧରି ନିରନ୍ତର ପ୍ରତିବଦ୍ଧତାପୂର୍ଣ୍ଣ ପ୍ରଚେଷ୍ଟା । ସେଥିପାଇଁ ଲୋଡ଼ା ଏକ ସ୍ୱୟଂସମ୍ପୂର୍ଣ୍ଣ ଦୀର୍ଘମିଆଦୀ ଶିକ୍ଷାନୀତି । ଏହା ଶିକ୍ଷକ, ଶିକ୍ଷାର୍ଥୀ, ନାଗରିକ ତଥା ବିଶେଷଜ୍ଞ ଉପଦେଶପ୍ରସୂତ ହେବା ବିଧେୟ । ତତ୍‌ସହିତ ଦଳମତ ନିର୍ବିଶେଷରେ ପ୍ରତ୍ୟେକ ସରକାର ଏଥିପ୍ରତି ପ୍ରତିବଦ୍ଧ ରହିବା ମଧ୍ୟ ଆବଶ୍ୟକ । ପୂର୍ଣ୍ଣାଙ୍ଗ ଶିକ୍ଷାନୀତିର ରୂପରେଖ ଯାହା ବି ହେଉନା କାହିଁକି କେତୋଟି ବିଚାର ସେଥିରେ ଅନ୍ତର୍ଭୁକ୍ତ ହେବା ଜରୁରୀ । ବାର୍ଷିକ ବଜେଟ୍‌ର ଶତକଡ଼ା ୧୫-୨୦ ଭାଗ ଶିକ୍ଷା ପ୍ରତି ଉଦ୍ଦିଷ୍ଟ ରହିବ । କଲେଜ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ଶିକ୍ଷାଦାନ, ପ୍ରଶାସନିକ ଦାୟିତ୍ୱ ଓ ଗବେଷଣା ଇତ୍ୟାଦିର ସୁଚିନ୍ତିତ ଅଭିଜ୍ଞତା ଆଧାରିତ ଆକଳନ ମାଧ୍ୟମରେ ଶିକ୍ଷକ ଆବଶ୍ୟକତା ନିର୍ଦ୍ଧାରିତ ହେବ ଓ ସବୁ ସମୟରେ ସମସ୍ତ ଶିକ୍ଷକ ପଦ ସବୁ ସ୍ତରରେ ଧାରାବାହିକ ନିଯୁକ୍ତି ମାଧ୍ୟମରେ ପୂରଣ କରାଯିବ । ଏଥିଲାଗି ରାଜ୍ୟ ସରକାର ବା କୁଳାଧିପତିଙ୍କ ଅଫିସର ପୁନଃପୁନଃ ଅନୁମତିର ଆବଶ୍ୟକତା ପଡ଼ିବ ନାହିଁ । ବିଶ୍ୱବିଦ୍ୟାଳୟଗୁଡ଼ିକରେ ସ୍ୱାୟତ୍ତତା ପ୍ରତି କୌଣସି ସରକାରୀ ଅଙ୍କୁଶ ରହିବ ନାହିଁ । କଲେଜ ଓ ବିଶ୍ୱବିଦ୍ୟାଳୟ ଶିକ୍ଷକମାନଙ୍କ ଦରମା ଓ ଚାକିରି ସର୍ତ୍ତାବଳୀ ସର୍ବଭାରତୀୟ ସ୍ତରର ହେବ ଓ ସେଥିରେ କୌଣସି ପୁନର୍ବିଚାରର ଅବକାଶ ରହିବ ନାହିଁ । ଶିକ୍ଷକମାନଙ୍କର ପଦୋନ୍ନତି ସେମାନଙ୍କ ଶିକ୍ଷାଦାନ (ଛାତ୍ରମାନଙ୍କ ଆକଳନକୁ ବିଚାରକୁ ନେଇ) ଗବେଷଣା. ଅନୁଷ୍ଠାନଗତ ପ୍ରାଶାସନିକ ଦକ୍ଷତା ତଥା ସାମାଜିକ ପ୍ରତିବଦ୍ଧତା ଇତ୍ୟାଦିର ପ୍ରତି ପଞ୍ଚବାର୍ଷିକ ବିଶେଷଜ୍ଞ କମିଟି ଆକଳନ ମାଧ୍ୟମରେ

ନିର୍ଦ୍ଧାରିତ ହେବ। କ୍ରମବର୍ଦ୍ଧିଷ୍ଣୁ ଲୋକସଂଖ୍ୟା ଭିତ୍ତିରେ ସୁଚିନ୍ତିତ ଯୋଜନା ଆଧାରରେ ନୂଆ ନୂଆ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠିତ ହେବ। ବିଶ୍ୱବିଦ୍ୟାଳୟ ସ୍ତରରେ ବୈଷୟିକ ଓ ବିଜ୍ଞାନ ବିଷୟରେ ଗବେଷଣା ପାଇଁ ନୂତନ ଗବେଷଣା ଅନୁଷ୍ଠାନମାନ ସୃଷ୍ଟି ହେବ। କଲେଜ ଓ ବିଶ୍ୱବିଦ୍ୟାଳୟଗୁଡ଼ିକର ମୁଖ୍ୟ ନିଯୁକ୍ତି ସ୍ୱଚ୍ଛ ହେବା ସହ ରାଜନୈତିକ ଓ ଅମଲାତାନ୍ତ୍ରିକ ପ୍ରଭାବରୁ ମୁକ୍ତ ହେବ। ଏହିଭଳି ଅନେକ କିଛି ପଦକ୍ଷେପକୁ ନେଇ ସାରା ରାଜ୍ୟରେ ସଶକ୍ତ ଶୈକ୍ଷିକ ବାତାବରଣ ସୃଷ୍ଟି କରିବାକୁ ପଡ଼ିବ, ଯାହା ସମାଜରୁ ଅଶିକ୍ଷା, ଦାରିଦ୍ର୍ୟ, ଅନ୍ଧବିଶ୍ୱାସ, ସଂକୀର୍ଣ୍ଣତା ଦୂର କରିବା ସହ ଓଡ଼ିଶାର ଯୁବଶକ୍ତିକୁ ନିଜ ବୈଚିତ୍ର୍ୟମୟ ସଂସ୍କୃତି ଓ ଐତିହ୍ୟର ଉପଯୁକ୍ତ ଦାୟାଦ ତଥା ଆଧୁନିକ ଜ୍ଞାନର ବିଶ୍ୱସ୍ରୋତରେ ନିମଗ୍ନ ସତ୍ୟାନୁସନ୍ଧାନୀ ଭାବରେ ପ୍ରତିଷ୍ଠିତ କରାଇବ। ପ୍ରକୃତିଦତ୍ତ ଖଣିଜ ସମ୍ପଦରେ କେବଳ ନୁହେଁ, ସାଧନା ଅର୍ଜିତ ବୌଦ୍ଧିକ ସମ୍ପଦରେ ଆମ ରାଜ୍ୟ ଜାତୀୟ ତଥା ଆନ୍ତର୍ଜାତୀୟ ସ୍ତରରେ ତା'ର ନ୍ୟାର୍ଯ୍ୟ ସ୍ଥାନ ଅଧିଗ୍ରହଣରେ ସଫଳ ହେବ।



# ପାଠପଢ଼ା ଓ ପରୀକ୍ଷା

ପାଠ ସଭ୍ୟତାର ଦ୍ୟୋତକ। ପାଠ ସଭ୍ୟତା ସୃଷ୍ଟି କରେ, ତାକୁ ରୂପ ଦିଏ। ମଣିଷ ବହୁ ସ୍ତରରେ ଅନୁଭବ କରେ ପାଠର ଗୁରୁତ୍ୱକୁ। କିଏ ତାକୁ ନିଯୁକ୍ତିକ୍ଷମ ହେବାର ଅସ୍ତ୍ର ଭାବରେ ଦେଖେ ତ ଆଉ କିଏ ତା'ରି ସାହାଯ୍ୟ ନେଇ ତାକୁ ଘେରି ରହିଥିବା ସମାଜ ଓ ପ୍ରକୃତିର ଅଧ୍ୟୟନ ଓ ଅନୁଶୀଳନ କରେ। ଏହି ଅଧ୍ୟୟନ ଓ ଅନୁଶୀଳନରୁ ସୃଷ୍ଟି ହୁଏ ନୂତନ ଜ୍ଞାନ। ମିଳେ ଆବିଷ୍କାର ଓ ଉଦ୍ଭାବନ। ଆଉ କିଛି ପାଠକୁ ଆଶ୍ରୟ କରି ଖୋଜି ବସନ୍ତି ଜୀବନର ଉଦ୍ଦେଶ୍ୟ, ସୃଷ୍ଟିର ରହସ୍ୟ ଓ ଏମାନଙ୍କ ଭିତରେ ଥିବା ଗଭୀର ସମ୍ପର୍କ। ଏକ ଉନ୍ନତ ଓ ଉନ୍ମୁକ୍ତ ଜୀବନର ଏକମାତ୍ର ପାଥେୟ ହିଁ ପାଠ ଓ ତତ୍‌ପ୍ରସୂତ ଆଚାର ବିଚାର। ଆଜି କିନ୍ତୁ ଆମେ ପାଠ ବିଷୟରେ ଯେତେ ଚିନ୍ତିତ ନୁହେଁ ତା'ଠାରୁ ବହୁ ଅଧିକ ଚିନ୍ତିତ 'ପାଠପଢ଼ା' ଓ 'ପରୀକ୍ଷା' ଭିତ୍ତିକ କାର୍ଯ୍ୟକ୍ରମରେ ଆମର ବିଫଳତା ଓ ସେଥିରେ 'ସୁଧାର' ଆଣିବାର ତତ୍କାଳୀନ ପ୍ରଚେଷ୍ଟାକୁ ନେଇ। କାର୍ଯ୍ୟକ୍ରମଗୁଡ଼ିକ ପାଠକୈନ୍ଦ୍ରିକ ନ ହୋଇ ପାଠକୁ ବାହ୍ୟ କାର୍ଯ୍ୟକ୍ରମ-କୈନ୍ଦ୍ରିକ କରିବା ହିଁ ଯେ ଆମ ବିଫଳତାର ମୂଳ କଥା ଏହା ବୋଧହୁଏ ଆମେ ବୁଝିବାକୁ ପ୍ରସ୍ତୁତ ନୋହୁଁ।

ପ୍ରାଥମିକ ସ୍ତରରେ କେତୋଟି ସର୍ବସମ୍ମତ ଗବେଷଣାଗତ ସର୍ବନିମ୍ନ ନିଷ୍କର୍ଷ ହେଲା ଯେ ପିଲାଙ୍କୁ ମାତୃଭାଷା ମାଧ୍ୟମରେ ପଢ଼ାଯିବ, ପାଠପଢ଼ା ଘୋଷିବା ବଦଳରେ ବୁଝିବା ଉପରେ ଗୁରୁତ୍ୱ ଦେବ ଓ ପିଲାଙ୍କ ବହି ବସ୍ତାନିର ଓଜନ କମ୍ ରହିବ। ସେହିଭଳି ସର୍ବନିମ୍ନ ଭିତ୍ତିଭୂମି କ୍ଷେତ୍ରରେ ବିଦ୍ୟାଳୟର ଘରଟିଏ ଥିବ ଯେଉଁଥିରେ ପ୍ରତି ଶ୍ରେଣୀ ପାଇଁ ଅଲଗା ଅଲଗା କୋଠରିର ବ୍ୟବସ୍ଥା ଥିବ, ପ୍ରତି ଶ୍ରେଣୀରେ ଅଧିକ କିଛି ନ ଥିଲେ ବି କଳାପଟା ଖଣ୍ଡେ ଥିବ, ପିଲାଙ୍କ ପାଇଁ ପରିଷ୍କାର ପିଇବା ପାଣିର ଓ ଶୌଚାଳୟର ବ୍ୟବସ୍ଥା ଥିବ। ଶତକଡ଼ା ୮୦-୯୦ ଭାଗ ବିଦ୍ୟାଳୟରେ ଏ ସବୁର

---

★ ଦୈନିକ "ସମ୍ବାଦ"; ୨୬ ଏପ୍ରିଲ ୨୦୧୩

ଆୟୋଜନ ହୋଇପାରି ନ ଥିବା ସବୁ ସର୍ବେକ୍ଷଣର ସାଧାରଣ ନିର୍ଯାସ; ତାହା ପୁଣି କଳାପଟା ଅଭିଯାନ, ସର୍ବଶିକ୍ଷା ଅଭିଯାନ ଓ ଶିକ୍ଷା ଅଧିକାର ଭଳି ବହୁ ଚର୍ଚ୍ଚିତ ବହୁ ବ୍ୟୟବହୁଳ ଜାତୀୟ ଉଦ୍ୟମ ସତ୍ତ୍ୱେ। ନା ଶିକ୍ଷା ମାତୃଭାଷାରେ ହେଲା, ନା ବହିପତ୍ରର ଓଜନ କମିଲା, ନା ପିଲାମାନେ ଘୋଷବନ୍ତଂ ବଳବନ୍ତଂ ସ୍ଥିତିରୁ ମୁକୁଳି ପାରିଲେ। କିନ୍ତୁ ଶିକ୍ଷା-ପରିପନ୍ଥୀ କାର୍ଯ୍ୟକ୍ରମଗୁଡ଼ିକୁ ବହୁ ନିଷ୍ଠାର ସହ ଶିକ୍ଷା କାର୍ଯ୍ୟକ୍ରମ ସହ ଯୋଡ଼ି ଦିଆଗଲା ଯଥା: ମଧ୍ୟାହ୍ନ ଭୋଜନ, ପ୍ରତି ୪୦ ଜଣରେ-ପ୍ରତି ଶ୍ରେଣୀ ପାଇଁ ନୁହେଁ- ଜଣେ ଶିକ୍ଷକ, ମାଗଣା ଦ୍ରବ୍ୟ ବଣ୍ଟନ, ଜନଗଣନା ଓ ଏକାଧିକ ଜନସଚେତନତା କାର୍ଯ୍ୟକ୍ରମ। ଏସବୁ ପୁଣି ସେହି ସରକାରୀ ବିଦ୍ୟାଳୟମାନଙ୍କରେ ଯେଉଁଠି ଶିକ୍ଷକ ଅଭାବ ଚରମ ସୀମାରେ ପହଞ୍ଚିଛି। ସାରା ରାଜ୍ୟରେ ୫୦ ହଜାର ଶିକ୍ଷକଙ୍କ ଅଭାବ। "ବସ୍ତ୍ରାଭାବେ ସୂତ୍ରଂ ଦଦ୍ୟାତ୍" ନ୍ୟାୟରେ ଶିକ୍ଷକ ବଦଳେ ଶିକ୍ଷା-ସହାୟକ ନିଯୁକ୍ତି କରାଯାଉଛି। ନିଯୁକ୍ତ ଶିକ୍ଷକଙ୍କ ଯୋଗ୍ୟତା ଏପରି ଯେ ଖୋଦ୍ ସରକାରଙ୍କ ପରୀକ୍ଷାରେ ଶତକଡ଼ା ୯୨ ଫେଲ୍।

ଅସମର୍ଥ 'ଶିକ୍ଷକ' ନିଯୁକ୍ତ କରି ସେମାନଙ୍କୁ ସମର୍ଥ କରିବା ପାଇଁ 'ସାମର୍ଥ୍ୟ' ଶିବିରର ଆୟୋଜନ ହେଉଛି। ଅଳ୍ପ କେତେ ଦିନର ଆଲୋଚନା ଓ ଅଳ୍ପ କେତେ ପୃଷ୍ଠାର ନୋଟ୍ ଧରି ଜଣେ ଶିକ୍ଷକର ଅସାମର୍ଥ୍ୟ ସାମର୍ଥ୍ୟରେ ପରିଣତ ହୋଇଯିବ ବୋଲି ଭାବିବା ଯେ ଏକ ଉଦ୍ଭଟ ପରିକଳ୍ପନା ତାହା କହିବା ବାହୁଲ୍ୟ। ଏହା ଶତାବ୍ଦୀ ଶତାବ୍ଦୀ ପୂର୍ବର ଯେକୌଣସି ସାଧାରଣ ଧାତୁକୁ ସୁନାରେ ପରିଣତ କରିବାର କିଛି ରସାୟନବିତ୍‌ଙ୍କର ଅପଚେଷ୍ଟାକୁ (ଆଲ୍‌କେମୀ) ହିଁ ସ୍ମରଣ କରାଇ ଦିଏ। ଯୋଗ୍ୟ, ସମର୍ଥ ଶିକ୍ଷକଙ୍କର ଯେ ବିକଳ୍ପ ନାହିଁ ଏକଥା କ'ଣ ଏକବିଂଶ ଶତାବ୍ଦୀର ପ୍ରଗତିଶୀଳ ସରକାରୀ ଅଧିକାରୀମାନଙ୍କୁ ଅଛପା ଅଛି ? ଏ ପ୍ରଶ୍ନର ଉତ୍ତର ଯଦି 'ହଁ' ହୁଏ ତେବେ ସରକାରୀ ମାନ ବିଷୟରେ ନ କହିବା ଭଲ; ଆଉ ଯଦି ଉତ୍ତର 'ନାହିଁ' ହୁଏ ତେବେ ସରକାର 'ଶିକ୍ଷା ଅଧିକାର' ବାହାନାରେ ଯେ 'ଅଶିକ୍ଷା ଅଧିକାର' ପ୍ରଦାନ ଅଭିପ୍ରାୟରେ କାର୍ଯ୍ୟରତ ତାହା ବୁଝିବାକୁ ହେବ। ଉଭୟ 'ଉତ୍ତର' ଜାତିର ଭବିଷ୍ୟତ ପାଇଁ ଚରମ ଦୁର୍ଗତିର ବାର୍ତ୍ତାବହନ କରନ୍ତି।

ଶିକ୍ଷାଦାନ ପ୍ରକ୍ରିୟାର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ପିଲାଙ୍କ ବୋଧଶକ୍ତିର କ୍ରମ ଉତ୍ତରଣ। ତାହାହିଁ କେବଳ ପିଲାମାନଙ୍କୁ ସୃଜନଶୀଳ କରିବାର ପ୍ରତିଶ୍ରୁତି ବହନ କରେ। କିନ୍ତୁ ଆମ ସରକାର ପ୍ରଣୀତ ବହିଗୁଡ଼ିକ ବିଷୟାଧିକ୍ୟ ଓ କ୍ଲିଷ୍ଟତାକୁ ନେଇ ପିଲାମାନଙ୍କର ବୋଧଶକ୍ତିର ବିକାଶ ପରିବର୍ତ୍ତେ ବିନାଶର ବାଟ ସୁଗମ କରୁଥିବା ସ୍ପଷ୍ଟ

ପ୍ରତୀୟମାନ ହୁଏ। ତୃତୀୟ ଶ୍ରେଣୀରୁ ଇଂରେଜୀ ଭାଷା ଶିକ୍ଷା ଆରମ୍ଭ ହୋଇଯାଏ। ସେତେବେଳକୁ ପିଲାଟିର ଓଡ଼ିଆ ଭାଷା ଶିକ୍ଷା ଅତି ଅପରିପକ୍ୱ ଅବସ୍ଥାରେ ଥାଏ। କିନ୍ତୁ ଦ୍ୱିତୀୟ ଭାଷା ଭାବରେ ଗୋଟିଏ ବିଦେଶୀ ଭାଷା ଶିକ୍ଷାର ଚାପ ଲଦି ଦିଆଯାଏ। ସେହିଭଳି ପ୍ରାଥମିକ ଶ୍ରେଣୀର ଗଣିତ, ବିଜ୍ଞାନ, ସାହିତ୍ୟ ଓ ସାମାଜିକ ଶିକ୍ଷା ପ୍ରତ୍ୟେକ ବହିରେ ୨୦ରୁ ଅଧିକ ବିଷୟ ସ୍ଥାନ ପାଇଥାଏ, ସତେ ଯେପରି ବିଶେଷଜ୍ଞମାନେ ମଣିଷକୁ ଜଣାଥିବା ସବୁ ଜ୍ଞାନକୁ ଘୋରିବାଟି ପିଲାମାନଙ୍କ ତଣ୍ଟିରେ ଗିଳେଇ ଦେବାକୁ ବ୍ୟଗ୍ର। ଜ୍ଞାନୀ ଓ ଯୋଗ୍ୟ ଶିକ୍ଷକମାନେ ମଧ ଏତେଗୁଡ଼ିଏ ବିଷୟକୁ ନ୍ୟାୟ ଦେଇ ଠିକ୍ ଭାବରେ ଗୋଟିଏ ଶିକ୍ଷା ବର୍ଷରେ ପଢ଼ାଇ ପାରିବେ ନାହିଁ। ବହୁ କ୍ଷେତ୍ରରେ ପିଲାର ବୟସ ଓ ବୋଧଶକ୍ତିକୁ ବିଚାରକୁ ନେଇ ମଧ ବିଷୟ ଚୟନ କରାଯାଇ ନ ଥାଏ। ଚତୁର୍ଥ ଶ୍ରେଣୀରେ ଜ୍ୟାମିତି ଆରମ୍ଭରୁ ରଶ୍ମି ଓ ସରଳରେଖା ଇତ୍ୟାଦିର ଆଧୁନିକ ପରିଭାଷା ବୟାନ, ସପ୍ତମ ଶ୍ରେଣୀ ବିଜ୍ଞାନରେ ରାସାୟନିକ ପ୍ରକ୍ରିୟାକୁ ନେଇ ରାସାୟନକ ସମୀକରଣ ଓ ସେଗୁଡ଼ିକର ସନ୍ତୁଳନ, ଧାତୁ ଅଧାତୁ ବିଷୟକ ଆଲୋଚନା ଇତ୍ୟାଦି କେତୋଟି ଉଦାହରଣ ମାତ୍ର।

କୁହାଯାଇଛି ଯେ ଜାତୀୟ ଶିକ୍ଷା ଗବେଷଣା ତାଲିମ ପରିଷଦର ୨୦୦୦ ଓ ୨୦୦୫ ମସିହା ଶିକ୍ଷାନୀତି ଆଧାରିତ ବହିଗୁଡ଼ିକ ଢାଞ୍ଚାରେ ଆମ ବିଜ୍ଞାନ, ଗଣିତ, ସମାଜ ବିଜ୍ଞାନ ଇତ୍ୟାଦି ବହିଗୁଡ଼ିକ ପ୍ରସ୍ତୁତ କରାଯାଇଛି। କିନ୍ତୁ ଜାତୀୟ ପରିଷଦ ନାଁ ନେଇ ବା ସେ ବହିଗୁଡ଼ିକୁ ଆମୂଳଚୂଳ ବିନ୍ଦୁବିସର୍ଗ ସହ ଅନୁବାଦ କରି ପିଲାମାନଙ୍କୁ ଘୋଷାଘୋଷି କରି ମନେ ରଖିବା ପାଇଁ ବାଧ କରିବା ଦ୍ୱାରା ବୈଜ୍ଞାନିକ ମନୋବୃତ୍ତି ଓ ସୃଜନଶୀଳତାକୁ ହିଁ ନଷ୍ଟ କରାଯାଉଛି, ଯାହାକି ଆମର ସାହିତ୍ୟ, ଗଣିତ, ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ତୁଳନାତ୍ମକ ଭାବେ ଅତ୍ୟନ୍ତ ନିମ୍ନମାନର ଗବେଷଣାର ମୁଖ୍ୟ କାରଣ ହୋଇଛି।

ଗୋଟିଏ ପଟେ ବହିର ପୃଷ୍ଠାଗୁଡ଼ିକରେ ଆଧୁନିକ ଜ୍ଞାନକୁ ଭର୍ତ୍ତି କରିବାରେ ତତ୍ପରତା ଯେତିକି, ପରୀକ୍ଷାଗୁଡ଼ିକୁ କୋହଳ କରିବାରେ ତତୋଧିକ ବ୍ୟଗ୍ରତା ଆମ ଶିକ୍ଷା ପଦ୍ଧତିକୁ ଅନ୍ତଃସାରଶୂନ୍ୟ କରି ଦେଉଛି। ଅଷ୍ଟମ ଶ୍ରେଣୀ ଯାଏ ପାସ୍ ଫେଲ୍ ବ୍ୟବସ୍ଥା ଉଚ୍ଛେଦ, ମାଧମିକ ସ୍ତରରେ କେବଳ ଦଶମ ଶ୍ରେଣୀ ଓ +୨ ବା ଉଚ୍ଚ ମାଧମିକ ସ୍ତରରେ କେବଳ ଦ୍ୱିତୀୟ ବର୍ଷର ପାଠ ଉପରେ ପରୀକ୍ଷା ବ୍ୟବସ୍ଥା, ଉଚ୍ଚ ମାଧମିକ ସ୍ତରରେ 'ଇନ୍‌ଷ୍ଟାଣ୍ଟ୍'ପରୀକ୍ଷା ମାଧମରେ ଫେଲ୍ ପିଲା ଫେଲ୍ ନ ହେବାର

ଚମତ୍କାରିତା, +୩ ଓ ବିଭିନ୍ନ ବୃତ୍ତିଗତ ପାଠ୍ୟକ୍ରମରେ ପାସ୍ ହେବା ପର୍ଯ୍ୟନ୍ତ 'ବ୍ୟାକ୍' ପରୀକ୍ଷାର ନୀତିଗତ ବ୍ୟବସ୍ଥା ସବୁ କୋହଳ ପରୀକ୍ଷା ପଦ୍ଧତିର ଗୋଟିଏ ଗୋଟିଏ ଉତ୍କୃଷ୍ଟ ଉଦାହରଣ। ସାର୍ଟିଫିକେଟ୍ ମିଳିବ +୨ (ଯୁକ୍ତ ଦୁଇ)ର କିନ୍ତୁ ପରୀକ୍ଷା ହେବ କେବଳ ବର୍ଷକ ପାଠର। ଏଭଳି କୋହଳ ନୀତି ଗ୍ରାମାଞ୍ଚଳର ସ୍କୁଲ-କଲେଜଗୁଡ଼ିକର ଶିକ୍ଷାଦାନକୁ ଅତ୍ୟନ୍ତ ନକାରାତ୍ମକ ଭାବରେ ପ୍ରଭାବିତ କରୁଛି କେବଳ। ଟ୍ୟୁସନ୍ ଓ ନାମୀ କୋଚିଂ ବ୍ୟବସ୍ଥାର ସୁବିଧା ନେଇ ପାରୁଥିବା ସହରୀ ଓ ଧନୀ ପିଲାମାନେ ଏହି ନିମ୍ନଗାମୀ ଭଉଁରୀରୁ ନିଜକୁ ମୁକୁଳେଇ ପାରୁଛନ୍ତି। ଥାଇ-ନ ଥିଲା ଭଳି ପରୀକ୍ଷା ପଦ୍ଧତିରେ 'ସଫଳ' ପିଲାମାନେ ଯେ ନିଯୁକ୍ତିଯୋଗ୍ୟ ହେଉ ନାହାନ୍ତି-ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଏହା ତ ଆମ ନୀତି-ନିର୍ଦ୍ଧାରିତ ! ଏହା ମଧ୍ୟ ଜାତୀୟ ଶିକ୍ଷା ଗବେଷଣା ତାଲିମ ପରିଷଦ (NCERT) ନୀତି ଅନୁକରଣର ଫଳ !

ଓଡ଼ିଶା ସରକାରଙ୍କ ଶିକ୍ଷକ ଯୋଗ୍ୟତା ଚିହ୍ନଟ ପରୀକ୍ଷାରେ ଶତକଡ଼ା ୯୨ ଶିକ୍ଷକଙ୍କ ଅସଫଳତା କିଛିଦିନ ପାଇଁ କୋଳାହଳ ସୃଷ୍ଟି କଲା। କିନ୍ତୁ ଏହା ମଧ୍ୟ ବହୁ ଅଂଶରେ ଥିଲା ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦର ଧନ୍ଦାମୂଳକ +୨ (ଯୁକ୍ତ ଦୁଇ) ଓ ସାଧାରଣ +୨ (ଯୁକ୍ତ ଦୁଇ) ମଧ୍ୟରେ ସମତୂଲ୍ୟ ନୀତି (Equivalence)ର ସିଧାସଳଖ ପରିଣାମ। ଏହି ନୀତି ଫଳରେ ଧନ୍ଦାମୂଳକ ଧାରାର ଅତ୍ୟନ୍ତ କୋହଳ ପରୀକ୍ଷାରେ ଅତ୍ୟୁଚ୍ଚ ନମ୍ବର ରଖିଥିବା ପିଲାମାନେ ସାଧାରଣ +୨ (ଯୁକ୍ତ ଦୁଇ) ପଢୁଥିବା ଅଧିକ ମେଧାବୀ ପିଲାମାନଙ୍କୁ ପଛରେ ପକାଇ ପ୍ରାଥମିକ ଶିକ୍ଷା ଡିପ୍ଲୋମା ପାଠ୍ୟକ୍ରମରେ ନାମ ଲେଖାଇ ଶିକ୍ଷକ ହୋଇ ଯାଉଛନ୍ତି। ଅର୍ଥାତ୍ ପରିଷଦର ସମତୁଲ୍ୟ-ନୀତି ମାଧ୍ୟମରେ ଅଯୋଗ୍ୟ ପିଲାମାନେ ଯୋଗ୍ୟମାନଙ୍କଠାରୁ ଅଧିକ ଯୋଗ୍ୟ ହୋଇ ଯାଉଛନ୍ତି। ବର୍ଷ ବର୍ଷ ଧରି ଏହି 'ଯୋଗ୍ୟ' ଶିକ୍ଷକଙ୍କ ଔଜ୍ଜଲ୍ୟରେ ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ ଉଦ୍‌ଭାସିତ ହେଉଥିଲାବେଳେ ଶିକ୍ଷାର ମାନକୁ ନେଇ ସରକାରୀ କୁମ୍ଭୀର କାନ୍ଦଣା ଏକ ଲୋକଦେଖାଣିଆ ବିଳାପ ବୋଲି ଧରି ନେବାକୁ ହେବ।

ଶିକ୍ଷାଦାନ ଓ ପରୀକ୍ଷା କ୍ଷେତ୍ରରେ ନୀତିଗତ ବିରଳ ବିଭ୍ରାଟକୁ ଛାଡ଼ିଦେଲେ ମଧ୍ୟ ପରୀକ୍ଷା ପରିଚାଳନାରେ ଦୁର୍ନୀତି ଏକ ବିରାଟ ସମସ୍ୟା ହୋଇ ଠିଆ ହେଲାଣି। ଅନ୍ୟାନ୍ୟ କ୍ଷେତ୍ରରେ ଘଟୁଥିବା ଦୁର୍ନୀତି ବା ଦୁଷ୍କର୍ମ ଭଳି ଶିକ୍ଷାଦାନ ବା ପରୀକ୍ଷା ପରିଚାଳନାର ଦୁର୍ନୀତି ମଧ୍ୟ ମୂଳତଃ ଏକ ଚାରିତ୍ରିକ ପ୍ରଶ୍ନ। କିନ୍ତୁ ଆମ ବ୍ୟକ୍ତିଗତ ବା ଜାତୀୟ ଚରିତ୍ରରେ ହଠାତ୍ କୌଣସି ଯାଦୁକରୀ ପରିବର୍ତ୍ତନ ଘଟିବାର ଆଶା ନ ଥିବା

ଦୃଷ୍ଟିରୁ ଓ ଆଧୁନିକ ମାନସିକତାରେ 'ଯେନତେନ ପ୍ରକାରେଣ' ଲକ୍ଷ୍ୟ ହାସଲ ଅଗ୍ରାଧିକାର ସାବ୍ୟସ୍ତ କରିଚାଲିଥିଲା ବେଳେ ଦୁର୍ନୀତି ଦୁର୍ନିବାର ହୋଇଯାଉଛି। ପରିକଳ୍ପିତ 'ସଂସ୍କାର'ଗୁଡ଼ିକ ଦୁର୍ନୀତିକୁ ନୂଆ ନୂଆ କ୍ଷେତ୍ରକୁ ପରିବହନ କରିବାରେ ସଫଳ ହେବା ହିଁ ସାର ହେଉଛି। 'ସଂସ୍କାର'ଗୁଡ଼ିକ ପ୍ରତିଭାବାନ ଓ ମେଧାବୀ ଛାତ୍ରମାନଙ୍କ ମନରୁ ଆନନ୍ଦ, ଉଦ୍ଦୀପନା ଓ ପ୍ରେରଣା ଲିଭାଇ ଦେବାରେ ସକ୍ଷମ ହେଉଛି। ନିକଟରେ +୨ (ଯୁକ୍ତ ଦୁଇ) ପରୀକ୍ଷାର ପ୍ରଶ୍ନପତ୍ର ପ୍ରଘଟ ହେବା ଘଟଣାର ହଟଚମଟ ଗୋଟିଏ ଦୁଇଟି ଅନାମଧେୟ କଲେଜ ଚିହ୍ନଟ ଓ ଜଣେ ଦୁଇ ଜଣଙ୍କ ଗିରଫଦାରି ସହିତ ନିର୍ବାପିତ ହୋଇଗଲା ଭଳି ଲାଗୁଛି। ସେହି ପରିପ୍ରେକ୍ଷୀରେ ଗଣମାଧ୍ୟମଗୁଡ଼ିକରୁ ଜଣାପଡ଼ିଲା ଯେ ବିଧାନସଭା ସଭ୍ୟମାନେ ମଧ୍ୟ ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦର ପରିଚାଳନା କମିଟିର ସଦସ୍ୟ ଅଛନ୍ତି। ସାଧାରଣତଃ କୌଣସି ସରକାରୀ ସଂସ୍ଥାର କାର୍ଯ୍ୟକାରିତାକୁ ନେଇ ଅଭିଯୋଗ ଆସିଲେ ସରକାର ତା'ର ଅନୁସନ୍ଧାନ ଓ ତଦନ୍ତ କରିଥାଆନ୍ତି। କିନ୍ତୁ ଅଭିଯୋଗ ଯଦି ମହାଅଭିଯୋଗର ରୂପ ନିଏ ତେବେ ଆବଶ୍ୟକ ହେଲେ ବିଧାନସଭାର ସଦସ୍ୟମାନଙ୍କୁ ନେଇ ଗୃହ କମିଟି ତାହାର ତଦନ୍ତ କରିଥାଏ। କିନ୍ତୁ ଗୋଟିଏ ସଂସ୍ଥାର ପରିଚାଳନାରେ ଯଦି ମୂଳରୁ ବିଧାନସଭା ସଭ୍ୟ ସମ୍ପୃକ୍ତ ଥାଆନ୍ତି ତା'ହେଲେ ଆବଶ୍ୟକସ୍ଥଳେ ସରକାର ବା ଗୃହ କମିଟି କିଭଳି ସେ ସଂସ୍ଥା ବିରୋଧରେ ଥିବା ଅଭିଯୋଗର ନିରପେକ୍ଷ ସମୀକ୍ଷା କରିବ ଏକ ବିଚାରସାପେକ୍ଷ ପ୍ରଶ୍ନ।

ଜାତୀୟ ଶିକ୍ଷାପଟରେ ଆଉ ଏକ ବିଡ଼ମ୍ବନା ହେଉଛି ମ୍ୟାନେଜ୍‌ମେଣ୍ଟ ଭଳି ଅଣ ମୌଳିକ ପାଠ୍ୟକ୍ରମ ଉପରେ ଅହେତୁକ ଗୁରୁତ୍ୱାରୋପ। କଳା, ସାହିତ୍ୟ, ଗଣିତ, ବିଜ୍ଞାନ, ଦର୍ଶନ, ଅର୍ଥନୀତି, ରାଜନୀତି, ପ୍ରଯୁକ୍ତିବିଦ୍ୟା ଭଳି ମୌଳିକ ବିଷୟଗୁଡ଼ିକର ଅଧ୍ୟୟନ, ମନନ ଓ ଗବେଷଣା ଯେଭଳି ନୂତନ ଜ୍ଞାନ ସୃଷ୍ଟି ଓ ଜାତି ଉତ୍ତରଣ ତଥା ଗର୍ବ ଓ ଗୌରବ ବୃଦ୍ଧିରେ ସହାୟକ ହୁଏ, ମ୍ୟାନେଜ୍‌ମେଣ୍ଟ ପାଠ୍ୟକ୍ରମରେ ସେଭଳି କୌଣସି ପ୍ରତିଶ୍ରୁତି ନଥାଏ। ଦେଶୀ ବିଦେଶୀ କମ୍ପାନି ପରିଚାଳନା ଓ ଲାଭ ସୃଷ୍ଟି ମ୍ୟାନେଜ୍‌ମେଣ୍ଟ ପାଠ୍ୟକ୍ରମର ମୁଖ୍ୟ ଉଦ୍ଦେଶ୍ୟ। ତେଣୁ ଅବିଶ୍ୱସନୀୟ ଦରମାର ଲୋଭ ଦେଖାଇ ଗରିବ ଓ ବିକାଶଶୀଳ ଦେଶର ମେଧାବୀ ଯୁବବର୍ଗକୁ ପ୍ରଲୁବ୍ଧ କରିବା ଧନୀ ଦେଶ ଓ ପୁଞ୍ଜି ପ୍ରଚୁର କମ୍ପାନିମାନଙ୍କର ଏକ ଲୁକ୍କାୟିତ ଆନ୍ତର୍ଜାତିକ ମେଧାଲୁଣ୍ଠନ ପ୍ରକ୍ରିୟା ବୋଲି ମନେହୁଏ। ନିଜ ମାନବ ସମ୍ବଳର ଯୋଗ୍ୟତମ ଅଂଶଟିକୁ ହରାଇ

ଗରିବ ଓ ବିକାଶଶୀଳ ଦେଶଗୁଡ଼ିକର ଆନ୍ତର୍ଜାତିକ ସ୍ତରରେ ଶିକ୍ଷାକୁ ନେଇ ଗର୍ବ ଓ ଗୌରବର ସ୍ଥାନ ଅଧିକାର ସ୍ୱପ୍ନ ଚିରଦିନ ପାଇଁ ପରାହତ ହୋଇଯିବା ହିଁ ଅବଧାରିତ । 'ଗରିବ' ଓ 'ବିକାଶଶୀଳ' ମୋହର ଚିହ୍ନରୁ ମୁକ୍ତି ହୁଏତ ଅସମ୍ଭବ ।

ନୂଆ କିଛି କରି ଦେଖାଇବାର ବ୍ୟଗ୍ରତାରେ ସୁଚିନ୍ତିତ, ସୁଫଳଦାୟୀ ପୁରୁଣା ବ୍ୟବସ୍ଥାକୁ ଫୋପାଡ଼ି ଦେବା ପ୍ରଗତି ପଦବାଚ୍ୟ ହୋଇ ନ ଥାଏ । 'ପୁରୁଣା' ଭିତରେ ବହୁ ବିଜ୍ଞ, ପ୍ରତିଭାଧର, ଜାତିପ୍ରାଣ ବ୍ୟକ୍ତିବିଶେଷଙ୍କ ଅନ୍ତର୍ଦୃଷ୍ଟି ନିହିତ ଥାଏ । ଲାଗୁଛି, 'ପାଠପଢ଼ା' ଓ 'ପରୀକ୍ଷା'ର ବହୁ ଆଡ଼ମ୍ବରପୂର୍ଣ୍ଣ ନୂଆ ନୂଆ କ୍ରିୟାକଳାପ ଭିତରେ ପାଠ ଅପସରି ଯାଉଛି; ଠିକ୍ ଯେପରି ଜିଇବାର ଆଧୁନିକତାର ଆଡ଼ମ୍ବର ଭିତରେ ଜୀବନ ହଜି ହଜି ଚାଲିଛି ।



# ସର୍ବେକ୍ଷଣ ଅଣୁବୀକ୍ଷଣରେ ଆମ ଉଚ୍ଚଶିକ୍ଷା

ନିକଟରେ ଭାରତ ସରକାରଙ୍କ ମାନବ ସମ୍ବଳ ବିକାଶ ବିଭାଗ ଦେଶର ବିଶ୍ୱବିଦ୍ୟାଳୟ ତଥା ଇଞ୍ଜିନିୟରିଂ, ମ୍ୟାନେଜ୍‌ମେଣ୍ଟ, ଫାର୍ମାସି ଭଳି କ୍ଷେତ୍ରରେ ଉଚ୍ଚଶିକ୍ଷା ପ୍ରଦାନରେ କାର୍ଯ୍ୟରତ ଅନୁଷ୍ଠାନଗୁଡ଼ିକର ଉତ୍କର୍ଷଭିତ୍ତିକ ତାଲିକା ପ୍ରକାଶ କରିଛନ୍ତି। ଭାରତ ସରକାରଙ୍କ କ୍ଷେତ୍ରରେ ଏଭଳି ପ୍ରୟାସ ପ୍ରଥମ। ସେହି ଦୃଷ୍ଟିରୁ ଅନେକ ବିଶ୍ୱବିଦ୍ୟାଳୟ-ଓଡ଼ିଶାର ସମସ୍ତ ବିଶ୍ୱବିଦ୍ୟାଳୟ ଏହାର ଅନ୍ତର୍ଭୁକ୍ତ-ଶିକ୍ଷାନୁଷ୍ଠାନ ଏହି ସର୍ବେକ୍ଷଣରେ ଭାଗ ନେଇପାରି ନାହାନ୍ତି। ଭବିଷ୍ୟତରେ ଏହି ତ୍ରୁଟି ସଂଶୋଧନ ହୋଇଯିବ ନିଶ୍ଚୟ। କାରଣ ଏହା ଏକ ଅଭିନନ୍ଦନୀୟ ଓ ଯୁଗୋପଯୋଗୀ ପଦକ୍ଷେପ; ଠିକଣା ଦିଗରେ ଆଗକୁ ଏକ ପାଦ।

ଏହି ମୂଲ୍ୟାୟନରୁ ବିଶେଷ କିଛି ନୂଆ କଥା ଜନସାଧାରଣଙ୍କ ଦୃଷ୍ଟିଗୋଚର ହୋଇନାହିଁ। ଇଞ୍ଜିନିୟରିଂ ଅନୁଷ୍ଠାନଗୁଡ଼ିକ ମଧ୍ୟରେ ଆଇ.ଆଇ.ଟି., ବାଣିଜ୍ୟ ବା ମ୍ୟାନେଜ୍‌ମେଣ୍ଟ କ୍ଷେତ୍ରରେ ଆଇ.ଆଇ.ଏମ୍. ଗୁଡ଼ିକ ଉଚ୍ଚ ସ୍ଥାନରେ ରହିବାରେ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ। ସେହିଭଳି ବିଶ୍ୱବିଦ୍ୟାଳୟଗୁଡ଼ିକ ମଧ୍ୟରେ ଆଇ.ଆଇ.ଏସ୍‌ସି. (Indian Institute of Science), ବେଙ୍ଗାଲୁରୁ ପ୍ରଥମ ରହିବାରେ ବା ଜେ.ଏନ୍.ୟୁ, ହାଇଦ୍ରାବାଦ, ଦିଲ୍ଲୀ ଓ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ଭଳି କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟଗୁଡ଼ିକ ଉଚ୍ଚ ସ୍ଥାନରେ ରହିବା ମଧ୍ୟ ଅପେକ୍ଷିତ। ଏଥିସହିତ କିଛି ଘରୋଇ ବିଶ୍ୱବିଦ୍ୟାଳୟ ଓ ଇଞ୍ଜିନିୟରିଂ ଅନୁଷ୍ଠାନ ଉଚ୍ଚସ୍ଥାନ ଅଧିକାର କରିବା ଓ ଫାର୍ମାସି କ୍ଷେତ୍ରରେ ମଣିପାଲ ପ୍ରତିଷ୍ଠାନ ପ୍ରଥମ ସ୍ଥାନରେ ରହିବା କଥା ମଧ୍ୟ ସେହିଭଳି। ତେଣୁ ମୋଟାମୋଟି ଭାବରେ ଭାରତ ସରକାରଙ୍କ ଏହି ପ୍ରୟାସର ଫଳାଫଳ ମାଧ୍ୟମରେ ଆଗରୁ ଜଣାଶୁଣା ଓ ପ୍ରତୀକ୍ଷିତ କଥାରେ ସରକାରୀ ମୋହର ବାଜିଛି ମାତ୍ର।

ଏହି ମୂଲ୍ୟାୟନ ପ୍ରକ୍ରିୟାର ଅନ୍ୟ ଏକ ନିର୍ଯାସ ହେଲା ଯେ ଜନସାଧାରଣଙ୍କ ଅର୍ଥ-ପରୋକ୍ଷ ଭାବରେ ସରକାରୀ ଅନୁଦାନ ଆକାରରେ ହେଉ ବା ପ୍ରତ୍ୟକ୍ଷ ଭାବରେ

---

★ ଦୈନିକ "ସମ୍ବାଦ"; ୨୬ ଏପ୍ରିଲ ୨୦୧୬

ବେସରକାରୀ ଅନୁଷ୍ଠାନଗୁଡ଼ିକରେ ପାଉଣା ଭାବରେ ହେଉ-ଯେଉଁଠି ଅଧିକ ପରିମାଣରେ ବ୍ୟୟିତ ହେଉଛି ଓ ଯେଉଁ ଅନୁଷ୍ଠାନଗୁଡ଼ିକର ପରିଚାଳନାରେ ଶୈକ୍ଷିକ ଦୂରଦୃଷ୍ଟି ଓ ଶୃଙ୍ଖଳାଗତ ଦୃଢ଼ତା ପ୍ରଦର୍ଶିତ ହେଉଛି, ସେହି ଅନୁଷ୍ଠାନଗୁଡ଼ିକ ହିଁ ଶୈକ୍ଷିକ ଉତ୍କର୍ଷ ଲାଭ କରିବାରେ ସଫଳ ହେଉଛନ୍ତି। ଏହି ଦୁଇଟି ଦିଗରେ ମୁଖ୍ୟତଃ କେନ୍ଦ୍ର ସରକାରଙ୍କ ଅନୁଷ୍ଠାନ ଓ କିଛି ବେସରକାରୀ ଅନୁଷ୍ଠାନ ସଫଳ ହେଉଥିବାରୁ ସେହି ଅନୁଷ୍ଠାନଗୁଡ଼ିକ ହିଁ ଉଚ୍ଚସ୍ଥାନର ଅଧିକାରୀ ହେଉଛନ୍ତି।

ଉଚ୍ଚଶିକ୍ଷା କ୍ଷେତ୍ରରେ କେନ୍ଦ୍ର ଓ ରାଜ୍ୟ ସରକାରଗୁଡ଼ିକର ଭୂମିକାରେ ଥିବା ତାରତମ୍ୟ ମଧ୍ୟ ଏହି ସର୍ବେକ୍ଷଣରୁ ସ୍ପଷ୍ଟ। ରାଜ୍ୟ ସରକାରଙ୍କର ଅନୁଷ୍ଠାନଗୁଡ଼ିକର ଅବସ୍ଥା ଦୟନୀୟ। ଏ କ୍ଷେତ୍ରରେ ଆମ ରାଜ୍ୟ ଓଡ଼ିଶା ଏକ ଜ୍ୱଳନ୍ତ ଉଦାହରଣ (ଯଦିଓ ବିଭିନ୍ନ କାରଣରୁ ଆମ ବିଶ୍ୱବିଦ୍ୟାଳୟଗୁଡ଼ିକ ଜାତୀୟ ସର୍ବେକ୍ଷଣରେ ଭାଗ ନେଇପାରି ନାହାନ୍ତି)। ଓଡ଼ିଶାର ପୁରୁଣା ବିଶ୍ୱବିଦ୍ୟାଳୟଗୁଡ଼ିକରେ ଗତ ଶତାବ୍ଦୀର ଶେଷ ଦଶକ ଓ ଚଳିତ ଶତାବ୍ଦୀର ପ୍ରଥମ ଦଶକରେ ଶିକ୍ଷକ ନିଯୁକ୍ତି ବନ୍ଦ କରି ଦିଆଗଲା। କଥା କ'ଣ ନା ରାଜ୍ୟ ଅର୍ଥନୀତିକୁ ସଳଖିବାର ପ୍ରୟାସ ଚାଲିଛି। କଲେଜ ଓ ବିଶ୍ୱବିଦ୍ୟାଳୟଗୁଡ଼ିକରେ କେତେ ସଂଖ୍ୟକ ଶିକ୍ଷକ ରହିବେ ତାହା ଶିକ୍ଷାଦୀକ୍ଷା ସହ ସମ୍ପର୍କ ନ ଥିବା ସଚିବମାନେ ନିର୍ଣ୍ଣୟ କଲେ ନିଜନିଜ ଚାକିରୀର ପଦପଦବି ବଳରେ। ତେଣୁ ନିର୍ବିଚାରରେ ଶିକ୍ଷକ ପଦ ଉଚ୍ଛେଦ ହେଲା। କୁହାଗଲା 'ଶିକ୍ଷା-ସଂସ୍କାର' ଚାଲିଛି। 'ସଂସ୍କାର' ପରେ ବି ଯେତିକି ଶିକ୍ଷକ ରହିବା ଘୋଷଣା କରାଗଲା ସେତକ ମଧ୍ୟ ପୂରଣ ହେଲା ନାହିଁ। ମନ୍ତ୍ରୀ-ସଚିବଙ୍କ ଦପ୍ତରରୁ ମାତ୍ର ୩ କିଲୋମିଟର ଦୂରରେ ରାଜ୍ୟର ଏକ ଅଗ୍ରଣୀ ଅନୁଷ୍ଠାନ ବିଜେବି କଲେଜରେ ପଦାର୍ଥ ବିଜ୍ଞାନ ବିଭାଗ ଶିକ୍ଷକଶୂନ୍ୟ (ଆଜ୍ଞା, ଶୂନ !) ହେବାରୁ ଜଣେ ରସାୟନ ବିଭାଗ ଶିକ୍ଷକ ଏହି ବିଭାଗର ମୁଖ୍ୟ ଭାବରେ କାର୍ଯ୍ୟ କଲେ ! ଏମିତି ବି ଓଡ଼ିଶା ଜନସେବା ଆୟୋଗ (OPSC) ପ୍ରତିବର୍ଷ ପରୀକ୍ଷା କରି କିଛି ଛାତ୍ରଛାତ୍ରୀଙ୍କୁ ଅଧ୍ୟାପକ ଚାକିରି ଦେବାରେ ବହୁ ବର୍ଷ ଧରି ଚରମ ବିଫଳତା ପ୍ରଦର୍ଶନ କରିଆସୁଛି। ଏହା କେବଳ ଉପର ସ୍ତରର ଅବସର ଗ୍ରହଣକାରୀ କର୍ମଚାରୀଙ୍କର ଅବସର ବିନୋଦନ କେନ୍ଦ୍ର ଭାବରେ କାମ କରି ଚାଲିଛି ନୀତିଗତ ଭାବରେ 'ଜନସେବା' ଅନ୍ତରାଳରେ। ଏବେ ଓଡ଼ିଶା ଏସ୍.ଏସ୍.ବି. (Service Selection Board) ଦ୍ୱାରା ଚାଲୁ ରହିଥିବା ଅଧ୍ୟାପକ ଚୟନ ପ୍ରକ୍ରିୟା ଆଉ ଏକ ଉଦାହରଣ। ଏଥିରେ ୨୨ ବର୍ଷରୁ ୪୨ ବର୍ଷ ଯାଏ ଦୀର୍ଘ ୨୦ ବର୍ଷ ବ୍ୟବଧାନ ଥିବା ଅଧ୍ୟାପକ ଚାକିରି ଆଶାୟୀ ବ୍ୟକ୍ତିବିଶେଷ ପ୍ରାର୍ଥୀ ହୋଇଛନ୍ତି। ସେମାନଙ୍କ ନିଜ ନିଜ

ଛାତ୍ର ସମୟର ପରୀକ୍ଷା ମୂଲ୍ୟାୟନ, ଶୈକ୍ଷିକ ପ୍ରସ୍ତୁତି ଓ ପରିବେଶ ଇତ୍ୟାଦିରେ ବହୁ ତାରତମ୍ୟ ସତ୍ତ୍ୱେ ସେମାନଙ୍କୁ ଗୋଟିଏ ନିକିତିରେ ତଉଲିବାର କି ଯଥାର୍ଥତା ଅଛି ବୁଝିବା କଷ୍ଟ । ଓଡ଼ିଶା ସରକାରଙ୍କର ଦୁଇଟି ଅଗ୍ରଣୀ ଅଧ୍ୟାପକ ନିଯୁକ୍ତି ପ୍ରଦାନକାରୀ ସଂସ୍ଥାର ଅପରାଧିକ ସ୍ଥାଣୁତା ଯେ ଅଗଣିତ ମେଧାବୀ ଛାତ୍ରଛାତ୍ରୀଙ୍କ ଜୀବନକୁ ନୈରାଶ୍ୟ ମଧ୍ୟକୁ ଠେଲି ଦେଉଛି ଏହା ନିଃସନ୍ଦେହ। ଏହି ଦୁଇଟି ସଂସ୍ଥା ଅଧ୍ୟାପକ ନିଯୁକ୍ତି କ୍ଷେତ୍ରରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (UGC)ର ନିୟମ ଉଲ୍ଲଙ୍ଘନ କରୁଥିବାରୁ ଏମାନଙ୍କ ନିଯୁକ୍ତି ବିଚାରାଳୟଗୁଡ଼ିକରେ ବାତିଲ ହେବାର ଦୃଷ୍ଟାନ୍ତ ବୃଦ୍ଧି ପାଇବାରେ ଲାଗିଛି । ଏହାହିଁ ସୃଷ୍ଟି କରୁଛି ଏମାନଙ୍କ ଅସ୍ତିତ୍ୱ ଉପରେ ପ୍ରଶ୍ନବାଚୀ। ଓଡ଼ିଶା ସରକାର ୨-୩ ବର୍ଷ ତଳେ 'ରୁସା' (Rashtriya Uchattara Siksha Aviyana) ଅଧକ୍ଷ ନିଯୁକ୍ତି ବିଜ୍ଞାପନ ବାହାର କରିଥିଲେ ମଧ୍ୟ ନିଯୁକ୍ତି ପ୍ରକ୍ରିୟା ସମ୍ପୂର୍ଣ୍ଣ କରିପାରିଲେ ନାହିଁ, କିନ୍ତୁ ସେପଟେ "Fools rush in where angels fear to trade" ନ୍ୟାୟରେ ଗୋଟିଏ ପରେ ଗୋଟିଏ ବିଶ୍ୱବିଦ୍ୟାଳୟ ଖୋଲିବାରେ ବ୍ୟସ୍ତ। ଏସବୁ ସହିତ ଓଡ଼ିଶାର ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟଗୁଡ଼ିକରେ ସଂଘଟିତ ହେଉଥିବା ନକରାତ୍ମକ ଛାତ୍ର ରାଜନୀତି ଶୈକ୍ଷିକ ଉତ୍କର୍ଷର ଏକ ବାଧକ ଭାବରେ ଉଭା ହୋଇଛି । ଆଇ.ଆଇ.ଟି. ଓ ଆଇ.ଆଇ.ଏମ୍. ଭଳି ଅନୁଷ୍ଠାନଗୁଡ଼ିକରେ ଏ ପ୍ରକାର ରାଜନୀତିର ଅନୁପସ୍ଥିତି ସେଗୁଡ଼ିକୁ ଶୈକ୍ଷିକ ଉତ୍କର୍ଷ ହାସଲରେ ସହାୟକ ହେଉଛି। ଏହିଭଳି ବିଭିନ୍ନ ପ୍ରକାର ଦୁରାରୋଗ୍ୟ ବ୍ୟାଧିରେ ଆକ୍ରାନ୍ତ ରାଜ୍ୟ ସରକାରଙ୍କ ଦ୍ୱାରା ଉଚ୍ଚଶିକ୍ଷାର ଉତ୍କର୍ଷ ସାଧନ 'ନୈବଚ, ନୈବଚ' । ସଂଘୀୟ ବ୍ୟବସ୍ଥା ଆଳରେ ଉଚ୍ଚଶିକ୍ଷାକୁ ଯୁଗ୍ମ ତାଲିକା (Concurrent List)ରେ ରଖିବାର ଫଳ ଦୁଇ ନାଆରେ ଗୋଡ଼ ଦେଇଥିବା ଯାତ୍ରୀଟିର ଅବସ୍ଥା ସଦୃଶ ହେବା ହିଁ ସାର ହୋଇଛି ।

ଏବେ ଫେରିଯିବା କେନ୍ଦ୍ର ସରକାରଙ୍କ ସର୍ବେକ୍ଷଣ ପାଖକୁ, ଏହି ସର୍ବେକ୍ଷଣରେ ଦେଶର ୧୪୩୮ଟି ଇଞ୍ଜିନିୟରିଂ, ୬୦୯ଟି ମ୍ୟାନେଜ୍‌ମେଣ୍ଟ, ୪୫୪ଟି ଫାର୍ମାସି ଓ ୨୩୩ଟି ବିଶ୍ୱବିଦ୍ୟାଳୟ ଭାଗ ନେଇଥିଲେ। ଭବିଷ୍ୟତରେ ଏହା ନିଶ୍ଚିତ ଭାବରେ ଅଧିକ ବ୍ୟାପକ ହେବ ଓ ଅଧିକ ଅନୁଷ୍ଠାନ ଏହି ସର୍ବେକ୍ଷଣରେ ଭାଗ ନେବେ। ସେହି ଦୃଷ୍ଟିରୁ ଏହି ସର୍ବେକ୍ଷଣକୁ ଜନସାଧାରଣ ତଥା ଛାତ୍ରଛାତ୍ରୀଙ୍କ ଦୃଷ୍ଟିରେ ଅଧିକ ଅର୍ଥପୂର୍ଣ୍ଣ କରିବା ପାଇଁ ଆଉ କେତୋଟି ଦିଗ ପ୍ରତି ଦୃଷ୍ଟି ଦିଆଯିବା ଆବଶ୍ୟକ।

ପ୍ରଥମତଃ ଆଗରୁ ସୂଚନା ଦିଆଯାଇଥିବା ଦୃଷ୍ଟିକୋଣରୁ ପ୍ରତି ଅନୁଷ୍ଠାନର ବାର୍ଷିକ ବଜେଟ୍ ବା କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ବା ଅନ୍ୟ ସଂସ୍ଥାମାନଙ୍କଠାରୁ ମିଳୁଥିବା

ଅନୁଦାନର ସୂଚନା ରହିବା ଜରୁରୀ। ତା'ହେଲେ ଜନସାଧାରଣ ଜାଣିପାରିବେ ଯେ ସେମାନଙ୍କର କେତେ ଅର୍ଥ ଅନୁଷ୍ଠାନଗୁଡ଼ିକରେ ବିନିଯୋଗ ହେଉଛି ଓ ତା' ପ୍ରତିବଦଳରେ ଅନୁଷ୍ଠାନଟି କ'ଣ ଓ କିଭଳି କାମ କରୁଛି। ଏଇ ଯେମିତି ବେଙ୍ଗାଲୁରୁର ୧୯୦୯ରେ ଜାମ୍‌ସେଦ୍‌ଜୀ ଟାଟାଙ୍କ ଦ୍ୱାରା ପ୍ରତିଷ୍ଠିତ ମର୍ଯ୍ୟାଦାସମ୍ପନ୍ନ ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସାଇନ୍ସକୁ ବିଶ୍ୱବିଦ୍ୟାଳୟର ମାନ୍ୟତା ଦିଆଯାଇ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ମୋଟ୍ ଅନୁଦାନର ଶତକଡ଼ା ୭୦-୮୦ ଭାଗ ଦିଆଯାଏ। ଏହି ଅନୁଷ୍ଠାନର ବାର୍ଷିକ ଲାଇବ୍ରେରୀ ବଜେଟ୍ ପ୍ରାୟ ୧୦ କୋଟି ଟଙ୍କା। ସେହି କ୍ଷେତ୍ରରେ ଗୋଟିଏ ରାଜ୍ୟ ବିଶ୍ୱବିଦ୍ୟାଳୟ ପାଇଁ ବିଶ୍ୱବିଦ୍ୟାଳୟ ଆୟୋଗର ପଞ୍ଚବାର୍ଷିକ ଅନୁଦାନ ପ୍ରାୟ ସେହି ୧୦ କୋଟି ଟଙ୍କା! ତେଣୁ ଭିତ୍ତି ଭୂମିର ଉନ୍ନତି ତଥା ଗବେଷଣାର ଉତ୍କର୍ଷରେ ଏହି ପ୍ରଭେଦର ପ୍ରଭାବ ପଡ଼ିବା ଅବଶ୍ୟମ୍ଭାବୀ।

ଦ୍ୱିତୀୟତଃ ସର୍ବେକ୍ଷଣ ଆହୁରି ଅର୍ଥ ପୂର୍ଣ୍ଣ ହେବ, ଯଦି ଅନୁଷ୍ଠାନଗୁଡ଼ିକର ସାମଗ୍ରୀକ ତୁଳନାକୁ ସେଗୁଡ଼ିକରେ ସମ୍ପାଦିତ ହେଉଥିବା ବିଷୟ ବସ୍ତୁଗୁଡ଼ିକରେ ଶିକ୍ଷାଦାନର ଉତ୍କର୍ଷକୁ ସମ୍ପ୍ରସାରିତ କରାଯାଏ, ଅର୍ଥାତ୍ ସର୍ବେକ୍ଷଣ ଅନୁଷ୍ଠାନଭିତ୍ତିକ ହେବା ସହ ବିଷୟବସ୍ତୁଭିତ୍ତିକ ହେବା ମଧ୍ୟ ଏକ ଆବଶ୍ୟକତା। ଯେହେତୁ ଛାତ୍ରଟିଏ ଗୋଟିଏ ଅନୁଷ୍ଠାନକୁ କେବଳ ଗୋଟିଏ ମାତ୍ର ବିଷୟରେ ଉଚ୍ଚଶିକ୍ଷା ପାଇଁ ବା ଗବେଷଣା ପାଇଁ ଯାଇଥାଏ, ତା'ର ନିର୍ବାଚିତ ବିଷୟରେ କେଉଁ ଅନୁଷ୍ଠାନର ତୁଳନାତ୍ମକ ମାନ୍ୟତା କେତେ ଜାଣିଲେ କେଉଁ କେଉଁ ଅନୁଷ୍ଠାନକୁ ଆବେଦନ କରିବ ବା କେଉଁଠି ନାମ ଲେଖାଇବ, ତାହା ନିର୍ଣ୍ଣୟ କରିବା ସହଜ ହେବ।

ତୃତୀୟତଃ ବିଭିନ୍ନ ସର୍ବେକ୍ଷଣରେ ଅନୁଷ୍ଠାନଗୁଡ଼ିକର କୋଠାବାଡ଼ିର ଝକଚକ୍ୟ ଓ ଭିତ୍ତିଭୂମିର ଆଧୁନିକତା ଉପରେ ଯେତିକି ଗୁରୁତ୍ୱ ଦିଆଯାଇଥାଏ, ଛାତ୍ରଛାତ୍ରୀମାନଙ୍କର ଶୈକ୍ଷିକ ସଫଳତା ବା ଦେଶର ପ୍ରଗତିରେ ସେମାନଙ୍କ ଅବଦାନ ଉପରେ ସେତିକି ଗୁରୁତ୍ୱ ନ ଥିବା ଲକ୍ଷ୍ୟ କରାଯାଇଥାଏ। ଗୋଟିଏ ଜନମଙ୍ଗଳ ଦେଶର ଶିକ୍ଷା ବ୍ୟବସ୍ଥା ଏକ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ। ସାମାଜିକ ପରିବେଶକୁ ଏକ ନୂତନ ଓ ଉନ୍ମୀଳିତ ଦୃଷ୍ଟିକୋଣ ପ୍ରଦାନ କରିବାଠାରୁ ଆରମ୍ଭ କରି ଉଦ୍ଭାବନ, ଆବିଷ୍କାର ଓ ନୂତନ ଚିନ୍ତାଧାରା ପ୍ରବର୍ତ୍ତନ ଭଳି ଶ୍ରେଷ୍ଠ ବୌଦ୍ଧିକ ଅବଦାନ ମାଧ୍ୟମରେ ସମାଜର କଲ୍ୟାଣ ସାଧନ ତଥା ଦେଶର ଗୌରବ ବୃଦ୍ଧି ଏହି ପ୍ରକ୍ରିୟାର ଅନ୍ତିମ ଲକ୍ଷ୍ୟ। ସେହି ଦୃଷ୍ଟିକୋଣ ମଧ୍ୟ ଦେଶର ଶିକ୍ଷାନୁଷ୍ଠାନଗୁଡ଼ିକର ମୂଲ୍ୟାୟନ ପ୍ରକ୍ରିୟାରେ ପ୍ରତିଫଳିତ ହେବା ବିଧେୟ। ଏହି ପରିପ୍ରେକ୍ଷୀରେ ଉତ୍କଳ ବିଶ୍ୱବିଦ୍ୟାଳୟ ପଦାର୍ଥ ବିଜ୍ଞାନ ବିଭାଗର ଛାତ୍ରଛାତ୍ରୀମାନଙ୍କର

କୃତିତ୍ୱର ଅବତାରଣା ଅପ୍ରାସଙ୍ଗିକ ହେବ ନାହିଁ। ଏହି ବିଭାଗ ୧୯୬୭ ରୁ ଜନ୍ମ ନେଇ ଆଜି ଅର୍ଦ୍ଧ ଶତାବ୍ଦୀ ପୂର୍ଣ୍ଣ କରିବାର ପାଦ ଦେଶରେ ଅବତୀର୍ଣ୍ଣ। ପ୍ରଫେସର ବିଭୂତି ଭୂଷଣ ଦେଓଙ୍କ ଯୋଗଦାନ ଫଳରେ ଏହି ବିଭାଗରେ ହିଁ ଓଡ଼ିଶାରେ ଆଧୁନିକ ପଦାର୍ଥ ବିଜ୍ଞାନ ଗବେଷଣାର ମୂଳଦୁଆ ପଡ଼ିଥିଲା। ତତ୍କାଳୀନ ଶିକ୍ଷାମନ୍ତ୍ରୀ ବନମାଳୀ ପଟ୍ଟନାୟକଙ୍କ ମାନସସନ୍ତାନ ଭାବେ ଭୁବନେଶ୍ୱରରେ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଫିଜିକ୍ସର ପ୍ରାରମ୍ଭିକ କାର୍ଯ୍ୟ ପ୍ରଫେସର ଦେଓ ସମ୍ଭାଳି ଥିଲେ। ପରବର୍ତ୍ତୀ କାଳରେ ପ୍ରଫେସର ତ୍ରିଲୋଚନ ପ୍ରଧାନଙ୍କ ଅଧ୍ୟକ୍ଷତାରେ ସେଠାରେ ମଧ୍ୟ ପଦାର୍ଥ ବିଜ୍ଞାନର ଗବେଷଣା କାର୍ଯ୍ୟ ଆଗେଇ ଚାଲିଲା ଓ ଓଡ଼ିଶା ଆନ୍ତର୍ଜାତିକ ସ୍ତରରେ ପଦାର୍ଥ ବିଜ୍ଞାନ ଗବେଷଣା କ୍ଷେତ୍ରରେ ସୁନାମ ଅର୍ଜନ କଲା। ପ୍ରଫେସର ଦେଓଙ୍କ ଦୂରଦୃଷ୍ଟି ସମ୍ପନ୍ନ ନେତୃତ୍ୱରେ ପଦାର୍ଥ ବିଜ୍ଞାନ ବିଭାଗରେ ଅଧ୍ୟୟନ, ଅଧ୍ୟାପନା ଓ ଅଧ୍ୟବସାୟର ଯେଉଁ ପରମ୍ପରା ସୃଷ୍ଟି ହୋଇଛି ତା'ର ଫଳସ୍ୱରୂପ ପୁରାତନ ଛାତ୍ରଛାତ୍ରୀଙ୍କ ମଧ୍ୟରୁ ଦୁଇଜଣ କୁଳପତି ହେବା ସହ ତିନିଜଣ ବିଜ୍ଞାନ କ୍ଷେତ୍ରରେ ଦେଶର ସର୍ବୋଚ୍ଚ ଭଟ୍ଟନଗର ପୁରସ୍କାର ବିଜେତା ହୋଇପାରିଛନ୍ତି। ସେଥି ସହିତ ଟାଟା ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଫଣ୍ଡାମେଣ୍ଟାଲ୍ ରିସର୍ଚ୍ଚରେ ଚାରିଜଣ, ଇଣ୍ଟର ୟୁନିଭରସିଟି ସେଣ୍ଟର ଫର୍ ଆଷ୍ଟ୍ରୋନୋମି ଆଷ୍ଟ୍ରୋଫିଜିକ୍ସ, ପୁନେରେ ଜଣେ, ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଫିଜିକ୍ସ, ଭୁବନେଶ୍ୱରରେ ୪ ଜଣ, ନାଇସର (NISER), ଭୁବନେଶ୍ୱରରେ ୭ ଜଣ; ଏନ୍‌ଆଇଟି ରାଉରକେଲାରେ ୮ ଜଣ, ଭୋପାଳ, ତ୍ରିବାନ୍ଦ୍ରମ୍ ଓ କଲିକତା ଆଇସର୍ (IISER)ରେ ଜଣେ ଲେଖାଏଁ, ଆଇ.ଆଇ.ଟି., ଭୁବନେଶ୍ୱର ଓ ଦିଲ୍ଲୀରେ ତିନି ତିନି ଜଣ, ଆଇ.ଆଇ.ଟି., ମାଡ୍ରାସ୍ ଓ ବମ୍ବେରେ ଦୁଇଜଣ ଲେଖାଏଁ, ଆଇ.ଆଇ.ଟି., ଗୌହାଟୀ, ରୁର୍କି, ହାଇଦ୍ରାବାଦ ଓ ଇନ୍ଦୋରରେ ଜଣେ ଲେଖାଏଁ, ମାଡ୍ରାସର ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମାଥମେଟିକାଲ୍ ସାଇନ୍‌ସରେ ଜଣେ, ଦିଲ୍ଲୀର ନେସ୍‌ନାଲ ଫିଜିକାଲ ଲାବୋରେଟୋରି ଓ ନେସ୍‌ନାଲ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଇମ୍ୟୁନୋଲୋଜିରେ ଜଣେ ଲେଖାଏଁ, ହାଇଦ୍ରାବାଦ, ଦିଲ୍ଲୀ, ବିଏଚ୍‌ୟୁ ଓ ଜେଏନ୍‌ୟୁ ଭଳି କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟଗୁଡ଼ିକରେ ଜଣେ ଲେଖାଏଁ, ଭାବା ଆଟମିକ ରିସର୍ଚ୍ଚ ସେଣ୍ଟର (BARC) ଓ ଜାତୀୟ ନିରାପତ୍ତା ଗବେଷଣା ଓ ଉନ୍ନୟନ ସଂସ୍ଥା (DRDO)ରେ ପ୍ରାୟ ୫୦ ଜଣ ଓ ଉତ୍କଳ ବିଶ୍ୱବିଦ୍ୟାଳୟରେ ୫ ଜଣ ବରିଷ୍ଠ ଗବେଷକ ଓ ଅଧ୍ୟାପକ ଭାବରେ ଅବସ୍ଥାପିତ ହୋଇଛନ୍ତି। ଛାତ୍ରଛାତ୍ରୀ ତଥା ଶିକ୍ଷକମାନେ ଜାପାନ, ୟୁରୋପ ଓ ଆମେରିକାର ବିଭିନ୍ନ ମର୍ଯ୍ୟାଦାସମ୍ପନ୍ନ ଗବେଷଣା କେନ୍ଦ୍ରଗୁଡ଼ିକରେ ଗବେଷଣା ଓ ଅଧ୍ୟୟନ କରି ଶିକ୍ଷାଦାନରେ ଉତ୍କର୍ଷର ଅଧିକାରୀ ହୋଇଛନ୍ତି। ଏହାହିଁ

ବିଭାଗର ଛାତ୍ରଛାତ୍ରୀମାନଙ୍କର ସଫଳତାର ମୂଳ କଥା। ଏଥି ସହିତ ବିଭାଗର ଅନେକ ଛାତ୍ରଛାତ୍ରୀ ଭାରତୀୟ ପ୍ରଶାସନିକ ସେବାର ବିଭିନ୍ନ ବିଭାଗ, ବ୍ୟାଙ୍କ, ଟେଲିଫୋନ୍, ଏଲ୍.ଆଇ.ସି. ଭଳି ରାଷ୍ଟ୍ରୀୟ ତଥା ଇନ୍‌ଫୋସିସ୍, ଟି.ସି.ଏସ୍. ଭଳି ଖ୍ୟାତନାମା ବେସରକାରୀ ସୂଚନାବିଜ୍ଞାନ ଉଦ୍ୟୋଗଗୁଡ଼ିକରେ ଗୁରୁତ୍ୱପୂର୍ଣ୍ଣ ପଦରେ ଅବସ୍ଥାପିତ ହୋଇଛନ୍ତି। ଏ ଉଦାହରଣ ଅନେକ ଅନୁଷ୍ଠାନ ଓ ବିଭାଗ ପ୍ରତି ମଧ୍ୟ ପ୍ରଯୁଜ୍ୟ। ତେଣୁ ଦ୍ୱିରୁକ୍ତି ସତ୍ତ୍ୱେ ଉଲ୍ଲେଖ ପ୍ରୟୋଜନ ଯେ ଶୈକ୍ଷିକ ଉତ୍କର୍ଷର ତୁଳନାତ୍ମକ ମୂଲ୍ୟାୟନରେ ଅନୁଷ୍ଠାନର ଛାତ୍ରଛାତ୍ରୀମାନଙ୍କର ସଫଳତା ତଥା ସମାଜ ପ୍ରତି ଅବଦାନ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସୂଚକ ଭାବେ ବ୍ୟବହୃତ ହେବା ବିଧେୟ।

. ପରିଶେଷରେ ଆମର ସ୍ମରଣ ରହିବା ଉଚିତ ଯେ ଉଚ୍ଚଶିକ୍ଷାର ସର୍ବେକ୍ଷଣ ଏକ ସ୍ୱ-ନିବିଷ୍ଟ ନିରୋଳା ବ୍ୟାୟାମ ନୁହେଁ; ଲକ୍ଷ୍ୟ ପ୍ରାପ୍ତିର ଏକ ସାଧନ ମାତ୍ର। ତେଣୁ ସର୍ବେକ୍ଷଣ ଆଧାରରେ ଅନୁଷ୍ଠାନଗୁଡ଼ିକ ନିଜକୁ ସଜାଡ଼ିବାର ପ୍ରୟାସ ଯେତିକି ଜରୁରୀ ଉଭୟ କେନ୍ଦ୍ର ଓ ରାଜ୍ୟ ସରକାରଗୁଡ଼ିକ ମଧ୍ୟ ଫଳାଫଳର ସମୀକ୍ଷା କରି ପ୍ରଚଳିତ ନୀତିରେ ଭୁଲ୍ ଭ୍ରାନ୍ତିଗୁଡ଼ିକର ସଂଶୋଧନ କରିବା ମଧ୍ୟ ସେତିକି ଜରୁରୀ। ଏକଥା ମଧ୍ୟ ସ୍ମରଣ ରହିବା ଆବଶ୍ୟକ ଯେ ଦେଶର ଶିକ୍ଷା ବ୍ୟବସ୍ଥା ପ୍ରାଥମିକ, ମାଧ୍ୟମିକ ଓ ଉଚ୍ଚଶିକ୍ଷାକୁ ନେଇ ଏକ ସମନ୍ୱିତ ବ୍ୟବସ୍ଥା; ଗୋଟିଏ ଦୃଷ୍ଟିକୋଣ ବା 'କଚ୍ଛବଟ'ର ତିନିଟି ନିବିଡ଼ ଭାବରେ ସଂଶ୍ଲିଷ୍ଟ ପରିପୂରକ ଅଂଶ। ଯେଉଁ ଦେଶର ପ୍ରାଥମିକ ଶିକ୍ଷା ଅବହେଳିତ ସେଠି ଉଚ୍ଚଶିକ୍ଷାର ଉତ୍କର୍ଷ ଖୋଜିବା ଶୁଷ୍କ ଗଙ୍ଗୋତ୍ରୀକୁ ନେଇ କୂଳ ଲଘୁ ଥିବା କଳକଲ୍ଲୋଳିନୀ ଗଙ୍ଗା ଖୋଜିବା ସଦୃଶ। ତେଣୁ ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷାରେ ଉତ୍କର୍ଷ ପ୍ରତି ପ୍ରଗାଢ଼ ଧ୍ୟାନ ଦେଇ ଉଚ୍ଚଶିକ୍ଷାରେ ଉତ୍କର୍ଷ ପାଇଁ ନିଷ୍ଠାପୂର୍ଣ୍ଣ ପ୍ରଚେଷ୍ଟା ଆଜିର ଆହ୍ୱାନ। ଏହି ଆହ୍ୱାନର ମୁକାବିଲାରେ ସମଗ୍ର ଦେଶରେ ସମନ୍ୱିତ ଭାବରେ ଅନ୍ତର୍ଜାତୀୟ ଦିଗାଭିମୁଖୀ ଉତ୍ତରଣ ନିମିତ୍ତ ଉଚ୍ଚଶିକ୍ଷାକୁ କେନ୍ଦ୍ରୀୟ-ତାଲିକାଭୁକ୍ତ କରିବା ଓ ଦେଶରେ ସର୍ବଭାରତୀୟ ଶିକ୍ଷା ସେବା (Indian Education Service) ପ୍ରବର୍ତ୍ତନ ଅତ୍ୟନ୍ତ ପ୍ରୟୋଜନ ମନେହୁଏ।



# ସୁଶିକ୍ଷାରେ ବାଧକ ସରକାର

ଶିକ୍ଷା ନିର୍ଣ୍ଣୟ କରେ ସଭ୍ୟତାର ସ୍ତର। ଶିକ୍ଷାକୁ ନେଇ ଦେଶର ପ୍ରଗତି, ସମାଜର ଉନ୍ନତି ଓ ବ୍ୟକ୍ତିବିଶେଷଙ୍କର ବୈଷୟିକ, ଆଧ୍ୟାତ୍ମିକ ଓ ମାନସିକ ଉତ୍ତରଣ ନିର୍ଦ୍ଧାରିତ ହୁଏ। ଏହାହିଁ ମାନବ ଇତିହାସର ନିର୍ଯ୍ୟାସ ଓ ନିର୍ଣ୍ଣୟ।

ଆଧୁନିକ ପୃଥିବୀ ଉପରୋକ୍ତ ନିର୍ଣ୍ଣୟର ବଳିଷ୍ଠ ଉଦାହରଣ। ଆଜି ଯେଉଁ ଦେଶର ଶିକ୍ଷାପଦ୍ଧତି ଯେତେ ଉତ୍କୃଷ୍ଟ ଓ ଯେଉଁ ଦେଶର ଯେତେ ଅଧିକ ଲୋକ ଶିକ୍ଷିତ ସେ ଦେଶ ହିଁ ସେହି ଅନୁପାତରେ ଉନ୍ନତ, ଦାରିଦ୍ର୍ୟମୁକ୍ତ, ଶକ୍ତିଶାଳୀ ଓ ଜ୍ଞାନାଶ୍ରୟୀ। ସେହି ଦେଶର ଲୋକମାନେ ନୂତନ ଭାବନା ଓ ନୂତନ ଜ୍ଞାନ ସୃଷ୍ଟିକର୍ତ୍ତା ଶ୍ରେୟର ଅଧିକାରୀ, କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ସବୁକିଛି ଜାଣି ମଧ୍ୟ ଆମ ଦେଶର ତୃଣମୂଳସ୍ତରର ଶିକ୍ଷା ବ୍ୟବସ୍ଥାରେ ଉଜାଣି ବହୁଛି। ଆହୁରି ଆଶ୍ଚର୍ଯ୍ୟର କଥା ଯେ ଆମର ଏ ବିପରୀତାଭିମୁଖୀ ଶିକ୍ଷା ବ୍ୟବସ୍ଥାର ମଙ୍ଗ ଧରିଛନ୍ତି ଖୋଦ୍ ସରକାର। "ଗଣତାନ୍ତ୍ରିକ ପଦ୍ଧତି"ରେ ନିର୍ବାଚନ ହୋଇ (ଯଦି ନିର୍ବାଚନ ସମୟରେ ଲୋକପ୍ରତି ବା ଭୋଟ୍ ଖଣ୍ଡେ ପାଇଁ ବଣ୍ଟାଯାଉଥିବା ଟଙ୍କାକୁ ଆମେ ବିଚାରକୁ ନ ନେଉ) ଲୋକଙ୍କର ଭବିଷ୍ୟତ ନଷ୍ଟ କରିବା ମାଧ୍ୟମରେ ସର୍ବନାଶ କରିଚାଲିଛନ୍ତି ସରକାରଗୁଡ଼ିକ।

କଥା ଆରମ୍ଭ ହେଉ ପ୍ରାଥମିକ ଶିକ୍ଷାଠାରୁ। ଓଡ଼ିଶାର କୌଣସି ସରକାରୀ ବିଦ୍ୟାଳୟରେ କୌଣସି ଶ୍ରେଣୀରେ ୧୫-୨୦ରୁ ଅଧିକ ପିଲା ନାହାନ୍ତି। ସରକାରୀ ନୀତି (ବା ଅନୀତି) ଅନୁସାରେ ୪୦ ଜଣ ପିଲାରେ ଜଣେ ଶିକ୍ଷକ ରହିବ। ତେଣୁ ଜଣେ ଶିକ୍ଷକ ୨-୩ ଶ୍ରେଣୀର ଛାତ୍ରଙ୍କୁ ପଢ଼ାଇବା ବର୍ତ୍ତମାନ ସମୟର ସାଧାରଣ ଦୃଶ୍ୟ। ଏହାର ଏକମାତ୍ର ସମାଧାନ ହେଲା ଶିକ୍ଷକଟି ମଝିରେ ବସି ତା'ଚାରି ଦିଗରେ ଚାରିଶ୍ରେଣୀର ଛାତ୍ରଙ୍କୁ ବସେଇ ପଢ଼େଇବ।

ଏ ପ୍ରକାର ଅଭିନବ ଶିକ୍ଷାଦାନ ବ୍ୟବସ୍ଥା ସହ ମନ୍ତ୍ରୀ-ସଚିବ-ଅଧ୍ୟୁଷିତ ଶିକ୍ଷା ବ୍ୟବସ୍ଥାରେ ଶିକ୍ଷକଙ୍କୁ ହଜାର ପ୍ରକାର ଅଶୈକ୍ଷିକ କାମ ସହ ମଧ୍ୟାହ୍ନ ଭୋଜନ ବ୍ୟବସ୍ଥା

---

★ ଦୁନ୍ଦୁଭି, ଉତ୍କଳ ବିକାଶ ପରିଷଦ, ବିଷୁବ ବିଶେଷାଙ୍କ, ୨୦୧୬

ମଧ୍ୟ ବୁଝିବାକୁ ହେବ, ସରକାରଙ୍କର ବିଭିନ୍ନ ମାଗଣା ବଣ୍ଟନ ବ୍ୟବସ୍ଥାର ଟିକିନିଖି ହିସାବ କିତାବ ବୁଝିବାକୁ ହେବ ଇତ୍ୟାଦି ଇତ୍ୟାଦି। କୌତୂହଳର ବିଷୟର କଥା ଯେ ଏ ମାଗଣା ଅନୁଦାନ ଭିତରେ ପ୍ରତି ବିଦ୍ୟାଳୟକୁ କଳାପଟା, ଗ୍ଲୋବ୍ ବା ପୁସ୍ତକାଗାର ପାଇଁ ପୁସ୍ତକ ବଣ୍ଟନର ବ୍ୟବସ୍ଥା ନ ଥାଏ। ବହୁ ରୋଚକ ସ୍ଲୋଗାନ୍ ସତ୍ତ୍ୱେ ଏ ପର୍ଯ୍ୟନ୍ତ ଶତକଡ଼ା ୫୦-୬୦ ଭାଗ ସ୍କୁଲକୁ ଛାତ୍ରଛାତ୍ରୀଙ୍କ ପାଇଁ ଅଲଗା ଶୌଚାଳୟ, ସ୍କୁଲର ପାଚେରୀ, ବିଦ୍ୟୁତ୍ ସଂଯୋଗ ବା ଖେଳପଡ଼ିଆର ବନ୍ଦୋବସ୍ତ ହୋଇପାରୁ ନାହିଁ। ଏମିତି କେହି ମନ୍ତ୍ରୀ ବା ସଚିବ ଆଜି ପର୍ଯ୍ୟନ୍ତ ରାଜ୍ୟ ଭାଗ୍ୟରେ ଜୁଟିଲେ ନାହିଁ ଯେ ପ୍ରତିବଦ୍ଧତା ସହ ଏକ ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ଏସବୁ କରାଇପାରିଲେ। ଫଳତଃ ଆଜି ଏକବିଂଶ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧିରେ ଆମେ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ଏକ ଲଜ୍ଜ୍ୟାକର ପରିସ୍ଥିତି ଭିତରେ ବୁଡ଼ି ରହିଛୁ। ସର୍ବଶିକ୍ଷା ଅଭିଯାନର ପାଣି ପରି ବୋହିଯାଉଥିବା କୋଟିକୋଟି ଟଙ୍କାକୁ ଦଳେ ସ୍ୱାର୍ଥାନ୍ୱେଷୀ କର୍ମଚାରୀ, ବିଶେଷକରି ଉପର ସ୍ତରର କର୍ମଚାରୀମାନେ ଆତ୍ମସାତ୍ କରିବାରେ ଲାଗିଛନ୍ତି।

ସରକାରୀ କୁକର୍ମର ଫଳସ୍ୱରୂପ ପ୍ରାଥମିକ ଶିକ୍ଷା ଘୁଞ୍ଚିଯାଉଛି ଇଂରାଜୀ ମାଧ୍ୟମ ବେସରକାରୀ ବିଦ୍ୟାଳୟଗୁଡ଼ିକର ପରିସରକୁ। ବର୍ତ୍ତମାନ ତ କ'ଣ ଗଳିକନ୍ଦିରେ ସେଣ୍ଟ୍ ଜାଭିୟର ହାଇସ୍କୁଲ ଖୁନ୍ଦି ହୋଇଗଲେଣି। ଶିକ୍ଷା କ୍ଷେତ୍ରରେ ସରକାରଙ୍କ ଅବର୍ତ୍ତମାନତାରୁ ସୃଷ୍ଟି ହେଉଥିବା ଅନ୍ଧକାର ଭିତରେ କେବଳ ସରସ୍ୱତୀ ଶିଶୁ ମନ୍ଦିରଗୁଡ଼ିକ ଆଶାର ବର୍ତ୍ତିକା ଭାବରେ ଉଭା ହୋଇଛନ୍ତି।

ସରକାରୀ ଚାକିରିଆ ଓ ସରକାରୀ ଶିକ୍ଷାବିତ୍‌ମାନେ ଏ ପର୍ଯ୍ୟନ୍ତ ବୁଝିପାରୁ ନାହାନ୍ତି ଯେ, (୧) ଅନ୍ତତଃ ପକ୍ଷେ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷାଦାନର ମାଧ୍ୟମ କେବଳ ମାତୃଭାଷା ହିଁ ହେବା ଉଚିତ, (୨) ପ୍ରାଥମିକ ସ୍ତରରେ ପ୍ରତି ବିଦ୍ୟାଳୟରେ ଯେତୋଟି ଶ୍ରେଣୀ ସେତିକି ଜଣ ଶିକ୍ଷକ ଓ ତା' ବ୍ୟତୀତ ଜଣେ ପ୍ରଧାନଶିକ୍ଷକ ରହିବା ଅତ୍ୟାବଶ୍ୟକ, (୩) ପ୍ରତ୍ୟେକ ଶିକ୍ଷକଙ୍କ ଦରମା ହାରରେ ସମାନତା ରହିବା ଅପରିହାର୍ଯ୍ୟ, (୪) ତଳ ଶ୍ରେଣୀଗୁଡ଼ିକରେ ଘରେ କରି ଆଣିବା ପାଇଁ କିଛି ପାଠ (Homework) ଦିଆଯିବା ଉଚିତ ନୁହେଁ ଓ (୫) କିଛିବି ପାଠ ପିଲାମାନଙ୍କୁ ଘୋଷି ମନେରଖିବା ପାଇଁ ଦିଆଯିବା ଉଚିତ ନୁହେଁ କି ସେଥିପ୍ରତି ପିଲାମାନଙ୍କୁ ଉତ୍ସାହିତ କରିବା ଉଚିତ ନୁହେଁ ଇତ୍ୟାଦି। ଏହାହିଁ ପ୍ରାଥମିକ ସ୍ତରରେ ଉତ୍କୃଷ୍ଟ ଶିକ୍ଷାଦାନ ପ୍ରଣାଳୀର ସର୍ବନିମ୍ନ ଆବଶ୍ୟକତା ବୋଲି ସମସ୍ତ ବୈଜ୍ଞାନିକ, ମନସ୍ତାତ୍ତ୍ୱିକ ଗବେଷଣାର ନିଷ୍କର୍ଷ। ପୃଥିବୀର ଉନ୍ନତ ଦେଶମାନଙ୍କରେ ମଧ୍ୟ ଏହି ପ୍ରଣାଳୀ ଅନୁସୃତ, କିନ୍ତୁ ଆମ କଥା ତ

ନିଆରା। ଆମେ ନିଜକୁ ନିଜେ ସବ୍‌ଜନତା ଭାବରେ ଡିଣ୍ଡିମ ପିଟୁଥିବାବେଳେ ନା ପ୍ରାଥମିକ ବିଦ୍ୟାଳୟଗୁଡ଼ିକରେ ସର୍ବନିମ୍ନ ଭିତ୍ତିଭୂମି ସୃଷ୍ଟି କରିବାର ପ୍ରତିଶ୍ରୁତିଭରା ୨୦୦୯ ଶିକ୍ଷା ଅଧିକାର ନୀତିକୁ ପାଳନ କରିବାର ସାମାନ୍ୟତମ ମନୋବୃତ୍ତି ପ୍ରଦର୍ଶନ କରୁଛୁ ନା ଉତ୍ତମ ଶିକ୍ଷାଦାନ ପ୍ରଣାଳୀ ଅନୁସରଣ କରିବାରେ ଆନ୍ତରିକତା ଦେଖାଉଛୁ। ସାରା ଦୁନିଆରେ ଲୋକହସା ହେବାର ଡର ବା ଲଜ୍ଜ୍ୟାବୋଧ ମଧ୍ୟ ଆମର ନାହିଁ।

ସେହିଭଳି ମାଧ୍ୟମିକ ଶିକ୍ଷାସ୍ତରରେ ମଧ୍ୟ ଆମେ ଅତି ଆଧୁନିକ ହେବାର ଆଳରେ ଗଣିତ ଇଚ୍ଛାଧୀନ ବିଷୟକୁ ଉଠେଇ ଦେଲୁ। ଇଂରାଜୀ ପାଠକୁ ୨୦୦ରୁ ୧୦୦ ନମ୍ବର କରି ଦେଲୁ। ଏବେ ଦଳେ କାନ୍ଦୁଛନ୍ତି ଯେ ଅଷ୍ଟମ ଶ୍ରେଣୀ ପିଲା ଦ୍ବିତୀୟ ଶ୍ରେଣୀର ଅଙ୍କ କରି ପାରୁନି, ଓଡ଼ିଆ ଶବ୍ଦର ଶୁଦ୍ଧ ବନାନ ଲେଖିପାରୁନି; ଇଂରାଜୀ ଅବସ୍ଥା ତ ଆହୁରି ସଙ୍ଗୀନ୍ ଇତ୍ୟାଦି ଇତ୍ୟାଦି। କୌତୁହଳର ବିଷୟ ହେଉଛି ଏହି ଦଳକ ହିଁ "ଡାଆଣୀ" ହୋଇ ସାଧାରଣ ଶିକ୍ଷା ବ୍ୟବସ୍ଥାକୁ ତଳିତଳାନ୍ତ କରିଛନ୍ତି ଓ "ବିଲେଇ ଆଖିବୁଜି ଦୁଧ ପିଇବା" ପରି "ଗୁଣିଆ" ହୋଇ ଝାଡୁଛନ୍ତି ବୋଲି ଅନ୍ୟମାନଙ୍କ ଆଗରେ ନିଜ ଭାବମୂର୍ତ୍ତି ସୃଷ୍ଟି କରିବାରେ ଲାଗିଛନ୍ତି।

ମାଧ୍ୟମିକ ବିଦ୍ୟାଳୟଗୁଡ଼ିକରେ ମଧ୍ୟ ଯୋଗ୍ୟ ଶିକ୍ଷକଙ୍କ ଅଭାବ। ଯେଉଁ ଶିକ୍ଷକମାନେ ନିଯୁକ୍ତି ପାଉଛନ୍ତି ସେମାନଙ୍କ ମଧ୍ୟରୁ ଶତକଡ଼ା ୧୦-୧୫ରୁ ଅଧିକ ପ୍ରାଦେଶିକ ଶିକ୍ଷକ ଯୋଗ୍ୟତା ପରୀକ୍ଷା (O.T.E.T.)ରେ ଉତ୍ତୀର୍ଣ୍ଣ ହୋଇପାରୁ ନାହାନ୍ତି। ସେମାନଙ୍କ ପାରଦର୍ଶିତାର ଅଭାବ ହିଁ ଆମ ଦେଶର ପ୍ରଚଳିତ "ଅତ୍ୟାଧୁନିକ" ଶିକ୍ଷା ବ୍ୟବସ୍ଥାର ଶ୍ରେଷ୍ଠ ପ୍ରମାଣପତ୍ର, କିନ୍ତୁ ସରକାର ଖୁସ୍ ଓ ଲୋକମାନେ ବି ଖୁସ୍। ବର୍ତ୍ତମାନର ଜ୍ଞାନ ଯୁଗରେ ଆମ ଶୈକ୍ଷିକସ୍ଥିତି ଓ ମାନସିକ ପ୍ରବୃତ୍ତି ସବୁକିଛି ପ୍ରହେଳିକାମୟ।

ଷଷ୍ଠ ଓ ସପ୍ତମ ଦରମା କମିସନ୍ ଯେଉଁଭଳି ଭାବରେ ଦରମାହାରକୁ ବୃଦ୍ଧି କରିବାରେ ଲାଗିଛନ୍ତି, ସେଥିରେ ପ୍ରାଦେଶିକ ସରକାରଗୁଡ଼ିକ ମଧ୍ୟ ଉଚିତ ଦରମା ଦେଇ ଶିକ୍ଷକ ନିଯୁକ୍ତି କରିବା ଆହୁରି ଜଟିଳ ହୋଇପଡ଼ିବ। ସାମ୍ ପେଟ୍ରୋଡ଼ାଙ୍କ ଭଳି 'ଶିକ୍ଷାବିତ୍' ଓ 'ଉପଦେଷ୍ଟା'ମାନଙ୍କର ତ କହିବା କଥା ଯେ ବିନା ଶିକ୍ଷକରେ ପାଠପଢ଼ା ହୋଇପାରିବ; ଏପରିକି ଗଣିତ ଓ ବିଜ୍ଞାନ। ତେଣୁ ସେହି ଗୁଳାରେ ହିଁ ସାଧାରଣ ଶିକ୍ଷା-ଶଗଡ଼ କେଁକଟର କେଁକଟର ରାବ କରି ଗଡ଼ିଚାଲିବ। ଉତ୍କୃଷ୍ଟ ଶିକ୍ଷା ହୋଇଯିବ କେବଳ ଧନୀକ ଶ୍ରେଣୀର କୋଠ ସମ୍ପତ୍ତି। ଶିକ୍ଷା ଓ ତଦୁତ୍ପନ୍ନ ସୁବିଧା ସୁଯୋଗର

ତାରତମ୍ୟ ଦେଇ ସମାଜରେ ଅନତିବିଳମ୍ବେ ସୃଷ୍ଟି ହେବ ବିରାଟ ବୈଷମ୍ୟ, ଯାହା ଧୀରେ ଧୀରେ ସାମାଜିକ ସ୍ଥିରତାକୁ ବିପନ୍ନ କରିବାର ପ୍ରତିଶ୍ରୁତି ବହନ କରେ। ଆଉ ସେ ପ୍ରଳୟର ସୃଷ୍ଟିକର୍ତ୍ତାର ଶ୍ରେୟ ନେବେ ଖୋଦ୍ ତଥାକଥିତ ଗଣତାନ୍ତ୍ରିକ ସରକାର !

ଶିକ୍ଷକ ଅଭାବ, ଭିତ୍ତିଭୂମି ଅଭାବ, ଶିକ୍ଷକମାନଙ୍କ ମଧ୍ୟରେ ବିଭିନ୍ନ ପ୍ରକାର ବେତନଭେଦ, ଅଦୂରଦର୍ଶୀ ଶିକ୍ଷାନୀତି ଇତ୍ୟାଦି ଜାଲରେ ଛନ୍ଦି ହୋଇ ମୁମୂର୍ଷୁ ଅବସ୍ଥାରେ ପଡ଼ି ରହିଛି ସରକାରୀ ମାଧ୍ୟମିକ ଶିକ୍ଷା। କେନ୍ଦ୍ରସରକାରଙ୍କର କେବଳ କେତୋଟି ନବୋଦୟ ବିଦ୍ୟାଳୟ ଘୋଷଣା ତଳେ ପ୍ରାଦେଶିକ ସରକାରଙ୍କର ନିଜ ଅପାରଗତାକୁ ଲୁଚେଇବାର ପ୍ରଚେଷ୍ଟା ହିଁ ଚାଲିଛି।

ଏକବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକରେ ମଧ୍ୟ ମାଧ୍ୟମିକ ବିଦ୍ୟାଳୟଗୁଡ଼ିକରେ ସର୍ବନିମ୍ନ ସ୍ତରର ବିଜ୍ଞାନ ପରୀକ୍ଷାଗାର ଉପଲବ୍ଧ ନୁହେଁ କି ସେଥିପ୍ରତି କାହାରି ନିଘା ମଧ୍ୟ ନାହିଁ। ଆଜିର ବିଜ୍ଞାନ ଯୁଗରେ ଆମ ବିଦ୍ୟାଳୟଗୁଡ଼ିକରେ ବିଜ୍ଞାନ ପଢ଼ା ଚାଲିଛି କେବଳ ସାହିତ୍ୟ, ସାମାଜିକ ଶିକ୍ଷା ଭଳି ବହି ଘୋଷା ମାଧ୍ୟମରେ। ଦୁନିଆରେ ଏଭଳି ଆଉ କେଉଁଠି ବିଜ୍ଞାନ ପଢ଼ା ଯାଉଥିବ ଅନୁମାନ କରିବା କଷ୍ଟ। ଧନ୍ୟ ସତେ ଆମ ସରକାର ଓ ଧନ୍ୟ ବି ଆମ ନାଗରିକ ସଚେତନତା !

ସରକାରୀ କାର୍ଯ୍ୟାବଳୀରୁ ଏତିକି ସ୍ପଷ୍ଟ ଯେ ମନ୍ତ୍ରୀ ଓ ସଚିବ ପରିପୂର୍ଣ୍ଣ ଅପାରଗ, ଦୁର୍ନୀତିଗ୍ରସ୍ତ ଓ ସମପରିମାଣରେ ଅହଂକାରୀ ଉପନିବେଶୀ ଢାଞ୍ଚା ଆଶ୍ରୟରେ ଉତ୍କୃଷ୍ଟ ଶିକ୍ଷାନୁଷ୍ଠାନ ଗଢ଼ା ଯାଇପାରିବ ନାହିଁ। ବିଗତ ଦିନର ଶ୍ରେଣୀଗୃହର ପଛବେଞ୍ଚର ଗୁଡ଼ାଏ ଅଧିକାରୀ ଓ ନିକୃଷ୍ଟ ଅମଲାତାନ୍ତ୍ରିକ ମନସ୍ତତ୍ତ୍ୱକୁ ନେଇ ଶିକ୍ଷା ବ୍ୟବସ୍ଥା ସୃଷ୍ଟି କେଉଁଠି କରାଯାଇନି କି ଏଠି ମଧ୍ୟ ହେବା ଅସମ୍ଭବ। ଏମାନେ କେବଳ 'କଳାପାହାଡ଼' ପରି ସବୁ ଭଲ ଜିନିଷକୁ ନଷ୍ଟ କରିପାରିବେ, କିନ୍ତୁ ଭଲ ସୃଷ୍ଟି କରିବା ଏମାନଙ୍କ ଶୈକ୍ଷିକ ଯୋଗ୍ୟତା ଓ ଚରିତ୍ରିକ ଗୁଣବତ୍ତା ବାହାରେ।

ତେଣୁ ଆଶା କେବଳ ପୁରୁଣା ସମୟ ଭଳି କିଛି ସମାଜମନସ୍କ, ସଚ୍ଚା ଶିକ୍ଷାପ୍ରେମୀ ନାଗରିକମାନଙ୍କ ଉଦ୍ୟମ ଉପରେ। ଯେତେ ଶୀଘ୍ର ସେଭଳି ଏକ ସାମାଜିକ ଆନ୍ଦୋଳନ ଜନ୍ମ ନେବ ସେତେ ମଙ୍ଗଳ; ବିଳମ୍ବେନାଳଂ।



# ଶିକ୍ଷା ବନାମ ସରକାର

ବିଖ୍ୟାତ ଲେଖକ, ଐତିହାସିକ ଓ ଚିନ୍ତାନାୟକ ଏଚ୍.ଜି.ୱେଲସ୍ କହିଛନ୍ତି, "Civilisation is in a race between education and catastrophe" ଅର୍ଥାତ୍ "ସଭ୍ୟତା, ଶିକ୍ଷା ଓ ସର୍ବନାଶ ମଧ୍ୟରେ ଏକ କ୍ରମବର୍ଦ୍ଧିଷ୍ଣୁ ପ୍ରତିଯୋଗିତା ଭିତରେ ପଡ଼ିଯାଇଛି।" ସଭ୍ୟତାର ଏକ ଛୋଟ ଅଂଶୀଦାର ଭାବରେ ଏହି ଉକ୍ତିର ସତ୍ୟ-ମିଥ୍ୟା ଉପରେ ବିଚାର କରିବା ଆମ ପାଇଁ ଏକ ବାଧ୍ୟତା କହିଲେ ଅମୂଳକ ହେବ ନାହିଁ। ଆଉ ଏହି ବିଚାରବିମର୍ଶର ଏକ ଉଦାହରଣ ଭାବେ ଆମ ରାଜ୍ୟ ଓଡ଼ିଶାକୁ ନେବାର ଏ ପ୍ରଚେଷ୍ଟା।

'ଶିକ୍ଷା' ତ ଏକ ବ୍ୟାପକ ଅର୍ଥବୋଧକ ଶବ୍ଦ। ଗୋଟିଏ ଭାଷାର ଅନ୍ୟ ଗୁରୁତ୍ୱପୂର୍ଣ୍ଣ ଶବ୍ଦ ଭଳି ଏହାର ଅର୍ଥ ମଧ୍ୟ ଦୃଷ୍ଟିଭଙ୍ଗୀ ଆଧାରରେ ଭିନ୍ନ ଭିନ୍ନ। କାହା ପାଇଁ ଶିକ୍ଷା ଦୈନନ୍ଦିନର ଗୁଜୁରାଣ ମେଣ୍ଟାଇବାଠାରୁ ବିଳାସବ୍ୟସନମୟ ଜୀବନଧାରଣର ଉପାୟ ତ ଆଉ କାହା ପାଇଁ ନିଜ ଜୀବନଠାରୁ ଏକ ବୃହତ୍ତର ଦୁନିଆକୁ ଦେଖିବା, ଜାଣିବା ଓ ବୁଝିବା ଭଳି ଏକ ମାନସିକ ମନ୍ଥନର ଅବଲମ୍ବନ ତ ପୁଣି ଆଉ କାହା ପାଇଁ ଏହା ଏକ ଆତ୍ମିକ ତଥା ଆଧ୍ୟାତ୍ମିକ ଉତ୍ତରଣର ପାଥେୟ। ଏହିସବୁ ଚେତନା ପରସ୍ପରଠାରୁ ବିଚ୍ୟୁତ ନୁହଁନ୍ତି ବରଂ ଗୋଟିଏ ଅନ୍ୟଟିର ସୂତ୍ରଧର ହୋଇଥାଏ। ଅଙ୍ଗପ୍ରତ୍ୟଙ୍ଗମାନଙ୍କ ସମ୍ପାଦିତ କ୍ରିୟାକଳାପରୁ ଅନୁଭୂତି, ଅନୁଭୂତିଗୁଡ଼ିକର ନିର୍ଯାସରୁ ଜ୍ଞାନ, ଜ୍ଞାନର ସାରାଂଶରୁ ପ୍ରଜ୍ଞା ଭଳି ପାହାଚ ପାହାଚ ଦେଇ ଏଭଳି ଏକ ସ୍ତରରେ ଚେତନା ଅଧିଷ୍ଠିତ ହୁଏ ଯେଉଁ ଅବସ୍ଥାରେ କ୍ରିୟାଶୂନ୍ୟତା ମଧ୍ୟରେ ଅଶେଷ କର୍ମ ସମ୍ପାଦିତ ହୋଇଥାଏ। ଏହା ଆମ ଶାସ୍ତ୍ର କଥା। ଆମେ କିନ୍ତୁ ଏହି ଆଲୋଚନାଟିକୁ ତୃଣମୂଳ ସ୍ତରରେ ଶିକ୍ଷାର୍ଥୀ, ଶିକ୍ଷକ, ଶିକ୍ଷାୟତନ, ଅଭିଭାବକ, ସମାଜ ଓ ସରକାର ଗଠନ କରୁଥିବା ଷଡ଼ଭୁଜ ଦ୍ୱାରା ଆବଦ୍ଧ କ୍ଷେତ୍ର ମଧ୍ୟରେ ସୀମିତ ରଖିବା।

---

★ ଦୈନିକ "ସମ୍ବାଦ"; ୨ ଅଗଷ୍ଟ ୨୦୧୭

ଆମ ଦେଶରେ ଅଧୁନା ଶିକ୍ଷା ବ୍ୟବସ୍ଥାକୁ ତିନୋଟି ସ୍ତରରେ ପରିଚାଳିତ କରାଯାଉଛି, ଯଥା ସର୍ବଶିକ୍ଷା ଅଭିଯାନ (SSA) ମାଧ୍ୟମରେ ପ୍ରାଥମିକ ଶିକ୍ଷା (ପ୍ରଥମରୁ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ), ରାଷ୍ଟ୍ରୀୟ ମାଧ୍ୟମିକ ଶିକ୍ଷା ଅଭିଯାନ (RMSA) ମାଧ୍ୟମରେ ମାଧ୍ୟମିକ ଶିକ୍ଷା (ନବମରୁ ଦ୍ୱାଦଶ ବା ଯୁକ୍ତ-ଦୁଇ ପର୍ଯ୍ୟନ୍ତ) ଓ ରାଷ୍ଟ୍ରୀୟ ଉଚ୍ଚତର ଶିକ୍ଷା ଅଭିଯାନ (RUSA) ମାଧ୍ୟମରେ (ଯୁକ୍ତ-ତିନିଠାରୁ ଗବେଷଣା ଯାଏ) ଉଚ୍ଚଶିକ୍ଷା। ପ୍ରଥମେ ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷାର କଥା। ସମ୍ବିଧାନ ନିର୍ଦ୍ଦେଶିତ ସାର୍ବଜନୀନ ଗୁଣବତ୍ତା ସମ୍ପନ୍ନ ପ୍ରାଥମିକ ଶିକ୍ଷାର ଚରମ ଦୁର୍ଗତି ଲକ୍ଷ୍ୟ କରି ଗତ ଶତାବ୍ଦୀର ନବମ ଦଶକରେ ୱାର୍ଲଡ଼୍ ବ୍ୟାଙ୍କ ସହାୟତାରେ ସର୍ବଶିକ୍ଷା ଅଭିଯାନର ଅୟମାରମ୍ଭ ହୋଇଥିଲା। ସେହି ଚରମ ଦୁର୍ଗତିର ଦହନରୁ ପରିତ୍ରାଣ ପାଇଁ ମଧ୍ୟ ୨୦୦୨ ମସିହାରେ ୬ ରୁ ୧୪ ବର୍ଷ ପିଲାମାନଙ୍କ ପାଇଁ ପ୍ରାଥମିକ ଶିକ୍ଷାକୁ ନିଃଶୁଳ୍କ ଓ ବାଧ୍ୟତାମୂଳକ କରିବା ପାଇଁ ପ୍ରାଥମିକ ଶିକ୍ଷାକୁ ଭାରତୀୟ ନାଗରିକର ସପ୍ତମ ମୌଳିକ ଅଧିକାର ଭାବେ ସମ୍ବିଧାନର ଛୟାଅଶୀତମ ସଂଶୋଧନ ରୂପରେ ଗ୍ରହଣ କରାଗଲା। ଏହି ସଂଶୋଧନକୁ ଆଇନଗତ ମର୍ଯ୍ୟାଦା ମିଳିଲା ୧ ଏପ୍ରିଲ ୨୦୧୦ ଦିନଠାରୁ ଶିକ୍ଷା ଅଧିକାର ଆଇନ୍ ୨୦୦୯ ଅଧୀନରେ।

ଏହି ନିୟମ ଅନୁସାରେ ୬ ରୁ ୧୪ ବର୍ଷ ପର୍ଯ୍ୟନ୍ତ ପିଲାଙ୍କୁ ଆଣିବା ସହିତ ଗୁଣାତ୍ମକ ଶିକ୍ଷା ଦେବାର ସମସ୍ତ ଦାୟିତ୍ୱ ସରକାରଙ୍କ ଉପରେ ନ୍ୟସ୍ତ କରାଗଲା। ଅଭିଭାବକଙ୍କର ଏହା ଆଉ ଦାୟିତ୍ୱ ହୋଇ ରହିଲା ନାହିଁ। ତେଣୁ ପ୍ରତ୍ୟେକ ଗ୍ରାମ ବା ଜନବସତିର ଅନତିଦୂରରେ ନିମ୍ନ ପ୍ରାଥମିକ (ପ୍ରଥମରୁ ପଞ୍ଚମ ଶ୍ରେଣୀ) ବା ମୌଳିକ (ପ୍ରଥମରୁ ଅଷ୍ଟମ ଶ୍ରେଣୀ) ବିଦ୍ୟାଳୟ ଖୋଲିବା ଓ ସେଥିରେ ଭିତ୍ତିଭୂମି ଓ ଶୈକ୍ଷିକ ସୁବିଧା ପ୍ରଦାନ କରିବା ସରକାରଙ୍କ ଦାୟିତ୍ୱ। ନ୍ୟୂନତମ ଭିତ୍ତିଭୂମିଗତ ସୁବିଧା ମଧ୍ୟରେ ବିଦ୍ୟାଳୟ ପାଇଁ କୋଠାଘର, ପରିସର ପାଚେରି, ବିଦ୍ୟୁତ୍ ଶକ୍ତି, ପିଇବା ପାଣି, ପୁଅ ଝିଅଙ୍କ ପାଇଁ ଅଲଗା ଅଲଗା ଶୌଚାଳୟ, ପ୍ରତି ଶ୍ରେଣୀ ପାଇଁ ଗୋଟିଏ କୋଠରୀ ଓ ଜଣେ ଶିକ୍ଷକ, ଖେଳପଡ଼ିଆ, ମଧ୍ୟାହ୍ନ ଭୋଜନ ରୋଷେଇଘର ଇତ୍ୟାଦି ଅନ୍ତର୍ଭୁକ୍ତ। ସେହିଭଳି ଶୈକ୍ଷିକ ବାତାବରଣ ସୃଷ୍ଟି ପାଇଁ ୩୦-୪୦ ଜଣ ଛାତ୍ରଙ୍କ ପାଇଁ ଜଣେ ଶିକ୍ଷକ, ଶିକ୍ଷାଦାନରେ ସହାୟକ ମଡ଼େଲ, କଳାପଟା, ମାନଚିତ୍ର, ଖେଳ ଉପକରଣ, ସମ୍ବାଦପତ୍ର, ପତ୍ରପତ୍ରିକା, ଶିଶୁସାହିତ୍ୟ ପୁସ୍ତକ ଇତ୍ୟାଦି ଛାତ୍ରଛାତ୍ରୀଙ୍କ ପାଇଁ ଉପଲବ୍ଧ ହେବା ଅନିବାର୍ଯ୍ୟ। ସେହିଭଳି ଷଷ୍ଠରୁ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ଛାତ୍ରଛାତ୍ରୀଙ୍କ ପାଇଁ ଗଣିତ, ବିଜ୍ଞାନ, ସାହିତ୍ୟ ଓ ସାମାଜିକ ପାଠ ପାଇଁ ସ୍ୱତନ୍ତ୍ର ଶିକ୍ଷକ ନିଯୁକ୍ତି ଆଇନ ନିର୍ଦ୍ଦେଶିତ। ଗୁଣାତ୍ମକ ଶିକ୍ଷାଦାନକୁ ନିଶ୍ଚିତ କରିବା ପାଇଁ ଆବଶ୍ୟକ ସଂଖ୍ୟକ ଯୋଗ୍ୟତା

ସମ୍ପନ୍ନ ଶିକ୍ଷକ ନିଯୁକ୍ତ ହେବା ମଧ୍ୟ ଆଇନ୍‌ର ନିର୍ଦ୍ଦେଶ। ଏହିସବୁ କାର୍ଯ୍ୟ ଶେଷ କରିବା ପାଇଁ ରାଜ୍ୟମାନଙ୍କୁ ୩ ବର୍ଷ ଅର୍ଥାତ୍ ୩୧ ମାର୍ଚ୍ଚ ୨୦୧୩ ପର୍ଯ୍ୟନ୍ତ ସମୟ ଦିଆଯାଇଥିଲା।

ଆସନ୍ତୁ ଦେଖିବା ଜାତୀୟ ଆଇନର ଏହି ଅଙ୍କ କେତୋଟି ମାନଦଣ୍ଡ ଆଧାରରେ ଓଡ଼ିଶାର ସରକାରୀ ଶିକ୍ଷା ବ୍ୟବସ୍ଥା କେଉଁ ସ୍ଥିତିରେ ଅଛି। ମାର୍ଚ୍ଚ ୨୦୧୬ ମସିହାର ସିଏଜି ରିପୋର୍ଟ ଅନୁସାରେ ୨୦୦୯ ରୁ ୨୦୧୪ ମଧ୍ୟରେ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ୨୩ ହଜାର ୧୯୪ କୋଟି ଟଙ୍କା ଖର୍ଚ୍ଚ ହେବା ସତ୍ତ୍ୱେ ୧୨୨୬ ଜନବସତିର ଏକ କିଲୋମିଟର ଦୂରତା ମଧ୍ୟରେ ପ୍ରାଥମିକ ବିଦ୍ୟାଳୟଟିଏ ନାହିଁ। ସେହିଭଳି ପ୍ରାୟ ୫୬ ହଜାର ପ୍ରାଥମିକ ବିଦ୍ୟାଳୟର ୨୦୦୯-୧୦ ଶିକ୍ଷା ବର୍ଷରେ ୬୬.୨୧ ଲକ୍ଷ ପିଲା ନାମ ଲେଖାଇଥିବା ସ୍ଥଳେ ୨୦୧୩-୧୪ ବେଳକୁ ଏହା ୬୩.୮୮ ଲକ୍ଷକୁ କମିଯିବା ସରକାରୀ ବିଦ୍ୟାଳୟଗୁଡ଼ିକ ଧୀରେ ଧୀରେ ଆକର୍ଷଣ ହରାଉଥିବାର ସୂଚନା ଦେଉଛି। ଏହାର କାରଣ ମଧ୍ୟ ସ୍ପଷ୍ଟ। ଭିତ୍ତିଭୂମି ସ୍ତରରେ ପ୍ରାୟ ଶତକଡ଼ା ୭୫ ଭାଗ ବିଦ୍ୟାଳୟରେ ବିଦ୍ୟୁତ୍ ଶକ୍ତି ନାହିଁ, ଶତକଡ଼ା ୮୦ ଭାଗ ବିଦ୍ୟାଳୟରେ ଆବଶ୍ୟକ ଶ୍ରେଣୀଗୃହ ନାହିଁ, ଶତକଡ଼ା ୩୦ ଭାଗ ବିଦ୍ୟାଳୟରେ ପାଚେରି ନାହିଁ, ଶତକଡ଼ା ୭୦ ଭାଗ ବିଦ୍ୟାଳୟରେ ଖେଳପଡ଼ିଆ ନାହିଁ, ଶତକଡ଼ା ୩୬ ଭାଗ ବିଦ୍ୟାଳୟରେ ଶୌଚାଳୟ ନାହିଁ। ସେପଟେ ଶୈକ୍ଷିକ ସ୍ତରରେ ପ୍ରାୟ ୫୨ ହଜାର ବିଦ୍ୟାଳୟରେ ପ୍ରତି ଶ୍ରେଣୀ ପାଇଁ ଜଣେ ଜଣେ ଶିକ୍ଷକ ନାହାନ୍ତି; ପ୍ରାୟ ୩୬ ହଜାର ଶିକ୍ଷକ ପଦ ଖାଲି ପଡ଼ିଛି। ଯେଉଁ ଶିକ୍ଷକ ଅଛନ୍ତି ସେମାନଙ୍କ ମଧ୍ୟରୁ ୨୧ ହଜାର ଶିକ୍ଷକଙ୍କର ଯୋଗ୍ୟତା ନାହିଁ; ସେମାନଙ୍କ ଯୋଗ୍ୟତା ଦଶମ ପାସ୍ ବା ତା'ଠୁ କମ୍। ଶିକ୍ଷା-ସହାୟକ ହେଉ ହେଉ ଶିକ୍ଷକ ହୋଇଛନ୍ତି ! ତେଣୁ ଓଡ଼ିଶା ସରକାରଙ୍କର ଓଡ଼ିଶା ଶିକ୍ଷକ ଯୋଗ୍ୟତା (OTET) ପରୀକ୍ଷାରେ ଶିକ୍ଷକ ଭାବେ କାର୍ଯ୍ୟରତ ପରୀକ୍ଷାର୍ଥୀଙ୍କ ପାସ୍ ହାର ଶତକଡ଼ା ୧୦ ପାଖାପାଖି ରହିବାର ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। ଏହିସବୁ କାରଣ ଯୋଗୁ ଶିକ୍ଷକ-ଛାତ୍ର ଅନୁପାତ ଜାତୀୟ ନିୟମ ଅନୁସାରେ ୧:୩୦ ରହିବା ସ୍ଥାନରେ ଓଡ଼ିଶାରେ ନିମ୍ନ ପ୍ରାଥମିକ ସ୍ତରରେ ୧:୧୮୭ ଓ ଉଚ୍ଚ ପ୍ରାଥମିକ (୬ଷ୍ଠରୁ ୮ମ) ୧:୨୭୨ ରହିଛି। ଜାତୀୟ ନୀତିର କାର୍ଯ୍ୟ ସମ୍ପାଦନରେ ଏହା ହିଁ ଆମ ଚମତ୍କାରିତା ! ଏହିଭଳି ଏକ କରୁଣ ପ୍ରାଥମିକ ଶିକ୍ଷା ବ୍ୟବସ୍ଥାର ଚିତ୍ର ଦେଖିବା ପରେ ମନରେ ଶକ୍ତି ଓ ସାହସ ସଞ୍ଚୟ କରି ମାଧ୍ୟମିକ ଶିକ୍ଷା କ୍ଷେତ୍ରକୁ ଆସନ୍ତୁ ଦେଖିବା।

ଆମ ଦେଶରେ ମାଧ୍ୟମିକ ଶିକ୍ଷା ୨୦୦୯ ମସିହାରୁ ପ୍ରଚଳିତ ରାଷ୍ଟ୍ରୀୟ ମାଧ୍ୟମିକ ଶିକ୍ଷା ଅଭିଯାନ (RMSA)ର ନିର୍ଦ୍ଦେଶରେ ପରିଚାଳିତ ଏହି ଅଭିଯାନର ମୂଳଲକ୍ଷ୍ୟ ହେଲା

ମାଧ୍ୟମିକ ଶିକ୍ଷାର ଗୁଣବତ୍ତା ବୃଦ୍ଧି ଓ ଅର୍ଥନୈତିକ, ଲିଙ୍ଗଗତ, ଶାରୀରିକ ତଥା ସାମାଜିକ ବୈଷମ୍ୟ ନିର୍ବିଶେଷରେ ୨୦୧୭ ସୁଦ୍ଧା ମାଧ୍ୟମିକ ଶିକ୍ଷାକୁ ସାର୍ବଜନୀନ କରିବା ।

ମାଧ୍ୟମିକ ବିଦ୍ୟାଳୟଗୁଡ଼ିକର ଭିତ୍ତିଭୂମି ଦୃଢ଼ୀଭୂତ କରିବା ଉଦ୍ଦେଶ୍ୟରେ ସର୍ବଶିକ୍ଷା ଅଭିଯାନ ଅନ୍ତର୍ଗତ ଭିତ୍ତିଭୂମି ଦୃଢ଼ୀକରଣ ବ୍ୟବସ୍ଥାଗୁଡ଼ିକ ଲପଲବ୍ଧ ହେବା ସହିତ ଅଧିକ ଶ୍ରେଣୀଗୃହ, ବିଜ୍ଞାନ ପରୀକ୍ଷାଗାର, ପୁସ୍ତକାଗାର, କଳା ଓ ହସ୍ତକର୍ମ କୋଠରି ତଥା ଉପାନ୍ତ ଅଞ୍ଚଳରେ ଶିକ୍ଷକମାନଙ୍କ ଆବାସସ୍ଥଳୀ ଇତ୍ୟାଦିର ବ୍ୟବସ୍ଥା ଅନ୍ତର୍ଭୁକ୍ତ । ସେହିଭଳି ଶୈକ୍ଷିକ ପରିବେଶରେ ଉତ୍କର୍ଷ ପାଇଁ ଅଧିକ ଯୋଗ୍ୟତାସମ୍ପନ୍ନ ଶିକ୍ଷକ ନିଯୁକ୍ତି, ବିଜ୍ଞାନ, ଗଣିତ, ଇଂରେଜୀ ଓ କମ୍ପୁଟର ଶିକ୍ଷା ଉପରେ ଗୁରୁତ୍ୱ ପ୍ରଦାନ, ନିର୍ଦ୍ଦିଷ୍ଟ ସମୟ ଅନ୍ତରରେ ଶିକ୍ଷକମାନଙ୍କର ତାଲିମ ବ୍ୟବସ୍ଥା, ଅଧିକ ସଂଖ୍ୟକ ଶିକ୍ଷୟତ୍ରୀ ନିଯୁକ୍ତି ତଥା ଆଦିବାସୀ, ହରିଜନ ଓ ଦଳିତ ବର୍ଗର ଛାତ୍ରଛାତ୍ରୀଙ୍କ ପ୍ରତି ବିଶେଷ ଧ୍ୟାନ ଇତ୍ୟାଦି ଅନ୍ତର୍ଭୁକ୍ତ ।

ଉପରୋକ୍ତ ପରିମାପ ଆଧାରରେ ଓଡ଼ିଶାର ମାଧ୍ୟମିକ ଶିକ୍ଷା ଉପରେ ଆଲୋକପାତ କଲେ ଦେଖିବାକୁ ମିଳିବ ଯେ ଜାତୀୟ ଶିକ୍ଷାନୀତିର ପ୍ରତିକୂଳରେ ଯାଇ ଓଡ଼ିଶାରେ ଯୁକ୍ତ-ଦୁଇ ଶିକ୍ଷା ୨୦୧୬ ପର୍ଯ୍ୟନ୍ତ ମାଧ୍ୟମିକ ଶିକ୍ଷା ପରିଚାଳନା ଅଧୀନସ୍ଥ ନ ହୋଇ ଉଚ୍ଚଶିକ୍ଷା ବିଭାଗ ଦ୍ୱାରା ପରିଚାଳିତ ହେଉଛି । ୨୦୦୬-୦୭ ଶିକ୍ଷାବର୍ଷରେ ମାଧ୍ୟମିକ ବିଦ୍ୟାଳୟରେ ୧୩ ଲକ୍ଷ ହଜାର ପିଲା ନାମ ଲେଖାଇଥିଲାବେଳେ ୨୦୧୩-୧୪ ବର୍ଷକୁ ଏହା ୧୨ ଲକ୍ଷ ୬ ହଜାରକୁ କମିଛି । ୨୦୧୧-୧୨ ପର୍ଯ୍ୟନ୍ତ ପ୍ରାୟ ଶତକଡ଼ା ୫୦ ରୁ ୬୦ ଭାଗ ପିଲା ପାଠପଢ଼ା ଛାଡ଼ିଛନ୍ତି ।

ବହୁବର୍ଷ ଧରି ପ୍ରତି ବିଦ୍ୟାଳୟ (ଓଡ଼ିଶାରେ ମାଧ୍ୟମିକ ବିଦ୍ୟାଳୟ ସଂଖ୍ୟା ୭୮୯୦) ପିଛା ଶିକ୍ଷକ ସଂଖ୍ୟା ୮ ଜଣ ରହୁଥିବା ବେଳେ ୨୦୧୩-୧୪ ବର୍ଷକୁ ଏହା ୭ ଜଣକୁ କମିଛି, ୩ ହଜାର ବିଜ୍ଞାନ ଶିକ୍ଷକ ପଦ ସହିତ ୭ ହଜାର ୩ ଶହ ଶିକ୍ଷକ ପଦ ଖାଲି ପଡ଼ିଛି, ୨ ହଜାର ୪ ଶହ ୩୪ଟି ବିଦ୍ୟାଳୟର ପ୍ରଧାନ ଶିକ୍ଷକ ନାହାନ୍ତି । ସେହିଭଳି ଭିତ୍ତିଭୂମି କ୍ଷେତ୍ରରେ ୨୦୧୫ ବେଳକୁ ଓଡ଼ିଶାର ପ୍ରାୟ ଶତକଡ଼ା ୩୦ ବିଦ୍ୟାଳୟରେ ବିଦ୍ୟୁତ୍ ସଂଯୋଗ ନ ଥିଲା, ଶତକଡ଼ା ୨୪ ବିଦ୍ୟାଳୟରେ ଶୌଚାଳୟ ନ ଥିଲା, ଛାତ୍ର-ଶିକ୍ଷକ ଅନୁପାତ ଥିଲା ୧:୫୧ ଅର୍ଥାତ୍ ୫୧ ଜଣ ଛାତ୍ରକୁ ଜଣେ ଶିକ୍ଷକ, ଶତକଡ଼ା ୧୩ ବିଦ୍ୟାଳୟରେ ପିଇବା ପାଣିର ସୁବିଧା ନଥିଲା, ଶତକଡ଼ା ୪୪ ବିଦ୍ୟାଳୟରେ ଖେଳପଡ଼ିଆ ନଥିଲା ଓ ଶତକଡ଼ା ୧୬ ବିଦ୍ୟାଳୟର ପାଚେରି ନ ଥିଲା ।

ଏହିଭଳି ଅଭାବୀ ଶୈକ୍ଷିକ ଓ ଭିତ୍ତିଭୂମି ପରିବେଶ ସହିତ ଯୋଡ଼ି ହୋଇଯାଉଛି ପାଠ୍ୟ ପୁସ୍ତକର ଅଭାବ, ବିଭିନ୍ନ କିସମର ଦରମାଭିତ୍ତିରେ ଶିକ୍ଷକଙ୍କ ମଧ୍ୟରେ ଭେଦଭାବ,

ପରୀକ୍ଷା ପରିଚ୍ଛଳନାରେ ବ୍ୟାପକ ଅନିୟମିତତା ଓ ସର୍ବୋପରି ସ୍ୱଳ୍ପସଂଖ୍ୟକ ଶିକ୍ଷକଙ୍କ ଉପରେ ମୂଲ୍ୟହୀନ ଅଶୈକ୍ଷିକ ଅମଲାତାନ୍ତ୍ରିକ କାର୍ଯ୍ୟର ଚାପ।

ଏହି ଶିକ୍ଷା ବିଲୋପୀ ଘୂର୍ଣ୍ଣିବଳୟରୁ ମୁକ୍ତିର ପଥ ହୁଏତ ଅଛି କେତୋଟି ନ୍ୟୂନତମ ସରଳ ପଦକ୍ଷେପରେ।

ପ୍ରଥମତଃ, ସମସ୍ତ ଶିକ୍ଷାନୁଷ୍ଠାନରେ ସବୁ ସମୟରେ ସମାନ ବେତନ ଓ ପଦମର୍ଯ୍ୟାଦାସହ ଶିକ୍ଷକ ନିଯୁକ୍ତି ଦେଇ ଶିକ୍ଷକ-ଅଭାବ ସମସ୍ୟାରୁ ମୁକ୍ତ ହେବାର ପ୍ରୟାସ ଲୋଡ଼ା।

ଦ୍ୱିତୀୟରେ, ନିମ୍ନ-ପ୍ରାଥମିକ (ଷଷ୍ଠ ଶ୍ରେଣୀ) ଶ୍ରେଣୀ ପର୍ଯ୍ୟନ୍ତ କେବଳ ମାତୃଭାଷା (ଓଡ଼ିଆ)ରେ ଶିକ୍ଷାଦାନର ବ୍ୟବସ୍ଥା କରାଯିବା ଦରକାର। ଶିଶୁର ବୋଧଶକ୍ତି ଓ ସୃଜନ ଶକ୍ତିର ବିକାଶ ପାଇଁ ଏହା ଅପରିହାର୍ଯ୍ୟ ବୋଲି ବିଜ୍ଞାନର ମତ। ପ୍ରତ୍ୟେକ ଉନ୍ନତ ଦେଶରେ ଏହି ବ୍ୟବସ୍ଥା ପ୍ରଚଳିତ।

ତୃତୀୟରେ ପ୍ରତ୍ୟେକ ବିଦ୍ୟାଳୟରେ (ପ୍ରାଥମିକ ଓ ମାଧ୍ୟମିକ) ଶିକ୍ଷା-ଅଧିକାର ନିୟମ ଅନ୍ତର୍ଗତ ସମସ୍ତ ଶୈକ୍ଷିକ ଉପାଦାନ ଓ ଭିତ୍ତିଭୂମି ଉପଲବ୍ଧ ହେବାର ପ୍ରତିଶ୍ରୁତିବଦ୍ଧ ବ୍ୟବସ୍ଥା କରାଯିବା ଉଚିତ। ଏଥିରେ ତ୍ରୁଟି-ବିଚ୍ୟୁତିର ନିରାକରଣ ପାଇଁ ମନ୍ତ୍ରୀ ଓ ସଚିବଙ୍କ ଅଫିସ୍ ସହ ଜନସାଧାରଣ ଓ ଅଭିଭାବକଙ୍କ ମଧ୍ୟରେ ସିଧାସଳଖ ଯୋଗାଯୋଗର ବ୍ୟବସ୍ଥା ହେବା ଜରୁରୀ। ବିଦ୍ୟାଳୟ ପରିସର 'ଭୟମୁକ୍ତ ଅଞ୍ଚଳ' ହେବା ସହ 'ଜ୍ଞାନଦୀପ୍ତ' ଅଞ୍ଚଳ ହେବା ମଧ୍ୟ ଅଧିକ ଜରୁରୀ। ଶିକ୍ଷା ଅଧୋଗତିରୁ ମୁକ୍ତି ପାଇଁ ଆଉ ଯାହା ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ, ତାହା ହେଲା ଜନସଚେତନତା ଓ ସମାଜର ସକ୍ରିୟ ଭୂମିକା।

❒❒❒

# ଉଚ୍ଚଶିକ୍ଷା ବନାମ ସରକାର

ଉପନଦୀଗୁଡ଼ିକର ଜଳଧାରା ଶୁଖିଶୁଖି ଯାଉଥିବାବେଳେ ମୁଖ୍ୟ ନଦୀରେ ପ୍ରବାହର ଫୁତ୍କାର ଖୋଜିବା ଯେଭଳି ଏକ ସ୍ୱପ୍ନ ସେହିଭଳି ହେବ ମୁମୂର୍ଷୁ ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷା ବ୍ୟବସ୍ଥା (ଏହି ଅବସ୍ଥାର ସର୍ବଶିକ୍ଷା ଅଭିଯାନ ଓ ମାଧ୍ୟମିକ ଶିକ୍ଷା ଅଭିଯାନ ଅନ୍ତର୍ଗତ କିଛି ଚିତ୍ର ୨ ଅଗଷ୍ଟ 'ସମ୍ବାଦ' ପ୍ରବନ୍ଧରେ ଆଲୋଚିତ) ଉପରେ ଦଣ୍ଡାୟମାନ ଓଡ଼ିଶାର ଉଚ୍ଚଶିକ୍ଷାରେ ଗୁଣବତ୍ତାର ଅନ୍ୱେଷଣ କରିବା।

ଦେଶର ଉଚ୍ଚଶିକ୍ଷା କ୍ଷେତ୍ରରେ ଉନ୍ନତି ଆଣିବା ଉଦ୍ଦେଶ୍ୟରେ ଭାରତ ସରକାର ରାଷ୍ଟ୍ରୀୟ ଉଚ୍ଚତର ଶିକ୍ଷା ଅଭିଯାନ (RUSA)ର ଶୁଭାରମ୍ଭ କଲେ ୨୦୧୩ ମସିହାରେ। ଓଡ଼ିଶା ସରକାର ଏହି ଅଭିଯାନରେ ଯୋଗ ଦେବାପାଇଁ ସମ୍ମତି ଜଣାଇଲେ ସେହିବର୍ଷ ଅକ୍ଟୋବର ମାସରେ।

ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟଗୁଡ଼ିକରେ ଶିକ୍ଷାଦାନ ଓ ଗବେଷଣାର ଉତ୍କର୍ଷ ସୃଷ୍ଟି ଲକ୍ଷ୍ୟରେ ଏହି ଅନୁଷ୍ଠାନଗୁଡ଼ିକରେ ଆବଶ୍ୟକତା ଅନୁଯାୟୀ ଯୋଗ୍ୟତାସମ୍ପନ୍ନ ଶିକ୍ଷକ ନିଯୁକ୍ତି, ଉତ୍କୃଷ୍ଟ ମାନର ଭିତ୍ତିଭୂମି ପାଇଁ ଅନୁଦାନ ବୃଦ୍ଧି, ଆଦର୍ଶ ମହାବିଦ୍ୟାଳୟ ସୃଷ୍ଟି, ଉଚ୍ଚମାନର ମହାବିଦ୍ୟାଳୟଗୁଡ଼ିକୁ ବିଶ୍ୱବିଦ୍ୟାଳୟ ସ୍ତରକୁ ଉନ୍ନୀତ କରିବା ଇତ୍ୟାଦି ଉଚ୍ଚଶିକ୍ଷା ଅଭିଯାନ ନିର୍ଦ୍ଧାରିତ ପଦକ୍ଷେପ। ଏହି ସବୁ କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ପ୍ରାଦେଶିକ ସ୍ତରରେ ସ୍ୱାୟତ୍ତ କ୍ଷମତା ବିଶିଷ୍ଟ ଓ ଶିକ୍ଷାବିତ୍ ପରିଚାଳିତ ଗୋଟିଏ ପ୍ରାଦେଶିକ ଉଚ୍ଚଶିକ୍ଷା ଆୟୋଗ (State Higher Education Council ବା SHEC) ସୃଷ୍ଟି କରିବା ରୁସା (RUSA)ର ଏକ ଗୁରୁତ୍ୱପୂର୍ଣ୍ଣ ପ୍ରାବଧାନ। ଆଉ ଦୁଇ ବର୍ଷ ମଧ୍ୟରେ ଅର୍ଥାତ୍ ୨୦୧୬ ମସିହା ସୁଦ୍ଧା SHEC ଏକ ବୈଧାନିକ ସଂସ୍ଥା (Statutory body)ରେ ପରିଣତ ହେବା ମଧ୍ୟ ବାଧ୍ୟତାମୂଳକ। ରୁସା ନିୟମାବଳୀ ଭାଷାରେ, "In order for the state higher education system function effectively the states need to set up SHEC at an arms length from the state as well as Centre... It must be converted to statutory bodies by acts of State Legislatures

---

★ ଦୈନିକ "ସମ୍ବାଦ"; ୧ ସେପ୍ଟେମ୍ବର ୨୦୧୭

within two years." ୨୦୧୩ ମସିହାରୁ ଓଡ଼ିଶା ରୁସା ବ୍ୟବସ୍ଥାରେ ଯୋଗ ଦେଇଥିବା ସ୍ଥଳେ ୨୦୧୬ ଅଗଷ୍ଟ ମାସରେ ଓଡ଼ିଶା ରାଜ୍ୟ ଉଚ୍ଚଶିକ୍ଷା ଆୟୋଗ (OSHEC) ଗଠନ କରିବା ପାଇଁ ଓଡ଼ିଶା ସରକାରଙ୍କର ମନ୍ତ୍ରୀମଣ୍ଡଳ ମଞ୍ଜୁରି ମିଳିବାର ଖବର ପ୍ରକାଶିତ ହେଲା । ଏବେ ପୁଣି ଏହି ବର୍ଷ ଜୁଲାଇ ୨୫ ତାରିଖ ମନ୍ତ୍ରୀମଣ୍ଡଳ ବୈଠକରେ OSHEC ଗଠନ ଅନୁମୋଦିତ ହେବାର ଖବର ପୁନର୍ବାର ପ୍ରକାଶ ପାଇଛି । କିନ୍ତୁ ଉଭୟ କ୍ଷେତ୍ରରେ OSHEC ଶିକ୍ଷାମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଗଠିତ ହେବାର ନିଷ୍ପତ୍ତି ହୋଇଛି । ଏହି ନିଷ୍ପତ୍ତି ଫଳରେ OSHEC କିଭଳି ଓଡ଼ିଶା ସରକାରଙ୍କଠାରୁ "at arms length" ରହିବ ବୁଝିବା କଠିନ । ରୁସା ନିୟମାବଳୀ ପ୍ରାବଧାନର ଏହା ସମ୍ପୂର୍ଣ୍ଣ ବିରୋଧ କରୁଛି ।

ଏ ଯାବତ୍ କେନ୍ଦ୍ରୀୟ ଅନୁଦାନ ଭାବରେ ପ୍ରାୟ ୬୧ କୋଟି ଟଙ୍କା ସହ ନିଜ ଅବଦାନ ସହ ୧୦୦ କୋଟି ଟଙ୍କାକୁ ୮ଟି ବିଶ୍ୱବିଦ୍ୟାଳୟ ଓ ୯୩ଟି ମହାବିଦ୍ୟାଳୟ ମଧ୍ୟରେ ଭିତ୍ତିଭୂମି ଉନ୍ନତି ଉଦ୍ଦେଶ୍ୟରେ ବାଣ୍ଟିବା, କେତୋଟି ମହାବିଦ୍ୟାଳୟକୁ ଫଳକ-ବିଶ୍ୱବିଦ୍ୟାଳୟରେ ପରିଣତ କରିବା ଓ କେତୋଟି ଆଦର୍ଶ ମହାବିଦ୍ୟାଳୟ ସୃଷ୍ଟି କରିବାରେ ହିଁ ଓଡ଼ିଶା ସରକାରଙ୍କର ଉଚ୍ଚଶିକ୍ଷା କ୍ଷେତ୍ରରେ ଉତ୍କର୍ଷ ସୃଷ୍ଟିର ଅଭିଯାନ ଶେଷ ହୋଇଛି । ଆଦର୍ଶ ବିଦ୍ୟାଳୟଗୁଡ଼ିକ ପରି ଆଦର୍ଶ ମହାବିଦ୍ୟାଳୟଗୁଡ଼ିକ ମଧ୍ୟ 'ଆଦର୍ଶ' ଶବ୍ଦର ଉପହାସର ପ୍ରତୀକ ଭାବେ ଅବତୀର୍ଣ୍ଣ ହୋଇଛନ୍ତି । ଫଳତଃ ଜନସାଧାରଣଙ୍କ ବହୁ କଷ୍ଟୋପାର୍ଜିତ ଅର୍ଥ କୁଳପତି, କୁଳସଚିବ, ପରୀକ୍ଷା ନିୟନ୍ତ୍ରକ, ବିତ୍ତନିୟନ୍ତ୍ରକ ଭଳି କିଛି ନୂଆ ପଦପଦବି ସୃଷ୍ଟି, କିଛି କୋଠାବାଡ଼ି ନିର୍ମାଣ ଓ କିଛି ଯାନବାହନ କିଣା ଭଳି ପରିହାର୍ଯ୍ୟ ଦିଗରେ ବ୍ୟୟିତ ହେବା ହିଁ ସାର ହେଉଛି । ଅନ୍ୟପକ୍ଷରେ ପରିସଂଖ୍ୟାନ ଅନୁଯାୟୀ ଉଚ୍ଚଶିକ୍ଷା କ୍ଷେତ୍ରରେ ଓଡ଼ିଶା ସରକାର ରାଜ୍ୟର ମୋଟ୍ ଉତ୍ପାଦର (State GDP) ଶତକଡ଼ା ୦.୬୮ ଅଂଶ ୨୦୧୦-୧୧ ବର୍ଷରେ ଖର୍ଚ୍ଚ କରିଥିଲାବେଳେ ୨୦୧୧-୧୨ ବର୍ଷରେ ଶତକଡ଼ା ୦.୫୫ ଓ ୨୦୧୨-୧୩ ବର୍ଷରେ ଶତକଡ଼ା ୦.୪୬ ଭାଗ ଖର୍ଚ୍ଚ କରିଛନ୍ତି । ଏହା ଉଚ୍ଚଶିକ୍ଷା ପ୍ରତି ସରକାରଙ୍କର ଉଦାସୀନତାର ପ୍ରମାଣ ଦେବା ସହ ଉଚ୍ଚଶିକ୍ଷାର ଅଧୋଗତିର ଏକ ପ୍ରମୁଖ କାରଣ । ରେଭେନ୍ସା ବିଶ୍ୱବିଦ୍ୟାଳୟ ୧୫୦ ବର୍ଷ ପୂର୍ତ୍ତି ଉତ୍ସବରେ ଖୋଦ୍ କୁଳାଧିପତି ଓଡ଼ିଶାର ଉଚ୍ଚଶିକ୍ଷାର ନିମ୍ନମାନକୁ ନେଇ ଗଭୀର କ୍ଷୋଭ ପ୍ରକାଶ କରିଛନ୍ତି ।

ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟଗୁଡ଼ିକରେ ଆବଶ୍ୟକ ସଂଖ୍ୟକ ଯୋଗ୍ୟତାସମ୍ପନ୍ନ ଶିକ୍ଷକ ନିଯୁକ୍ତି ଶିକ୍ଷାଦାନ ଓ ଗବେଷଣା କ୍ଷେତ୍ରରେ ଗୁଣବତ୍ତା ପ୍ରତିଷ୍ଠା ନିମିତ୍ତ ରୁସା

ନିୟମାବଳୀର ଏକ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ହୋଇଥିଲେ ମଧ୍ୟ ସେଥିପ୍ରତି ଯଥୋଚିତ ଧ୍ୟାନ ଦିଆଯାଉ ନାହିଁ। ଓଡ଼ିଶା ସରକାରଙ୍କର ଓଡ଼ିଶା ଲୋକସେବା ଆୟୋଗ (OPSC) ଓ ରାଜ୍ୟ ଚୟନ ପରିଷଦ (State Selaction Board) ଭଳି ଦୁଇ ଦୁଇଟି ସଂସ୍ଥା ଶିକ୍ଷକ ନିଯୁକ୍ତି ଦାୟିତ୍ୱରେ ଥିଲେ ମଧ୍ୟ ବ୍ରହ୍ମା ବିଲିବିଲେଇବା ନ୍ୟାୟରେ ଅନିର୍ଦ୍ଦିଷ୍ଟ ବର୍ଷ ଅନ୍ତରରେ ଏମାନେ ଶିକ୍ଷକ ନିଯୁକ୍ତି ପାଇଁ ତତ୍ପର ହୋଇଉଠନ୍ତି। ଯାହା ଫଳରେ ୧୦-୧୫ ବର୍ଷ ବ୍ୟବଧାନରେ ସ୍ନାତକୋତ୍ତର ଡିଗ୍ରୀ ହାସଲ କରିଥିବା ଶିକ୍ଷକ-ଛାତ୍ରମାନେ ପରସ୍ପରର ପ୍ରତିଯୋଗୀ ଭାବରେ ପ୍ରତିଦ୍ୱନ୍ଦିତା କରନ୍ତି ଚାକିରି ପାଇଁ! କିନ୍ତୁ ବର୍ଷ ବର୍ଷର ମନମୁଖୀ 'ଲୋକସେବା'ର ଶିକାର ହୋଇ କୌଣସି ଶିକ୍ଷାନୁଷ୍ଠାନ ଉତ୍କର୍ଷାଭିମୁଖୀ ହେବା ଅସମ୍ଭବ-ଏହା ଖୁବ୍ ବେଶୀରେ "ଗୋଦରା କୋଟେଡ଼ ଯେତେ ମାଡ଼େ ସେତେ" ଭଳି ପଦକ୍ଷେପଟିଏ କେବଳ ହୋଇପାରେ।

ଶିକ୍ଷା କ୍ଷେତ୍ରରେ ନିରନ୍ତର ନିଯୁକ୍ତି-ଶୂନ୍ୟତା ଏବଂ ଏକପ୍ରକାର କାମ ପାଇଁ ହୀନମନ୍ୟତା-ସୃଷ୍ଟିକାରୀ ବହୁ କିସମର ଶିକ୍ଷକ ନିଯୁକ୍ତି ବ୍ୟବସ୍ଥା ଉଚ୍ଚଶିକ୍ଷିତ ମେଧାବୀ ଯୁବବର୍ଗଙ୍କୁ ଏକ ଚରମ ନୈରାଶ୍ୟଜନକ ବେକାରୀ ଅବସ୍ଥା ମଧ୍ୟକୁ ଠେଲି ଦେଉଛି। ଗୋଟେ ପଟେ ଶିକ୍ଷକ-ଅଭାବର ଶୀକାର ହୋଇ ପ୍ରତିଷ୍ଠିତ କଲେଜଗୁଡ଼ିକରେ ଶିକ୍ଷାଦାନ ଠପ୍ ତ ଅନ୍ୟପଟେ ଯୋଗ୍ୟତାସମ୍ପନ୍ନ ଯୁବବର୍ଗ ବେକାର! ଯୋଗ୍ୟ ଶିକ୍ଷିତ ଯୁବବର୍ଗଙ୍କୁ ପ୍ରତିବର୍ଷ ନିୟମିତ ଭାବରେ ନିଯୁକ୍ତି ଦେଇନପାରିବା ଓ ବର୍ଷ ବର୍ଷ ଧରି ଶିକ୍ଷାନୁଷ୍ଠାନଗୁଡ଼ିକୁ ଶିକ୍ଷକ-ଶୂନ୍ୟ ରଖି ଶିକ୍ଷାଦାନ ପ୍ରକ୍ରିୟାକୁ ତଳିତଳାନ୍ତ କରିବା ହୁଏତ ସରକାରୀ ଯୋଜନାର ଏକ ଚରମ ବିଫଳତା ଅବା ଶିକ୍ଷା-ଘରୋଇକରଣ ଉଦ୍ଦେଶ୍ୟ-ପ୍ରଣୋଦିତ ପରମ ଚାଣକ୍ୟତା! ସତ ଯାହା ହୋଇଥାଉନା କାହିଁକି, ତାହା ଓଡ଼ିଶାର ଭବିଷ୍ୟତ ନିର୍ମାଣକାରୀ ଗରିବ ଶିଶୁ, କିଶୋର ତଥା ଯୁବବର୍ଗଙ୍କ ଜୀବନର ଉନ୍ନତି ତଥା ସେମାନଙ୍କ ସ୍ୱପ୍ନ ଚରିତାର୍ଥ ପଥରେ ଏକ ପ୍ରଧାନ ଅନ୍ତରାୟ ହୋଇ ଉଭା ହୋଇଛି।

ମହାବିଦ୍ୟାଳୟଗୁଡ଼ିକ ସ୍ତରରେ ଶିକ୍ଷକ-ଅଭାବ ଉଚ୍ଚଶିକ୍ଷା କ୍ଷେତ୍ରରେ ଅନ୍ୟ ଯେଉଁ ନକାରାତ୍ମକ ଦିଗଟିକୁ ପରିପୁଷ୍ଟ କରିଚାଲିଛି ସେହିଟି ହେଲା ଟ୍ୟୁସନ୍ ଓ କୋଚିଂ ସେଣ୍ଟରଗୁଡ଼ିକର ପ୍ରାବଲ୍ୟ। +୩ ଶ୍ରେଣୀର ଅନର୍ସ ଛାତ୍ରଛାତ୍ରୀମାନେ ମଧ୍ୟ ଟ୍ୟୁସନ୍ ହେବା ସାଧାରଣ କଥା ହୋଇଗଲାଣି। ପରୀକ୍ଷାଗୁଡ଼ିକର ସମ୍ଭାବ୍ୟ ପ୍ରଶ୍ନ ଆଧାରିତ ନିମ୍ନମାନର ନୋଟ୍ ପଢ଼ି ସେମାନେ କୌଣସି ପ୍ରକାରେ ସ୍ନାତକ ଓ ସ୍ନାତକୋତ୍ତର ଡିଗ୍ରୀ ସିନା ପାଇ ଯାଉଛନ୍ତି କିନ୍ତୁ ପଠିତ ବିଷୟରେ ସେମାନଙ୍କ ଜ୍ଞାନ ଖୁବ୍ ସୀମିତ। ଅଧିକାଂଶ ଛାତ୍ର ଗୋଟିଏ ହେଲେ ଭଲ ଟେକ୍ସ୍ଟ ବହି ଦେଖିନାହାନ୍ତି କି ପଢ଼ି ନାହାନ୍ତି। ବହି ପଢ଼ିବାର ଅଭ୍ୟାସ ନାହିଁ। ବିଜ୍ଞାନ ପରୀକ୍ଷାଗାରଗୁଡ଼ିକ ମଧ୍ୟ ପ୍ରାୟତଃ ଫାଙ୍କା। ତେଣୁ

ଗବେଷଣା ବୃତ୍ତି ପାଇଁ NET (National Eligibility Test), GATE (Graduate Aptitude Test in Engineering) ଓ JEST (Join Entrance Screening Test) ଭଳି ଜାତୀୟ ସ୍ତରର ପରୀକ୍ଷାରେ ସଫଳକାମ ହେବାପାଇଁ ଶହ ଶହ ଓଡ଼ିଆ ପିଲା ହାଇଦ୍ରାବାଦ, ଦିଲ୍ଲୀ ଓ କୋଟା ଦୌଡ଼ୁଛନ୍ତି କୋଚିଂ ସେଣ୍ଟରରେ ପ୍ରସ୍ତୁତି ପାଇଁ। କିନ୍ତୁ ଏହା କେବଳ ଆର୍ଥିକ ସ୍ୱଚ୍ଛଳ ପିଲାମାନଙ୍କ କ୍ଷେତ୍ରରେ ସମ୍ଭବ; ଗରିବ ପିଲାମାନେ ସେମାନଙ୍କ ଅଚଳ ଡିଗ୍ରୀଗୁଡ଼ିକୁ ଧରି ଘରେ ବସି ରହିବା ହିଁ ସାର। ବିଦ୍ୟାଳୟ ଓ ମହାବିଦ୍ୟାଳୟଗୁଡ଼ିକରେ ଶିକ୍ଷାଦାନର ମାନବୃଦ୍ଧି ତଥା ପରୀକ୍ଷା ସଂସ୍କାର ମାଧ୍ୟମରେ କୋଚିଂ ସେଣ୍ଟରଗୁଡ଼ିକର ପ୍ରଭାବ ହ୍ରାସ ପାଇଁ ପୂର୍ବତନ ରାଷ୍ଟ୍ରପତି ଡ. କଲାମଙ୍କ ଆହ୍ୱାନ ଓ ପ୍ରଚେଷ୍ଟା ମଧ୍ୟ ସଫଳ ହୋଇପାରିନଥିଲା। ଓଡ଼ିଶା ଭଳି ରାଜ୍ୟ ସରକାରଗୁଡ଼ିକ ମଧ୍ୟ ଏହିଭଳି ପରିସ୍ଥିତିର ସହାୟକ ଭୂମିକା ନିର୍ବାହ କରିଆସିଛନ୍ତି।

ଶିକ୍ଷା କ୍ଷେତ୍ରରେ ଅନେକଗୁଡ଼ିଏ ଦୃଶ୍ୟ-ଅଦୃଶ୍ୟ କୁପ୍ରଭାବ ସୃଷ୍ଟି କରିଥିବା ଶିକ୍ଷକ-ଶୂନ୍ୟତା ରୋଗକୁ ଅଧିକ ଯନ୍ତ୍ରଣାଦାୟକ କରୁଛି ପ୍ରାୟ ନିୟମିତ ବ୍ୟବଧାନରେ ସରକାରଗୁଡ଼ିକଙ୍କର ବିଭିନ୍ନ ଅଣଶୈକ୍ଷିକ ଅଦୂରଦର୍ଶୀ ତାତ୍କାଳିକ ନିଷ୍ପତ୍ତି। ଏହାର ସଦ୍ୟତମ ଉଦାହରଣ ହେଉଛି ବର୍ଷ ବର୍ଷ ଧରି ବିଭିନ୍ନ ମହାବିଦ୍ୟାଳୟର +୩ ସ୍ତରର ଶିକ୍ଷାଦାନ କାର୍ଯ୍ୟକ୍ରମକୁ ସମ୍ଭାଳି ଆସୁଥିବା ଯୋଗ୍ୟତାସମ୍ପନ୍ନ ଶିକ୍ଷକମାନଙ୍କୁ ଯୋଗ୍ୟତା ନିର୍ବିଶେଷରେ କେବଳ ସେମାନଙ୍କ ନିଯୁକ୍ତି ଆଳରେ +୨ ସ୍ତରକୁ ସ୍ଥାନାନ୍ତରିତ କରିବା। ଏକ ଦିଗରେ ଏହି ନିଷ୍ପତ୍ତିରେ ଥିବା ନୀତିଗତ ପ୍ରମାଦକୁ ନେଇ ଶିକ୍ଷକମାନେ ନ୍ୟାୟପାଳିକାର ଦ୍ୱାରସ୍ଥ ହେବା ଚିନ୍ତା କରୁଥିବାବେଳେ ଅନ୍ୟ ଦିଗରେ ନିଜ ନିଜ ବିଷୟରେ NET ଓ ପିଏଚ୍‌ଡ଼ି ଧାରୀ ତଥା ଉଚ୍ଚମାନର ଶିକ୍ଷାଦାନ ପ୍ରତି ଅଙ୍ଗୀକାରବଦ୍ଧ ଶିକ୍ଷକମାନେ ପ୍ରତାରିତ ଓ ମର୍ମାହତ। ସେହିଭଳି ଆଉ ଏକ ନିଷ୍ପତ୍ତି ହେଉଛି ପ୍ରାୟ ୨ ବର୍ଷ ତଳେ ନିଯୁକ୍ତ ଅନେକ ମେଧାବୀ ଓ ଯୋଗ୍ୟତାସମ୍ପନ୍ନ ଯୁବଅଧ୍ୟାପକଙ୍କ ନିଯୁକ୍ତି ବାତିଲ କରିବାର ପ୍ରୟାସ। କହିବା ବାହୁଲ୍ୟ ଯେ ବିଭିନ୍ନ ବିଷୟରେ ଏତେ ସଂଖ୍ୟକ ପିଏଚ୍‌ଡ଼ି ଡିଗ୍ରୀ ତଥା ପୋଷ୍ଟ-ଡକ୍ଟରାଲ ଅଭିଜ୍ଞତା ସମ୍ପନ୍ନ ଅଧ୍ୟାପକ ନିଯୁକ୍ତି ଓଡ଼ିଶାର ଉଚ୍ଚଶିକ୍ଷା କ୍ଷେତ୍ରରେ ହୁଏତ ପ୍ରଥମ ତ କେବଳ ନଥିଲା ସର୍ବୋତ୍ତମ ଥିଲା। ଆଉ ସେହିମାନଙ୍କୁ ବିଭିନ୍ନ ଚାଞ୍ଚଲ୍ୟତାପୂର୍ଣ୍ଣ ନିୟମରେ ଛନ୍ଦି ସେମାନଙ୍କ ପଦମର୍ଯ୍ୟାଦା ଅପହରଣର ପ୍ରୟାସ ଏକ ବିଡ଼ମ୍ବନା।

ଉପର ବର୍ଣ୍ଣିତ ସମସ୍ୟାଗୁଡ଼ିକ ବ୍ୟତୀତ ଦରମା ଓ ଚାକିରି ସର୍ତ୍ତାବଳୀଗୁଡ଼ିକରେ ଥିବା ବୈଷମ୍ୟକୁ ନେଇ ଅଧ୍ୟାପକମାନଙ୍କର ବର୍ଷାନୁକ୍ରମିକ ଆନ୍ଦୋଳନ, ଧାରଣା, ଧର୍ମଘଟ ଉଚ୍ଚଶିକ୍ଷା କ୍ଷେତ୍ରରେ ଥିବା ଦୁରାବସ୍ଥାକୁ ସୂଚିତ କରୁଛି।

ଶିକ୍ଷା କ୍ଷେତ୍ରକୁ ଅନୁଧ୍ୟାନ କଲେ ପ୍ରତୀତ ହୁଏ ଯେପରି ସମସ୍ୟାର ଚକ୍ରବ୍ୟୂହରୁ ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟନଗୁଡ଼ିକ ମୁକୁଳିବାର ସବୁ ରାସ୍ତା ରାଜ୍ୟ ସରକାର ବନ୍ଦ କରିକରି ଚାଲିଛନ୍ତି। ଏହାର ଗୋଟିଏ କାରଣ ହୁଏତ ହୋଇପାରେ ରାଜନୀତିରେ ଘଟିଚାଲିଥିବା ସ୍ଖଳନ। ଦିନ ଥିଲା ଦେଶର ରାଜନୀତିରେ ଆଦର୍ଶ ସ୍ଥାନୀୟ ଜ୍ଞାନୀ, ଗୁଣୀ ଓ କର୍ମୀମାନଙ୍କର ଭିଡ଼ ଥିଲା। ସ୍ୱାଧୀନ ଭାରତବର୍ଷର ପ୍ରଥମ ମନ୍ତ୍ରୀମଣ୍ଡଳରେ ବରିଷ୍ଠତା ଭିତ୍ତିରେ ପ୍ରଧାନମନ୍ତ୍ରୀଙ୍କ ତଳକୁ ଦୁଇ ନମ୍ବରରେ ଥିଲେ ଶିକ୍ଷାମନ୍ତ୍ରୀ ମୌଲାନା ଅବୁଲ୍ କଲାମ ଆଜାଦ। ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁ କହିଥିଲେ, "ଶ୍ରେଣୀ ଗୃହରେ ରାଷ୍ଟ୍ର ଗଠନ ହୁଏ।" କିନ୍ତୁ ଦୁଃଖର କଥା, ସେ ସମୟର ସ୍ଥିତି ଆଜି ନାହିଁ।

କୁହାଯାଏ ଅନ୍ତ ହେବାର ସୂଚନା ନଥିବା ଅନ୍ଧକାର ଭିତରେ ବୁଡ଼ି ରହି ଆଲୋକର ଆଶା କରିବା ହିଁ ଜୀବନର ଅନ୍ୟ ନାମ। ସେହି ଆଶାର ଦୁହାଇ ଦେଇ ଓଡ଼ିଶାର ଉଚ୍ଚଶିକ୍ଷାର ଉନ୍ନତି କଳ୍ପେ କେତୋଟି ସର୍ବନିମ୍ନ ପଦକ୍ଷେପ କଥା ଚିନ୍ତା କରାଯାଇପାରେ। ପ୍ରଥମତଃ ରାଜ୍ୟ ଉଚ୍ଚଶିକ୍ଷା ଆୟୋଗକୁ ସମ୍ପୂର୍ଣ୍ଣ ଭାବରେ ଗୁସା ନିୟମାବଳୀ ଆଧାରରେ ଗଠନ କରାଯାଇ ସରକାରୀ କର୍ତ୍ତୃତ୍ୱରୁ ଦୂରରେ ଏକ ସ୍ୱାୟତ୍ତ ସଂସ୍ଥା ଭାବରେ ଶିଘ୍ରାତିଶିଘ୍ର ସ୍ଥାପନ କରାଯାଉ। ଦ୍ୱିତୀୟରେ ସମ୍ବିଧାନ ସଂଶୋଧନ ମାଧ୍ୟମରେ ଉଚ୍ଚଶିକ୍ଷାକୁ ମିଳିତ ତାଲିକାରୁ (Concurrent list) କାଢ଼ି କେନ୍ଦ୍ରୀୟ ତାଲିକା (Central list) ଭୁକ୍ତ କରିବା ମଧ୍ୟ ସମୟର ଏକ ଆବଶ୍ୟକତା। ତୃତୀୟତଃ ପୂର୍ବରୁ ଥିବା ସର୍ବଭାରତୀୟ ଶିକ୍ଷା ସେବା (Indian Education Service)ର ପୁନଃ ପ୍ରଚଳନ ମଧ୍ୟ ଅପରିହାର୍ଯ୍ୟ ମନେହୁଏ। ଏହା ଦ୍ୱାରା ଆନ୍ତଃପ୍ରାଦେଶିକ ତଥା ଆର୍ନ୍ତପ୍ରାଦେଶିକ ଶିକ୍ଷକ ନିଯୁକ୍ତି, ବେତନ, ଚାକିରି ସର୍ତ୍ତାବଳୀ, ଯୋଗ୍ୟତା, ପଦୋନ୍ନତି ଇତ୍ୟାଦିରେ ରହୁଥିବା ବୈଷମ୍ୟ ଦୂର ହେବା ସହ ଶୈକ୍ଷିକ ଉତ୍କର୍ଷର ପଥ ଉନ୍ମୁକ୍ତ ହେବ।

ନୋବେଲ ପୁରସ୍କାର ବିଜେତା ସାର୍ ଚନ୍ଦ୍ରଶେଖର ଭେଙ୍କଟ ରାମନ୍‌ଙ୍କ ବକ୍ତବ୍ୟ ଅନୁସାରେ, "ସରକାରୀ ପରିଚାଳନା କେବଳ ସୃଜନଶୀଳତାକୁ ନଷ୍ଟ କରେ ନାହିଁ ବରଂ ଅଧିକ ମାରାତ୍ମକ ଭାବରେ ସ୍ଥାଣୁତା, ଚଞ୍ଚଳତା ଓ ଅପାରଗତାକୁ ପୁରସ୍କୃତ କରେ।" ଏଇ ପରିପ୍ରେକ୍ଷିରେ କୁହାଯାଇପାରେ ଯେ ଉଦାସୀନ ସରକାର ଓ ଲାଭଖୋର ଶିକ୍ଷା-ବ୍ୟବସାୟୀଙ୍କ ବଳୟ ବାହାରେ ଏକ ସୁନ୍ଦର ସୁଷମ ସାର୍ବଜନୀନ ଶିକ୍ଷା ବ୍ୟବସ୍ଥାର ପ୍ରତିଷ୍ଠା ହୁଏତ ସମାଜ ଆଗରେ ବର୍ତ୍ତମାନ ସମୟର ବିରାଟ ଓ ପ୍ରକୃତ ଆହ୍ୱାନ।



# ସଂସ୍କୃତିର ସମ୍ମୋହନ

ଶରତ କାଳ। ପ୍ରକୃତି ଶାରଦୀୟ ସୁଷମା ବିମଣ୍ଡିତ। ଉପରେ ନିର୍ମଳ ନୀଳ ଆକାଶର ଅନନ୍ତ ବିସ୍ତୃତି। ଧରଣୀ ବକ୍ଷରେ ଘନ ସବୁଜିମାର ସମ୍ଭାର। କାଶତଣ୍ଡୀର ଅନୁପମ ପରିପାଟି। ସମସ୍ତଙ୍କ ମନରେ ଆଉ ଏକ ଶାରଦୀୟ ଉତ୍ସବର ପ୍ରତୀକ୍ଷା। ଜଗତ୍ ଜନନୀ ମା' ଦୁର୍ଗା ଧରାଧାମରେ ଅବତୀର୍ଣ୍ଣ ହେବେ। ମଣିଷକୁ ଢାଳିଦେବେ ଅମାପ ଆଶିଷ। ମା'ଙ୍କ ପୂଜାର୍ଚ୍ଚନା ପାଇଁ ଆରମ୍ଭ ହୋଇଯାଏ ବ୍ୟୟବହୁଳ ପ୍ରସ୍ତୁତି। ବିରାଟ ବିରାଟ ତୋରଣ ହୁଏ। ଝଲମଲ ବିଜୁଳି-ଆଲୁଅରେ ଗାଁ-ଗଣ୍ଡା, ସହର-ବଜାର ଆଲୋକିତ ହୁଏ। ଗାଉଣା-ବାଜଣା, ଗୀତ-ନାଚ ଭିତରେ ଧନୀ-ଦରିଦ୍ର ସମସ୍ତେ ଭୁଲିଯାଆନ୍ତି ଜୀବନର ବାସ୍ତବିକତା। ଗୋଟିଏ ପୂଜା ପରେ ଆରମ୍ଭ ହୁଏ ଆଉ ଗୋଟିଏ ପୂଜାର ପ୍ରସ୍ତୁତି। ତେତିଶ କୋଟି ଦେବାଦେବୀ। ବର୍ଷଟି କଟିଯାଉଛି ଏମାନଙ୍କ ପୂଜା ପାର୍ବଣର ମଉଜମସ୍ତି, ଧୂମଧାମ୍‌ର ଉତ୍ତେଜନା ଉଦ୍ଦୀପନା ଭିତରେ। କେଉଁଠି ସତ୍ୟ, ଧର୍ମ, ନ୍ୟାୟର ଅସତ୍ୟ, ଅଧର୍ମ ଓ ଅନ୍ୟାୟ ଉପରେ ବିଜୟର ଉଦ୍‌ଘୋଷଣା ତ ଅନ୍ୟ କେଉଁଠି ନିଜ ନିଜ ଅଭୀଷ୍ଟ ପୂରଣ ପାଇଁ 'ତପସ୍ୟା'ର ଛୋଟ ଛୋଟ ପ୍ରଦର୍ଶନୀ। ସବୁଠି ସଂସ୍କୃତିର ବଡ଼ ପଣ୍ଡାମାନଙ୍କ ଅଭିସାର। ଏ ସମସ୍ତ ଜାକଜମକ ଓ କୋଳାହଳପୂର୍ଣ୍ଣ 'ସାଂସ୍କୃତିକ' ଉତ୍ସବମାନଙ୍କଠାରୁ ନିରାପଦ ଦୂରରେ ବସି ମଣିଷର ଚୈତନ୍ୟ କିନ୍ତୁ ଦେଖୁଛି କିପରି ଶୁଦ୍ଧ ସଂସ୍କୃତିର ଅନ୍ତଃସ୍ରୋତ ଶୁଷ୍କ ହୋଇଯାଉଛି, ଅନ୍ତଃସ୍ୱର ନିରବ ହୋଇଯାଉଛି। ସର୍ବୋପରି ଏକ ଅଶିକ୍ଷା, ଅଭାବ ଓ ଅନୀତି ପ୍ରପୀଡ଼ିତ ସମାଜରେ ଜାକଜମକ ସର୍ବସ୍ୱ ଉତ୍ସବପାଳନ ଆମ ଚିନ୍ତାଶୂନ୍ୟତାର ଯେ ପରିଚୟ ଦେଉଛି କହିବା ବାହୁଲ୍ୟ।

ସଂସ୍କୃତି ଏକ ଅସ୍ପଷ୍ଟ ସୀମାବଦ୍ଧ କାଳ ଓ ଭୂଖଣ୍ଡର ସାଧାରଣ ମଣିଷମାନଙ୍କ ଚାଲିଚଳଣ, ଭାଷା, ଧର୍ମ, ସାହିତ୍ୟ, ବିଜ୍ଞାନ, ଚିନ୍ତା, ଚେତନା ଓ ଅନ୍ୱେଷାଦିର ଏକ ସମନ୍ୱିତ ରୂପ। ମଣିଷର ବୁଦ୍ଧି ହିଁ ଏହାର ପ୍ରଚ୍ଛନ୍ନ ରୂପକାର। ବୁଦ୍ଧିର କ୍ରମବିକାଶ ସହ

---

★ ଦୈନିକ "ସମ୍ବାଦ"; ୧୫ ଅକ୍ଟୋବର ୨୦୧୦

ସଂସ୍କୃତିର ପରିପାଟି ପରିବର୍ତ୍ତିତ ହେବାରେ ଲାଗିଛି। ସଂସ୍କୃତି ତେଣୁ ଚିର ପ୍ରବହମାନ। ସ୍ଥାନ, କାଳ ଓ ପାତ୍ର ଭେଦରେ ଏଥିରେ ଅନେକ ବିଶେଷତ୍ୱ ଓ ବୈଶିଷ୍ଟ୍ୟ ପରିଦୃଷ୍ଟ ହେଲେ ମଧ୍ୟ ଅନ୍ତଃସ୍ରୋତରେ ସାମଞ୍ଜସ୍ୟ ଓ ଐକ୍ୟର ଚିହ୍ନ ସୁସ୍ପଷ୍ଟ। ଉଦରପୂର୍ତ୍ତି ଥିଲା ଆଦିମ ସଂସ୍କୃତିର ଏକକ ଧର୍ମ। ସମୟକ୍ରମେ ବୁଦ୍ଧିର ବିକାଶ ଓ ପ୍ରୟୋଗ ପ୍ରେରିତ ହୋଇ ଆଧୁନିକ ସଂସ୍କୃତି ହୋଇଛି ବିରାଟ, ବ୍ୟାପକ ଓ ଜଟିଳ। ରାଜନୀତି, ଅର୍ଥନୀତି, ଧର୍ମ, ସାହିତ୍ୟ, ବିଜ୍ଞାନ ଇତ୍ୟାଦି ଆଧୁନିକ ସଂସ୍କୃତିର ପ୍ରମୁଖ ଧାରା। ଏ ସବୁର ସାମଗ୍ରିକ ରୂପ ହିଁ ଆଧୁନିକ ରାଷ୍ଟ୍ର ଓ ଆଧୁନିକ ଜନଜୀବନ। ସେହି ଦୃଷ୍ଟିରୁ ସାଂପ୍ରତିକ ସଂସ୍କୃତିର ପରିଶୀଳନରେ କିଛିଟା ଜାତୀୟ ଓ ଆନ୍ତର୍ଜାତୀୟ ସଂସ୍କୃତିର ଚିତ୍ର ଓ କିଛିଟା ସ୍ୱାତନ୍ତ୍ର୍ୟ ପରିଦୃଷ୍ଟ ହେବା ସ୍ୱାଭାବିକ।

ସ୍ୱାତନ୍ତ୍ର୍ୟ ଅଛି ଆଞ୍ଚଳିକତାରେ। ଆମ ଭାଷା, ସାହିତ୍ୟ, ପୂଜା, ପାର୍ବଣ, ବେଶ-ପୋଷାକ, ଗୀତ-ନାଚ୍, କଳା-ସ୍ଥାପତ୍ୟ ଇତ୍ୟାଦି ସବୁ କିଛି ସ୍ୱତନ୍ତ୍ର ଓ ଗରିମାମୟ। କିନ୍ତୁ ଆମର ଭୁଲିଯିବା ଉଚିତ ନୁହେଁ ଯେ ପୃଥିବୀର ପ୍ରତ୍ୟେକ ଆଞ୍ଚଳିକ ସଂସ୍କୃତି ନିଜ ନିଜ ଢଙ୍ଗରେ ସୌନ୍ଦର୍ଯ୍ୟମୟ, ନିଜ ନିଜ ଦୀପ୍ତିରେ ଦୀପ୍ତିମାନ। ତେଣୁ ଆନ୍ତର୍ଜାତିକ ସଂସ୍କୃତିର ମୁଖ୍ୟଧାରାରେ ଆମର ସ୍ଥାନ ନିରୂପଣ ନିଜର ସ୍ଥିତି ଆକଳନ ନିମନ୍ତେ ଅପରିହାର୍ଯ୍ୟ।

ଗଣତାନ୍ତ୍ରିକ ଶାସନ ପଦ୍ଧତି ଆଧୁନିକ ରାଜନୈତିକ ସଂସ୍କୃତିର ସର୍ବୋତ୍କୃଷ୍ଟ ଧାରା। ଏହା "ଲୋକମାନଙ୍କ ଦ୍ୱାରା, ଲୋକମାନଙ୍କ ପାଇଁ ଓ ଲୋକମାନଙ୍କର" ବୋଲି ସଂଜ୍ଞା-ନିରୂପିତ। କିନ୍ତୁ ସେହି ଗଣତାନ୍ତ୍ରିକ ବ୍ୟବସ୍ଥା ଆମ ଦେଶରେ ସମସ୍ୟା-ଜର୍ଜ୍ଜରିତ। ଅଭାବ ଓ ଅଶିକ୍ଷା କବଳିତ ଜନସାଧାରଣ ଭୋଟ ଦାନର ବୃହତ୍ତର ଅର୍ଥ ବୁଝି ନ ଥିବା ଦୃଷ୍ଟିରୁ ଗଣତନ୍ତ୍ର ଅସଫଳ ହୋଇଛି। ଲୋକସଭା ଓ ବିଧାନସଭାଦିରେ ଅପରାଧୀ ଓ ଅସାମାଜିକଙ୍କ ସଂଖ୍ୟା ବୃଦ୍ଧି ପାଉଛି। ନିର୍ବାଚନଗୁଡ଼ିକରେ ଅର୍ଥବଳ ଓ ବାହୁବଳର ପ୍ରଭାବ ସୁଦୃଢ଼ ହେଉଛି। ଏପରିକି ମନ୍ତ୍ରୀମଣ୍ଡଳଗୁଡ଼ିକର ମାନ ନିମ୍ନଗାମୀ ହେବାରେ ଲାଗିଛି। "ସ୍ୱାଧୀନ ଭାରତର ପ୍ରଥମ ମନ୍ତ୍ରୀମଣ୍ଡଳ ସର୍ବୋତ୍କୃଷ୍ଟ ମନ୍ତ୍ରୀମଣ୍ଡଳ" ଉକ୍ତିଟି ହିଁ ଏହାର ପ୍ରମାଣ। ଅଜ୍ଞ, ଅବକ୍ଷୟୀ ରାଜନୈତିକ ନେତୃତ୍ୱର ବାହୁଛାୟା ତଳେ ଅମଲାତନ୍ତ୍ର ଅପାରଗ ଓ ଦୁର୍ନୀତିଗ୍ରସ୍ତ ହେବାରେ ଲାଗିଛି। ଲୋକମାନଙ୍କର ସମସ୍ୟା ସମାଧାନ ହେବା ତ ଦୂରର କଥା, ଦିନକୁ ଦିନ ଅଧିକରୁ ଅଧିକ ଅବହେଳିତ ହୋଇଚାଲିଛି। ବହୁ ବିଳମ୍ବିତ, ବହୁ ପ୍ରଭାବିତ ଓ ବ୍ୟୟବହୁଳ ନିଷ୍ପତ୍ତି ମାଧ୍ୟମରେ ବିଚାର ବିଭାଗ ମଧ୍ୟ

ଲୋକଙ୍କର ଆସ୍ଥାଭାଜନ ହୋଇପାରୁ ନାହିଁ। ମୋଟାମୋଟି ଭାବରେ ରାଜନୈତିକ ଶାସନ ବ୍ୟବସ୍ଥା ସଂସ୍କୃତି-ବିଚ୍ୟୁତ ହୋଇଛି।

ଏହି ସମସ୍ତ ବିଫଳତା ମୂଳରେ ଅଛି ଗଣତାନ୍ତ୍ରିକ ପଦ୍ଧତି ଉପରେ ଗଣଙ୍କର ନିୟନ୍ତ୍ରଣଶୂନ୍ୟତା। ଗଣତନ୍ତ୍ର ଆମ ପାଇଁ ଏକ ବିଦେଶାନୀତ ଶାସନ ପଦ୍ଧତି। ଯୁଗ ଯୁଗ ଧରି ଆମେ ଥିଲୁ ରାଜତନ୍ତ୍ର ଓ ଔପନିବେଶିକ ଶାସନର ପରିଧି ମଧ୍ୟରେ; ଯେଉଁଠି ଶାସିତ ଗୌଣ; ଶାସକ ମୁଖ୍ୟ; ପ୍ରଜା ଗୌଣ, ରାଜା ମୁଖ୍ୟ। ଗଣତନ୍ତ୍ରରେ ଶାସିତ ମୁଖ୍ୟ, ଶାସକ ଗୌଣ; ନାଗରିକ ମୁଖ୍ୟ, ସରକାର ଗୌଣ। ଅଭାବୀ, ଅଶିକ୍ଷିତ ଓ ଚିର ଅନୁଗତ ଲୋକଟି ତା'ର ଶହ ଶହ ବର୍ଷର ପରିଚିତ ଶାସନ ବ୍ୟବସ୍ଥାର ସମ୍ପୂର୍ଣ୍ଣ ବିପରୀତଧର୍ମୀ ଏକ ଶାସନ ବ୍ୟବସ୍ଥା ବିଷୟରେ ଜାଣିବାର ଅବକାଶ ନାହିଁ। ଜାଣିଲେ ବି ନିଜ ସାର୍ବଭୌମତ୍ୱ ଜାହିର କରିବାର ସାହସ କାହିଁ? ସ୍ୱାଭାବିକ ଭାବରେ ଲୋକ ଚକ୍ଷୁରେ ପ୍ରତିନିଧିମାନେ ହେଲେ ପୁରୁଣାକାଳର ରାଜାମନ୍ତ୍ରୀଙ୍କ ନୂଆ ଅବତାର, ସେବା ପ୍ରଦାନ ପାଇଁ ଉଦ୍ଦିଷ୍ଟ ଅଫିସରମାନେ ହେଲେ ମଝିମଝିଆ ଜମିଦାରଙ୍କ ଭଳି। ଏଭଳି ଉଭଟ ବ୍ୟବସ୍ଥାରେ ଦେଶର ଯେଉଁ ଅବସ୍ଥା ପ୍ରତ୍ୟାଶିତ, ତାହା ହିଁ ସମସ୍ତେ ଦେଖୁଛନ୍ତି ଓ ଅଙ୍ଗେ ନିଭାଉଛନ୍ତି। ସମାଜ ମଙ୍ଗଳର ସ୍ଲୋଗାନ୍ ତଳେ ଧନୀ-ଦରିଦ୍ର ତାରତମ୍ୟ ବଢୁଛି, ଶିକ୍ଷାର ମାନ ବଢ଼ିବା ପରିବର୍ତ୍ତେ ହ୍ରାସ ପାଉଛି, ଶ୍ରମର ମର୍ଯ୍ୟାଦା ଲୋପ ପାଉଛି। ସମାଜ ଅଧିକରୁ ଅଧିକ ଅପରାଧପ୍ରବଣ ହେଉଛି। ଦୁର୍ନୀତି ସର୍ବଗ୍ରାସୀ ହେବାରେ ଲାଗିଛି। ଖାଦ୍ୟ ଶସ୍ୟଠାରୁ ଔଷଧ ଯାଏ ସବୁ କ୍ଷେତ୍ରରେ ଅପମିଶ୍ରଣ ଭୟାବହ ସ୍ତରକୁ ଆସିଛି। ବିଛିନ୍ନତାବାଦ ଉଗ୍ରରୂପ ନେଉଛି। ପରିବେଶ ପ୍ରଦୂଷଣ ପ୍ରଳୟର ଆଶଙ୍କା ସୃଷ୍ଟି କରୁଛି। ଶିକ୍ଷା, କୃଷି, ସ୍ୱାସ୍ଥ୍ୟ, ଶିଳ୍ପ ଭଳି ଗୁରୁତ୍ୱପୂର୍ଣ୍ଣ ବିଭାଗଗୁଡ଼ିକୁ ପଳାୟନପନ୍ଥୀ ଅପାରଗ ସରକାର ଘରୋଇ ଉଦ୍ୟୋଗ ହାତରେ ଟେକିଦେଇ ଜନସାଧାରଣଙ୍କୁ ସୌଦାଗରୀ ଚକ୍ରାନ୍ତର ସହଜ ଶିକାର ହେବାକୁ ଛାଡ଼ି ଦେଉଛନ୍ତି। ଅବସ୍ଥା ଏତେ ଅସମ୍ଭାଳ ହୋଇଛି ଯେ ସର୍ବୋଚ୍ଚ ନ୍ୟାୟାଳୟର ପ୍ରଧାନ ବିଚାରପତି ମଧ୍ୟ ଅସହାୟ ଅନୁଭବ କରି କହିଛନ୍ତି, "ସ୍ୱୟଂ ଭଗବାନ ମଧ୍ୟ ଭାରତକୁ ଚଳାଇ ପାରିବେ ନାହିଁ।"

ଧର୍ମ-ଦୁନିଆରେ ମଧ୍ୟ ଏକା ଦୃଶ୍ୟ। ଅନେକ ଧର୍ମ। ଗୋଟିଏ ଗୋଟିଏ ଧର୍ମ ଭିତରେ ବି ଅନେକ ସମ୍ପ୍ରଦାୟ। ପ୍ରତ୍ୟେକଟିର ସାର କଥା ଗୋଟିଏ; ଭଗବାନ ଅଦ୍ୱୈତ। ପ୍ରତ୍ୟେକ ଧର୍ମର ଲକ୍ଷ୍ୟ ଏକ, ଭଗବତ୍ ପ୍ରାପ୍ତି। ଲକ୍ଷ୍ୟପ୍ରାପ୍ତିର ଉପାୟ ମଧ୍ୟ ଏକ; ସରଳ, ପବିତ୍ର, ନୀତିନିଷ୍ଠ ଜୀବନ। କିନ୍ତୁ ସମୟକ୍ରମେ ଧର୍ମୀୟ ଉପରଚର

କ୍ରମବର୍ଦ୍ଧିଷ୍ଣୁ ମେଦବହୁଳତା ମଧ୍ୟରେ ବିଜୁଳି ଆଲୁଅର ଝଲମଲ ଓ ଗୀତନାଚର ମାହୋଲ ଭିତରେ ଈଶ୍ୱରପ୍ରତ୍ୟୟ, ପ୍ରାର୍ଥନା ଓ ସମର୍ପଣ ଭଳି ଧର୍ମର ସାରକଥା ନିଶ୍ଚିହ୍ନ-ପ୍ରାୟ। ଧର୍ମ ପ୍ରବର୍ତ୍ତକ ଓ ପ୍ରଚାରକଙ୍କ ଶ୍ରେଷ୍ଠତ୍ୱକୁ ନେଇ 'ଶିଷ୍ୟ'ଙ୍କ ମଧ୍ୟରେ ବିଭେଦ, ଶତ୍ରୁତା ଓ ଯୁଦ୍ଧ। ମଠ, ମନ୍ଦିର, ମସ୍‌ଜିଦ୍ ଇତ୍ୟାଦି ଧର୍ମାନୁଷ୍ଠାନ ସଂଖ୍ୟା ବଢ଼ିବାରେ ଲାଗିଛି; ପ୍ରବଚନ, ହୋମଯଜ୍ଞ ଓ ପୂଜାପାର୍ବଣ ସଂଖ୍ୟା ହୁ ହୁ ହୋଇ ବଢୁଛି। ତାହା ସହିତ ପ୍ରତିଯୋଗିତା କରି ବଢ଼ିଚାଲିଛି ଜୀବନଚର୍ଯ୍ୟାରେ ଶଠତା, ଧର୍ମହୀନତା ଓ ଧର୍ମାନ୍ଧତା ସତେ ଯେପରି ସତ୍ୟ, ଅହିଂସା, କର୍ତ୍ତବ୍ୟନିଷ୍ଠା, ପରୋପକାର ବା ଦେଶପ୍ରେମ ଭଳି ସଭ୍ୟତାର ମୁଖ୍ୟ ଆଧାରଗୁଡ଼ିକ ସଂସ୍କୃତିର ଅଂଶ ବିଶେଷ ନୁହଁନ୍ତି।

ସାମାଜିକ ବ୍ୟବସ୍ଥାର ରୂପକଥା ମଧ୍ୟ ଏକାଭଳି। ପୁରାତନ ଯୁଗର ସମାଜତାତ୍ତ୍ୱିକ ଉଦ୍‌ଘୋଷଣା ଥିଲା, "ଗୁଣକର୍ମ ବିଭାଗେଷୁ ଚର୍ତୁବର୍ଣ୍ଣ ମୟାସୃଷ୍ଟ।" ଜାତି ଥିଲା ଏକ ସନ୍ତୁଳିତ ସାମାଜିକ ବ୍ୟବସ୍ଥାର ପରିଯୋଜନା। ନା ଥିଲା କିଏ ବଡ଼ ନା କିଏ ଛୋଟ। ମସ୍ତିଷ୍କ-ସର୍ବସ୍ୱ ବା ହସ୍ତପଦ-ସର୍ବସ୍ୱ ମଣିଷ ଯେପରି ମଣିଷ ପଦବାଚ୍ୟ ନୁହେଁ ସେହିଭଳି ଏକ କର୍ମ-ସର୍ବସ୍ୱ ସମାଜ ତିଷ୍ଠି ପାରେନାହିଁ। ସମୟ ଗଡ଼ିବା ସହ ଜାତି ଜନ୍ମଗତ ହେଲା। ଉଚ୍ଚ-ନୀଚର ବିଭେଦ ସୃଷ୍ଟି ହେଲା। ବିଭେଦ ଭୟଙ୍କର ରୂପ ନେଇ ଅସ୍ପୃଶ୍ୟତା ସୃଷ୍ଟି କଲା। ତାହା ହିଁ ହୋଇଗଲା ଆମ ସାମାଜିକ ସଂସ୍କୃତି। ଏପରିକି ଜ୍ଞାନବିଜ୍ଞାନର ନବଉନ୍ମେଷ ପ୍ରଣୋଦିତ ପ୍ରଗତିଶୀଳ ସାମାଜିକ ବ୍ୟବସ୍ଥାରେ ମଧ୍ୟ 'ନୀଚ ଜାତି'ର ଲୋକ ଛାଏଁ ଛାଏଁ ହୋଇଗଲା 'ନ ଥିଲାବାଲା' ବା ପ୍ରୋଲେଟେରିଏଟ୍ ଓ 'ଉଚ୍ଚବର୍ଗ' ଲୋକ 'ଥିଲାବାଲା' ବା 'ବୁର୍ଜୁଆ'। ଭୋଟ୍-ସର୍ବସ୍ୱ ରାଜନୀତି ଏ ଜାତିଭିତ୍ତିକ ଅର୍ଥନୈତିକ ଧ୍ରୁବୀକରଣକୁ ସୁଦୃଢ଼ କରିଦେଲା। ଶ୍ରେଣୀ ସଂଘର୍ଷ ନ ହେଲେ ବି ଶ୍ରେଣୀ ବିଦ୍ୱେଷ ଚିରସ୍ଥାୟୀ ହୋଇଗଲା। ଏକ ନିର୍ମଳ ସର୍ବଜନହିତାୟ ସାମାଜିକ ପରିକଳ୍ପନାର ଅପଭ୍ରଷ୍ଟ ରୂପର ବିଷାକ୍ତ ଦଂଶନ ମଣିଷର ଚିନ୍ତା ଓ ଚେତନାକୁ ନିସ୍ତେଜ କରିଦେଲା। ମହାତ୍ମାଙ୍କ 'ହରିଜନ' ଡାକ ମଧ୍ୟ ଶୁଭିଲା ନାହିଁ। ପଥର ପାଲଟି ଯାଇଥିବା ସଂସ୍କୃତି-ଭାର କେବେ ଯେ ପୁଣି ମୁକ୍ତ ଚିନ୍ତନରୂପୀ ରାମଙ୍କ ପଦ ସ୍ପର୍ଶରେ ସୌନ୍ଦର୍ଯ୍ୟମୟୀ ଅହଲ୍ୟା ରୂପରେ ପ୍ରତିଭାତ ହେବ କିଏ କହିବ ?

ସମସ୍ତ କ୍ରିୟା-କର୍ମଠାରୁ ଦୂରରେ ରହି ଚୈତନ୍ୟ ଦେଖୁଛି ସମାଜର ପ୍ରତି କ୍ଷେତ୍ରରେ ଅର୍ଥହୀନ ହୋହଲ୍ଲା। ମୁକ୍ତିର ପଥ କେବଳ ଆତ୍ମନିରୀକ୍ଷଣ। ଆଉ ସେହି ନିରବ ନିଶ୍ଚଳ ମୁହୂର୍ତ୍ତରେ ହୁଏତ ଆମେ ଶୁଣିପାରିବା ସୃଷ୍ଟିର ଅମୃତ ସ୍ୱର; ଯାହାକିଛି କର୍ମରେ ଓ ଭାବରେ ସତ୍ୟ, ଶିବ, ସୁନ୍ଦର ଉପାସନାନୁପନ୍ଥୀ। ଯେଉଁଠି ଜ୍ଞାନ, କର୍ମ ଓ ପ୍ରୀତିର ଶୁଭ

ସମାବେଶ ତାହା ହିଁ ସଂସ୍କୃତି। ସଂସ୍କୃତିର ସେହି ନିର୍ଝରପୂତଃ ମଣିଷ ହିଁ ସଂସ୍କୃତ। ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସ୍ନେହ, ଶ୍ରଦ୍ଧା, ସମାନତା, ସହନଶୀଳତା, ଜ୍ଞାନ ଉପାସନା, କର୍ମପ୍ରବଣତା ପ୍ରେରିତ ମାନବବାଦ ଭିତ୍ତିରେ ସମାଜ ଓ ରାଷ୍ଟ୍ର ହେବ ପରିପୁଷ୍ଟ, ଉନ୍ନତ ଓ ସମୃଦ୍ଧ। କେବଳ ଏହିପ୍ରକାର ବ୍ୟକ୍ତିଗତ, ସାମାଜିକ ଓ ରାଜନୈତିକ ସ୍ଥିତି ହିଁ ଶାନ୍ତିପ୍ରଦ ତଥା ଦୀର୍ଘସ୍ଥାୟିତ୍ୱର ସମ୍ଭାବନା ଉପସ୍ଥାପନ କରେ। ତେଣୁ ଲୋଡ଼ା କର୍ପୂର ଓ କନା ମଧ୍ୟରେ ଥିବା ଭିନ୍ନତାକୁ ଚିହ୍ନିବା।

ଆଜି ଏକବିଂଶ ଶତାବ୍ଦୀରେ ମଧ୍ୟ ଆମ ଚିନ୍ତା ଓ ଚେତନାର ଚରିତ୍ରବତ୍ତା ଉପରେ ମହାନ ପାରସ୍ୟ ପରିବ୍ରାଜକ ଜିଜ୍ଞାସୁ ଆଲ୍‌ବିରୁଣୀଙ୍କ ମନ୍ତବ୍ୟ ବହୁଧା ପ୍ରଯୁଜ୍ୟ। ସେ ଲେଖିଥିଲେ, "ଜ୍ଞାନବିଜ୍ଞାନ କ୍ଷେତ୍ରରେ ଭାରତୀୟଙ୍କ ଅବଦାନ ବିଶ୍ୱସ୍ତରୀୟ... କିନ୍ତୁ ସେମାନେ ହୀରାଖଣ୍ଡ ଓ ଗୋବରମୁଣ୍ଡା ମଧ୍ୟରେ ପ୍ରଭେଦ ବୁଝିପାରନ୍ତି ନାହିଁ।" ଆମେ କ'ଣ ଆମକୁ ତଥାକଥିତ ସଂସ୍କୃତିର ଦୂଷିତ ସମ୍ମୋହନରୁ ମୁକ୍ତି ଦେଇପାରିବା ନାହିଁ; "ହଂସୈର୍ଯଥାକ୍ଷୀରମିବାମ୍ବୁ ମଧ୍ୟାତ୍।" ଆଲ୍‌ବିରୁଣୀଙ୍କ ଅପମାନଭରା ଆକ୍ଷେପରୁ କ'ଣ ଆମର ମୁକ୍ତି ନାହିଁ?



# ତରବର ଭାରତ

ରୁଡ୍‌ୟାର୍ଡ଼ କିପ୍‌ଲିଙ୍ଗ୍ ଲେଖିଥିଲେ, "ପୂର୍ବ, ପୂର୍ବ ରହିବ। ପଶ୍ଚିମ, ପଶ୍ଚିମ ହୋଇ ରହିବ। ଦୁହେଁ କେବେ ବି ପରସ୍ପରକୁ ଭେଟିବେ ନାହିଁ।" ଏହା ଯେଉଁ କବିତାର ଅଂଶ ତାହାର ମୂଳ ଥିଲା ଗୋଟିଏ ଗପ, କିନ୍ତୁ ପଦ୍ୟାଂଶଟିର ବହୁଳ ବ୍ୟବହାର ହୋଇଛି ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତର ଚିରସ୍ଥାୟୀ ସାଂସ୍କୃତିକ ଭିନ୍ନତାକୁ ନେଇ। ସତେ ଯେପରି ଏ ପାର୍ଥକ୍ୟ କେବେ ବି ଦୂର ହେବାର ନାହିଁ, କିନ୍ତୁ ଆଧୁନିକତାର ସ୍ପର୍ଶରେ ପୂର୍ବ ଯେ ପଶ୍ଚିମ ପାଖକୁ ସାଂସ୍କୃତିକ ଓ ମନସ୍ତାତ୍ତ୍ୱିକ ସ୍ତରରେ ଦ୍ରୁତ ଗତିରେ ମାଡ଼ି ମାଡ଼ି ଚାଲିଛି, ଏହା ସ୍ପଷ୍ଟ।

ୟୁରୋପ ଓ ଭାରତ କଥା ବିଚାର କରାଯାଉ। ବାସିନ୍ଦାଙ୍କ ଚେହେରା ଭିନ୍ନ ଭିନ୍ନ। ୟୁରୋପର ଲୋକମାନେ କକେସୀୟ ଗୋଷ୍ଠୀର। ଦୀର୍ଘକାୟ, ଗୌରବର୍ଣ୍ଣ। ଭାରତୀୟମାନେ କକେସୀୟ ଓ ମଙ୍ଗୋଲୀୟମାନଙ୍କ ମିଶ୍ରିତ ଗୋଷ୍ଠୀର। ସାଧାରଣତଃ ମଧ୍ୟମ ଉଚ୍ଚତା ବିଶିଷ୍ଟ ଓ ଶ୍ୟାମଳ ବର୍ଣ୍ଣର। ଜଳବାୟୁ ବି ଭିନ୍ନ। ୟୁରୋପର ଅଧିକାଂଶ ଅଞ୍ଚଳ ଶୀତପ୍ରଧାନ ହୋଇଥିଲାବେଳେ, ଆମର ଗୋଟିଏ ଗ୍ରୀଷ୍ମପ୍ରଧାନ ଦେଶ। ଜଳବାୟୁ-ଭିନ୍ନତାର ଲୋକମାନଙ୍କ ଚଳଣି ଉପରେ ପ୍ରଭୂତ ପ୍ରଭାବ ସ୍ପଷ୍ଟ ବାରି ହୋଇଯାଏ। ୟୁରୋପର ଲୋକମାନଙ୍କ ଚଳଣି ମୁଖ୍ୟତଃ ଘରର ଚାରିକାନ୍ଥ ଭିତରେ ଆବଦ୍ଧ ଥିଲାବେଳେ ଆମର ସବୁକିଛି, ହାଟବଜାରଠାରୁ ଆରମ୍ଭ କରି ନାଚ-ଗୀତ ଯାଏ, ଖୋଲା ପଡ଼ିଆରେ। ଏବେ ଏବେ ସେମାନଙ୍କଠୁ ଦେଖିଶିଖି ଶୀତ ଦିନରେ ବି ଆମେ ଶୀତତାପ ନିୟନ୍ତ୍ରିତ କକ୍ଷରେ ଅଫିସ୍ କାମଠୁଁ ଆରମ୍ଭ କରି ନାଚ-ଗୀତ, ସଭା-ସମିତି କରିବା ଆରମ୍ଭ କରୁଛୁ। ସେହିଭଳି ଆଜିର ସମୟରେ ୟୁରୋପର ଦେଶ ସବୁ ଉନ୍ନତ, ବିତ୍ତଶାଳୀ ହୋଇଥିଲାବେଳେ ଆମ ଦେଶ ଅନୁନ୍ନତ ଓ ଦାରିଦ୍ର୍ୟ ପ୍ରପୀଡ଼ିତ ଅବସ୍ଥାରେ ଅଛି। ଉପରୋକ୍ତ ବାହ୍ୟ ଦୃଶ୍ୟମାନ ଭିନ୍ନତା ସତ୍ତ୍ୱେ, ୟୁରୋପୀୟ ଓ ଭାରତୀୟମାନଙ୍କ ଜୀବନଶୈଳୀ ମଧ୍ୟରେ ଆଉ ଏକ ଗଭୀରତର ଭିନ୍ନତା ଅଛି।

---

★ ଦୈନିକ "ସମ୍ବାଦ"; ୧୫ ମାର୍ଚ୍ଚ ୨୦୧୧

ସେଇଟି ହେଲା ଜୀବନଧାରାର କ୍ଷିପ୍ରତା। ସେମାନଙ୍କ ଜୀବନଧାରା ତଥା ମନସ୍ତତ୍ତ୍ୱ ବେଗ-ଆଧାରିତ ହୋଇଥିଲାବେଳେ ଆମର ଜୀବନଶୈଳୀ ଧୀରସ୍ଥିର। ସେମାନେ ବାହ୍ୟମନସ୍କ ରହି ଆସିଥିବାବେଳେ ଆମ ଐତିହ୍ୟର ମୁଖ୍ୟ ଧାରା ଅନ୍ତଃମନସ୍କତା। ସେମାନେ ବାହ୍ୟ ପ୍ରକୃତିକୁ ନେଇ ପ୍ରଶ୍ନ ପଚାରିଲା ବେଳେ ଆମେ ଜୀବନ ଓ ସୃଷ୍ଟିର ମୂଲ୍ୟ ଓ ସମ୍ପର୍କକୁ ନେଇ ପ୍ରଶ୍ନ ପଚାରିଛୁ। ହୁଏତ ସେଇଥି ପାଇଁ ସେମାନଙ୍କ ସଙ୍ଗୀତରେ କ୍ଷିପ୍ରତା ଏକ ମୁଖ୍ୟ ଅଂଶ ହୋଇଥିଲାବେଳେ ଆମ ସଙ୍ଗୀତ ଧୀରମନ୍ଥର। ସେମାନଙ୍କ ନୃତ୍ୟରେ ଅଙ୍ଗଚାଳନା ବେଗପ୍ରଧାନ ହେଲାବେଳେ ଆମ ନୃତ୍ୟରେ ଅଙ୍ଗଚାଳନା ମୃଦୁ ଲାଳିତ୍ୟଭରା। ଏପରିକି ସେମାନଙ୍କ ବ୍ୟାୟାମ ଦେହାଭିମୁଖୀ ଓ ବଳପ୍ରଧାନ ହୋଇଥିଲାବେଳେ ଆମ ଆସନ, ପ୍ରାଣାୟମ ଚେତନାଭିମୁଖୀ ଓ ସାବଲୀଳ ଧ୍ୟାନ, ଧାରଣା, ସମାଧି ପ୍ରଣୋଦିତ।

ଆଜି କିନ୍ତୁ ପ୍ରାଚ୍ୟ, ପାଶ୍ଚାତ୍ୟର ଜୀବନ ମନ୍ତ୍ରରେ ଦ୍ରୁତ ବେଗରେ ଦୀକ୍ଷିତ ହେବାରେ ଲାଗିଛି। ହୋଇପାରେ ସେମାନଙ୍କ ପ୍ରାଚୁର୍ଯ୍ୟର ଆକର୍ଷଣରେ ଏଭଳି ହୋଇଛି। ପୁଣି ଯେତେଟା ଅର୍ଥପୂର୍ଣ୍ଣ ସଭ୍ୟ ଅନୁକରଣରେ ନୁହେଁ ତା'ଠୁ ବହୁଗୁଣ ଅଧିକ ଅର୍ଥହୀନ ଆଧୁନିକତାର ଅନୁକରଣରେ। ବହୁବର୍ଷ ତଳର ବଟ୍ରାଣ୍ଡ୍ ରସେଲ୍‌ଙ୍କ ବିଦ୍ରୁପ ଭରା ଉକ୍ତି, "ପ୍ରାଚ୍ୟ ପାଶ୍ଚାତ୍ୟର କେବଳ ଖରାପ ଗୁଣତକ ଅନୁକରଣ କରୁଛି", ଯେପରି ଅଧିକରୁ ଅଧିକ ପୂର୍ଣ୍ଣତା ଲାଭ କରିଚାଲିଛି ସମୟର ପ୍ରବାହ ସହିତ। ସତେ ଯେପରି ଆମର ସେ ସ୍ୱାଭାବିକ ଧ୍ୟାନରତ ସ୍ଥିର ଚୈତନ୍ୟର ଆସ୍ଥାନକୁ ପାଶ୍ଚାତ୍ୟର ଆଧୁନିକତା ଟଳମଳ କରିଦେଇଛି। ଆମେ କର୍ମପ୍ରବଣ ହୋଇନାହୁଁ ବରଂ ଅଥୟ ଅସ୍ଥିର ହୋଇଯାଇଛୁ। ଧନସମ୍ପତ୍ତି, ଯଶଖ୍ୟାତି ସବୁ ଯେପରି ଖସି ପଡ଼ନ୍ତା ଆମ ହାତରେ ବିନା ପରିଶ୍ରମରେ, ବିନା ଯୋଗ୍ୟତାରେ ଆଖି ପଲକରେ! ଇଏ ଏକ ନୂଆ ଉଭା ହୋଇଆସୁଥିବା 'ତରବର ଭାରତ'।

ନୂଆ ଭାରତର ଲୋକମାନେ କେତେ ବ୍ୟସ୍ତରେ ଅଛନ୍ତି, କେତୋଟି କାମକୁ ଲକ୍ଷ୍ୟ କଲେ ପରିଷ୍କାର ଜଣାପଡ଼ିଯାଏ। ଗଛରେ ଫଳ ପାଚିବା ଯାଏ ଚାଷୀ ଅପେକ୍ଷା କରୁନାହିଁ। ଫଳ ବନିବା ବା ପାକଳ ହେବା ପୂର୍ବରୁ ବିକି ଦେଉଛନ୍ତି। ବ୍ୟବସାୟୀ ଔଷଧ ସ୍ପ୍ରେ କରି ଦେଉଛନ୍ତି। ଦୁଇ ଘଣ୍ଟାରେ ଅଧାବନିବା ଫଳ ପାଚିଲା ରୂପ ଧରି ନେଉଛି। ଲୋକେ ଆନନ୍ଦରେ କିଣି ନେଉଛନ୍ତି। ଫଳ ନା ପ୍ରକୃତରେ ପାଚିଛି, ନା ତା'ର ସ୍ୱାଦ ଅଛି। ବରଂ କୃଷି ବୈଜ୍ଞାନିକଙ୍କ କହିବା କଥା ଯେ, ସ୍ପ୍ରେ ହୋଇଥିବା ଔଷଧ ଅଖାଦ୍ୟ ନୁହେଁ, ସମ୍ପୂର୍ଣ୍ଣ ବିଷ। କେବଳ ଫଳ ପାଚିବା ନୁହେଁ, ଗାଈ କିପରି

ଶୀଘ୍ର ଦୁଗ୍ଧ ଦେବ ସେଥିପାଇଁ ଔଷଧ, କୁକୁଡ଼ା କିପରି ଶୀଘ୍ର ଅଣ୍ଡା ଦେବ ସେଥିପାଇଁ ଔଷଧ, ମାଛ କିପରି ଶୀଘ୍ର ବଢ଼ିବ ସେଥିପାଇଁ ଔଷଧ। ସବୁ କିପରି "ଶୀଘ୍ର" ହେବ ସେଥିପାଇଁ 'ଔଷଧ' ନାଁରେ ବିଷ ହିଁ ପ୍ରୟୋଗ ହେଉଛି। 'ଶୀଘ୍ର'ର ବିଷ ମଣିଷକୁ ଏପରି ଗ୍ରାସ କରିଛି ଯେ, ନାବାଳିକାମାନଙ୍କୁ ଇଞ୍ଜେକସନ୍ ଦେଇ ନାରୀତ୍ୱ ପ୍ରାପ୍ତ କରାଇ ବେଶ୍ୟାବୃତ୍ତିରେ ନିୟୋଜିତ କରାଯାଉଛି। ଆଶ୍ଚର୍ଯ୍ୟ ଲାଗେ ଯେ, ଜ୍ଞାନବିଜ୍ଞାନ କ୍ଷେତ୍ରରେ କିଛି ଗୋଟେ ନୂଆ କଥା ସୃଷ୍ଟି କରିବାରେ ଯେଉଁ ଜାତି ଲଜ୍ଜାଜନକ ଭାବେ ଅପାରଗ, ଦୁଷ୍କର୍ମର ନୂଆ ଦିଗ ଖୋଲିବାରେ ସେହି ଜାତି ସବୁ ଲୋକଙ୍କ ତୁଳନାରେ ଏତେ ଆଗରେ କିପରି ? ନିୟନ୍ତ୍ରଣଶୂନ୍ୟ ଭେଜାଲ-ବଜାର ଭାରତକୁ ଏକ ରୋଗଗ୍ରସ୍ତ ଦେଶରେ ହିଁ ପରିଣତ କରିବା ନିଃସନ୍ଦେହ। ସେପଟେ ରୋଗରୁ ମୁକ୍ତି ପାଇଁ ମିଳୁଥିବା ଔଷଧ ବି ଭେଜାଲ।

ଶିକ୍ଷା କ୍ଷେତ୍ରରେ ବି ସେହି ପ୍ରକୃତିର ଧାରା ବଳବତ୍ତର ହେଉଛି। ଟଙ୍କା ଫୋପାଡ଼, ଡିଗ୍ରୀ ନିଅ। ପାଠ ପଢ଼ିବା, ପରୀକ୍ଷା ଦେବା ଭଳି ସବୁ କଷ୍ଟକର ପୁରୁଣାକାଳିଆ ପଦ୍ଧତିକୁ 'ଗୁଡ୍ ବାୟ' କର। ଯିଏ ସେପରି ଡିଗ୍ରୀ ଦେଇପାରିଲା ସେମାନେ ନୂଆ ଯୁଗର 'ବିଶିଷ୍ଟ ଶିକ୍ଷାବିତ୍'। ରାଜନେତା ଓ ପ୍ରଶାସକଙ୍କ ଗେହ୍ଲାପୁଅ। ସେ ପ୍ରେମର ନାଁ ଦିଆଯାଇଛି 'ପବ୍ଲିକ୍ ପ୍ରାଇଭେଟ୍ ପାର୍ଟନରସିପ୍'। ନୂଆ ମନସ୍ତତ୍ତ୍ୱକୁ ସୁହେଇବା ପାଇଁ ଗପ, କବିତା, ପ୍ରବନ୍ଧ, ଉପନ୍ୟାସ ସବୁ ଆକାରରେ ଛୋଟ ଓ ବିଷୟ ଦୃଷ୍ଟିରୁ 'ଶସ୍ତା' ହେବା ଦରକାର। ନଚେତ୍ କିଏ କାହିଁକି ଏସବୁ ବୁଝିବା ସୁଝିବାରେ ମୁଣ୍ଡ ଖର୍ଚ୍ଚ କରି ବହୁମୂଲ୍ୟ ସମୟ ନଷ୍ଟ କରିବ ? ଗୋପିନାଥ ମହାନ୍ତିଙ୍କ 'ମାଟି ମଟାଳ' ସୁରେନ୍ଦ୍ରଙ୍କ 'ନୀଳଶୈଳ, ନିଳାଦ୍ରୀ ବିଜୟ', ଟଲ୍‌ଷ୍ଟୟଙ୍କ 'ୱାର୍ ଆଣ୍ଡ୍ ପିସ୍' ସୋଲୋଖୋଭ୍‌ଙ୍କ 'ଆଣ୍ଡ କ୍ୱାଏଟ୍ ଫ୍ଲୋଇ୍ ଦି ଡନ୍', ଶ୍ରୀ ଅରବିନ୍ଦଙ୍କ 'ସାବିତ୍ରୀ' ବା ଜେ.ଡ଼ି. ବର୍ନାଲଙ୍କ 'ସାଇନ୍ସ ଇନ୍ ହିଷ୍ଟ୍ରୀ' ଭଳି ବହି ଇତ୍ୟାଦିରେ ଏମିତି ବା କ'ଣ ଅଛି ଯେ ଦିନ ଦିନ ଧରି ବସି ମଣିଷ ପଢୁଥିବ !

ଅବସ୍ଥା ଏପରି ହୋଇଛି ଯେ ପୂଜା, ହୋମ, ଯଜ୍ଞାଦିରେ ମଧ୍ୟ 'ନନା, କ'ଣ ଏତେ ଡେରି କରୁଛ, ଶୀଘ୍ର ଶୀଘ୍ର ସାର' ସ୍ୱର ତୀବ୍ର ହେବାରେ ଲାଗିଛି।

କିନ୍ତୁ ସବୁ ତରବରିଆକୁ ଟପି ଯାହା ଜନଜୀବନକୁ ସବୁଠାରୁ ଅଧିକ ଉଚ୍ଛନ୍ନ କରୁଛି ସେଇଟି ହେଲା ରାତାରାତି କୋଟିପତି ହେବାର ନିଶା, ପ୍ରାସାଦ ନିର୍ମାଣର ମୋହ, ନାମିଦାମି ଗାଡ଼ି ଚଢ଼ିବାର ଲୋଭ। ପ୍ରକୃତ ବାଟ ହୋଇଛି ରାଜନୀତି। ବର୍ତ୍ତମାନ ଭାରତର ରାଜନୀତି, ଶାସନ ଓ ଅର୍ଥନୀତି କେବଳ ମାତ୍ର ଶହେ-ଦୁଇ ଶହ ପରିବାର ହାତରେ। ସେମାନଙ୍କ ଭିତରେ ଅଛନ୍ତି ପୁରୁଣା କାଳର କିଛି ରାଜପରିବାର,

କିଛି ବ୍ୟବସାୟୀ ଓ କିଛି ସ୍ୱାଧୀନୋତ୍ତର ଭାରତର ରାଜନୈତିକସତ୍ତାଧାରୀ ପରିବାର। ଜଣେ ସାଧାରଣ ବୁଦ୍ଧିମାନ ଭାରତୀୟ ଯୁବକ ବଡ଼ ଚାକିରିଆ ହୋଇପାରେ, ମାତ୍ର ଶାସନର ଡୋରି ରହିବ ଏହି ପରିବାରର ଅପାଠୁଆ ଔଲାଦ୍‌ଙ୍କ ହାତରେ। ଏହି ପ୍ରତିପତ୍ତିଶାଳୀ ଘରାନାର ଲୋକମାନେ ଗଣମାଧ୍ୟମକୁ ସ୍ୱାର୍ଥ ପାଇଁ ନିୟୋଜିତ କରିବାର ନମୁନା ମଧ୍ୟ ଦେଖିବାକୁ ମିଳିଲାଣି। ଏପରିକି ସେମାନେ ମଧ୍ୟ କ୍ରୀଡ଼ା ଓ ମନୋରଞ୍ଜନ କ୍ଷେତ୍ରକୁ ନିୟନ୍ତ୍ରଣରେ ରଖି ସାଧାରଣ ଜନତାର ଚିନ୍ତା ଚେତନାକୁ ସ୍ତବ୍ଧ ଓ ନିସ୍ତେଜ କରି ରଖିବା ପାଇଁ ଆୟୁଧ ଭାବରେ ବ୍ୟବହାର କରୁଛନ୍ତି। ଏମାନଙ୍କ ପାପ ଅଭିସାରର ଅବୈଧ ସନ୍ତାନଗୁଡ଼ିକ ହେଲେ ୨-ଜି ସ୍ପେକ୍ଟ୍ରମ୍ ସ୍କାମ୍, ରାଜ୍ୟଗୋଷ୍ଠୀ କ୍ରୀଡ଼ା ଘୋଟାଲା, ଖଣି ଦୁର୍ନୀତି, ଜମି ଦୁର୍ନୀତି, ଡାଲି ଦୁର୍ନୀତି ଇତ୍ୟାଦି ଇତ୍ୟାଦି। କହିବା ବାହୁଲ୍ୟ ଯେ, ଏସବୁ କେବଳ ଜଳମଗ୍ନ ବିରାଟ ବିରାଟ ବରଫ ପର୍ବତର କ୍ଷୁଦ୍ର ଅଗ୍ରଭାଗ ସଦୃଶ। ସବୁ ଅପକର୍ମର ମୂଳରେ ସେହି ଦୁଇ ଶହ ପରିବାର; ଲୋକ ଦେଖାଣିଆ ଭାବେ ସେମାନେ ଯୁଦ୍ଧରତ ରାଜନୈତିକ ଦଳ ବା ପରସ୍ପର ବିରୋଧୀ ସ୍ୱାର୍ଥାନ୍ୱେଷୀ ଗୋଷ୍ଠୀର ହୋଇଥିଲେ ମଧ୍ୟ ଭିତରେ ଦୃଢ଼ ଭାବରେ ସମ୍ପର୍କିତ ଓ ସହବନ୍ଧିତ। ସେଥିପାଇଁ ସବୁ ଅପକର୍ମର ମୁଖ୍ୟ କର୍ଣ୍ଣଧାର ହୋଇ ମଧ୍ୟ ସେମାନେ ନିର୍ଲଜ୍ଜତାର ହସ ହସି ସ-ଗର୍ବେ କହନ୍ତି, 'ନିୟମ ତା' ବାଟରେ ଯିବ।' କାରଣ ସେମାନେ ନିଶ୍ଚିତ ଥାଆନ୍ତି ଯେ, ନିୟମର ବାଟ ସେହିମାନଙ୍କ ଗୋଷ୍ଠୀ ହିଁ ସ୍ଥିର କରିବ। ଓଧମାନଙ୍କ ସହ ଲକ୍ଷ ଲକ୍ଷ ଭୁଆଁ ବିଲେଇ ବି ବାଇ। ଏହା ହିଁ ସମସାମୟିକ ଭାରତୀୟ ରାଜନୀତିର ମହାପାଠ।

ଏଭଳି ଏକ ବିଷୟାସକ୍ତ ତରବରିଆ ଭାରତ ନିଜର ସୁସ୍ଥିର, ଶାନ୍ତ, ଧ୍ୟାନରତ ଆତ୍ମା ତ ହରାଇ ସାରିଲାଣି। ଅପଦୀକ୍ଷାର ମାୟାମିରିଗ ପଛରେ ପଡ଼ି ଲକ୍ଷ୍ମଣଗାର ଟପି ଯାଇ କିଛି ଦିନରେ ଯେ ସତ୍ତା ହରାଇ ନ ବସିବ କିଏ  କହିବ। ଠିକ୍ ଯେପରି ଶ୍ରୀମଦ୍ ଭଗବତ ଗୀତାରେ ଅତ୍ୟନ୍ତ ପ୍ରାଞ୍ଜଳ ଭାବରେ ବୁଝାଇ ଦିଆଯାଇଛି:

"ଧ୍ୟାୟତୋ ବିଷୟାନ ପୁଂସଃ, ସଙ୍ଗସ୍ତେଷୁପଜାୟତେ। ସଙ୍ଗାତ୍ ସଂଜାୟତେ କାମଃ, କାମାତ୍ କ୍ରୋଧୋଃଭିଜାୟତେ। କ୍ରୋଧାତ୍ ଭବତି ସମ୍ମୋହ, ସମ୍ମୋହାତ୍ ସ୍ମୃତିବିଭ୍ରମଃ। ସ୍ମୃତିଭ୍ରଂଶାଦ୍ ବୁଦ୍ଧିନାଶୋ, ବୁଦ୍ଧିନାଶାତ୍ ପ୍ରଣଶ୍ୟତି।" ବିଷୟ ଚିନ୍ତା କରୁ କରୁ ମଣିଷ ଆସକ୍ତି, କାମନା, କ୍ରୋଧ, ଅବିବେକତ୍ୱ ଓ ସ୍ମୃତିଭ୍ରଂଶ ରାସ୍ତା ଦେଇ ଶେଷରେ ବିରେଇ ବୁଦ୍ଧି ଶୂନ୍ୟ ହୋଇ ବିନାଶ ପ୍ରାପ୍ତ ହୁଏ, ପୁରୁଷାର୍ଥର ଅଯୋଗ୍ୟ ହୁଏ। ଏଭଳି ଯଦୁବଂଶ ଧ୍ୱଂସ ବିଭୀଷିକାରୁ କ'ଣ ଆମର ଓ ଭାରତର ମୁକ୍ତି ନାହିଁ?

# ଭକ୍ତ, ଭକ୍ତି ଓ ଛଦ୍ମ ବ୍ୟକ୍ତିତ୍ୱ ?

ଖୁବ୍ ଖୁସି ଲାଗେ ଗଣମାଧ୍ୟମଗୁଡ଼ିକରୁ ଜାଣିବାକୁ ଯେ, ବିଭିନ୍ନ ଧାର୍ମିକ ପୂଜାପାର୍ବଣ, ଯାନିଯାତ୍ରା ତଥା ଶାସ୍ତ୍ରୀୟ ପ୍ରବଚନଗୁଡ଼ିକରେ ଲକ୍ଷ ଲକ୍ଷ ଭକ୍ତଙ୍କ ସମାବେଶ ହେଉଛି; ହେଉ ଅବା ସେ ଜଗନ୍ନାଥଙ୍କ ଘୋଷଯାତ୍ରା, ବାହୁଡ଼ାଯାତ୍ରା ଅବା ଦୁର୍ଗାପୂଜା, କାଳୀପୂଜା ଅବା ଦୋଳଯାତ୍ରା, ଯୋରନ୍ଦା ମେଳା ଅବା ଶିବରାତ୍ରି ଓ 'ବୋଲ୍‌ବମ୍' ପାଳନ ଇତ୍ୟାଦି ଇତ୍ୟାଦି। ବହୁତ ଖୁସି ଲାଗେ ଦେଖିବାକୁ ଯେ, ହଜାର ହଜାର ଲୋକ ସାଧୁସନ୍ଥମାନଙ୍କର ଶାସ୍ତ୍ର-ପ୍ରବଚନରେ ମନ୍ତ୍ରମୁଗ୍ଧ ଭାବରେ ବସି ରହିଛନ୍ତି। ସେମିତି ଖୁସି ଲାଗେ ଶୁଣିବାକୁ ଯେ, ଶହ ଶହ ଲୋକ ମୁହଁ ଖୋଲିଲେ କେବଳ ଭଲ ଭଲ ଧର୍ମର କଥା ହିଁ କହୁଛନ୍ତି। ଖୁସି ଲାଗେ ଦେଖିବାକୁ ଯେ ଗାଁ-ଗଣ୍ଡା ସହର ବଜାରର ଗଳିକନ୍ଦିରେ ଛୋଟ ବଡ଼ ମନ୍ଦିର ସବୁ ଗଢ଼ି ଉଠୁଛନ୍ତି ଓ ସବୁଠି ସଞ୍ଜେ ସକାଳେ ଭଗବତ୍ ଆରାଧନାର ଗାଉଣା ବାଜଣାରେ ଗଗନ ପବନ କମ୍ପୁଛି। ସତେ ଯେପରି ଆମ ସମାଜ ଭକ୍ତ-ପ୍ରଧାନ ହୋଇଯାଇଛି ଓ ସାମାଜିକ ପରିବେଶ ଭକ୍ତି ପ୍ଲାବିତ ହୋଇଯାଇଛି। କି ସୁନ୍ଦର କଥା !

ସେହି ଗଣମାଧ୍ୟମରୁ କେତେ କେତେ ଲଜ୍ଜା ଓ ଦୁଃଖର କଥା ମଧ୍ୟ ପଢ଼ିବାକୁ ମିଳେ; ସାଧାରଣ ଲୋକଙ୍କ ଲକ୍ଷ ଲକ୍ଷ କୋଟି ଟଙ୍କା ରାଜନେତା ଓ ସେବାକାରୀମାନେ ଲୁଟି ନେଉଛନ୍ତି, ଲାଞ୍ଚ ବିନା କୌଣସି ଅଫିସ୍‌ରେ କିଛି ବି କାମ ହେଉ ନାହିଁ, ଲୋକସେବା ଆୟୋଗ ଦ୍ୱାରା ନିଯୁକ୍ତ କର୍ମଚାରୀମାନେ ଲୋକସେବକ ନ ହୋଇ ପ୍ରଶାସକ ବନିଗଲେ, "ବୁଭୁକ୍ଷିତ କିଂ ନ କରୋତି ପାପଂ" ନ୍ୟାୟରେ ନାଗରିକ ସୁବିଧା ସୁଯୋଗରୁ ବଞ୍ଚିତ ହୋଇ କୋମଳମତି କିଶୋର ବା ତରୁଣମାନେ ହିଂସାର ବାଟ ବାଛି ନେଲେ, ଅର୍ଥନୈତିକ ଦୃଷ୍ଟିକୋଣରୁ ଭାରତ ଓ ଇଣ୍ଡିଆ ଭଳି ନଥିଲାବାଲା ଓ ଥିଲାବାଲା; ଏମିତି ଦୁଇଟି ଭାଗରେ ଦେଶ ବିଭକ୍ତ ହୋଇଗଲା ଓ ସର୍ବୋପରି ଗଣତନ୍ତ୍ରର ଆଳରେ ଲୋକଙ୍କ ସମର୍ଥନ ପାଇ ଦେଶ ଚଳାଇବାର ଆଦେଶ ପାଇଥିବା ଦଳ ଲୋକଙ୍କ ଉପରେ ରାଜୁତି କରିବା ଆରମ୍ଭ କରିଦେଲେ ଇତ୍ୟାଦି ଇତ୍ୟାଦି କଥା।

---

★ ଦୈନିକ "ସମ୍ବାଦ"; ୧୭ ଅଗଷ୍ଟ ୨୦୧୧

ଆଗ୍ରର ବ୍ୟବହାରର ଦୁଇଟି ବିରୋଧାତ୍ମକ ପ୍ରଦର୍ଶନ; ଗୋଟେ ପଟେ 'ମାନବ ସେବା ହିଁ ମାଧବ ସେବା' ଧ୍ୱଜାଧାରୀ ଭଗବତ୍ ଆଶ୍ରିତ ଭକ୍ତସମାଜ ଓ ଅନ୍ୟ ପଟେ ସେହି ବ୍ୟକ୍ତିବିଶେଷଙ୍କର ସେବା ପ୍ରଦାନକାରୀ ପୋଷାକ ଆଢୁଆଳରେ ଲୋକମାନଙ୍କ ଉପରେ ଅନ୍ୟାୟ ଅନୀତିଭିତ୍ତିକ ଔଦ୍ଧତ୍ୟପୂର୍ଣ୍ଣ ଅତ୍ୟାଗ୍ରର। ଦୁଇଟି ପରସ୍ପରର ସମ୍ପୂର୍ଣ୍ଣ ବିରୋଧୀ ବିଗ୍ରର ବ୍ୟବହାର ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ ହେବେ କିପରି ? ସେମାନେ କ'ଣ ସତେ ମନସ୍ତତ୍ତ୍ୱ ପାଠର 'ଦ୍ୱୈତ-ବ୍ୟକ୍ତିତ୍ୱ'ଧାରୀ ଚରିତ୍ରମାନଙ୍କର ଏତେ ନିଖୁଣ ଉଦାହରଣ ? ତାହା ହିଁ ଆମ ସମୟର ଏକ ବିରାଟ ପ୍ରହେଳିକା। ଦୁଇଟି ମଧ୍ୟରୁ କେବଳ ଗୋଟିଏ ରୂପ ହିଁ ସତ୍ୟ; ଅନ୍ୟଟି ଛଦ୍ମବେଶ।

ପ୍ରଶ୍ନଟି ଉପରେ ସାମାନ୍ୟ ଅଧିକ ବିଶ୍ଳେଷଣ ପାଇଁ ଆସନ୍ତୁ ପଗ୍ରରିବା, 'ଭକ୍ତ କିଏ ?'। ଆମ ଶାସ୍ତ୍ରରେ ଭକ୍ତମାନଙ୍କ ଶୀର୍ଷ ସ୍ଥାନରେ ଆସନ୍ତି ଧ୍ରୁବ, ପ୍ରହଲ୍ଲାଦ, ସୁଦାମା, ଶ୍ରୀୟା ଚଣ୍ଡାଲୁଣୀ, ଦାସିଆ ବାଉରି, ସାଲବେଗଙ୍କ ଭଳି ପୁଣ୍ୟାତ୍ମାମାନେ। କିନ୍ତୁ କେଉଁଥି ପାଇଁ ? ଉତ୍ତର ବୋଧହୁଏ ଦିଆଯାଇଛି ହିନ୍ଦୁ ଦର୍ଶନର ସର୍ବଶ୍ରେଷ୍ଠ ପାଠ ଶ୍ରୀମଦ୍ ଭଗବତ୍ ଗୀତାରେ ଭଗବାନ ଶ୍ରୀକୃଷ୍ଣଙ୍କ ମୁଖନିଃସୃତ 'ଯୋ ମାଂ ପଶ୍ୟତି ସର୍ବତ୍ର, ସର୍ବଞ୍ଚ ମୟି ପଶ୍ୟତେ' ବାଣୀରେ। ଅର୍ଥାତ୍ 'ଯେ ମତେ ସବୁ ସ୍ଥାନରେ ଦେଖେ ଓ ମୋ'ଠାରେ ଜଗତ୍‌କୁ ଦେଖେ, ସେ ହିଁ ମୋର ଭକ୍ତ।' ସ୍ୱାମୀ ବିବେକାନନ୍ଦ ମଧ୍ୟ କହିଛନ୍ତି ଯେ ଯେଉଁ ବ୍ୟକ୍ତି, ପ୍ରତି ମୁହୂର୍ତ୍ତରେ ନିରନ୍ତର ଭାବରେ ପ୍ରକୃତି ସହ ଏକୀଭୂତ ହୋଇ ରହେ, ସେ ହିଁ ପ୍ରକୃତ ଭକ୍ତ। କାରଣ ପ୍ରକୃତି ହିଁ ଭଗବାନଙ୍କର ବାହ୍ୟ ପ୍ରକାଶ, "ବିଶ୍ୱରୂପ"। ସେଇଥିପାଇଁ ଶ୍ରୀମଦ୍ ଭଗବତ୍ ଗୀତାର ଅନ୍ୟ ଏକ ସ୍ଥାନରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଛନ୍ତି, "ମତ୍ କର୍ମକୃତ୍, ମତ୍ ପରମୋ, ମତ ଭକ୍ତଃ ସଙ୍ଗ ବର୍ଜିତଃ, ନିର୍ବୈରଃ ସର୍ବଭୂତେଷ୍ପୁ ଯଃ, ସ ମାମେତି, ପାଣ୍ଡବ"। ଅର୍ଥାତ୍ ଯେ ଭଗବବାନଙ୍କୁ ନିଜର ପରମ ଆଶ୍ରୟସ୍ଥଳ ବୋଲି ଭାବି ନିଃସଙ୍ଗ ଓ ବୈରଶୂନ୍ୟ ହୃଦୟରେ ତାଙ୍କର ପ୍ରୀତି ଉତ୍ପାଦନ ନିମନ୍ତେ ନିଷ୍କାମ କର୍ମ କରିଯାଏ, ସେ ହିଁ କେବଳ ତାଙ୍କୁ ପ୍ରାପ୍ତ ହୁଏ। ସେଇଥିପାଇଁ ବୋଧହୁଏ ଭକ୍ତି ଯୋଗ ପଦବାଚ୍ୟ ହୋଇଛି। ତେଣୁ ଭକ୍ତିଯୋଗର ଏହି ଅନନ୍ତ ଯାତ୍ରାରେ ତୀର୍ଥଯାତ୍ରୀଟିଏ ହେବା ପାଇଁ ଯାନିଯାତ୍ରା, ପୂଜାପାର୍ବଣ, ଶ୍ରବଣ-ପ୍ରବଚନ ସବୁ କିଛି ଛୋଟ ଛୋଟ ନିମନ୍ତ୍ରଣ ମାତ୍ର। ଏସବୁ କ୍ରିୟାକଳାପ ଯାତ୍ରାର ଶେଷ ତ ନୁହେଁ, ଏପରିକି ଆରମ୍ଭ ବି ନୁହଁ। ଏହି ସ୍ୱଳ୍ପ ଆଲୋଚନାରୁ ଅନ୍ତତଃ ଏତିକି ସ୍ପଷ୍ଟ ଯେ ସ୍ୱାର୍ଥପରତା, କର୍ତ୍ତବ୍ୟହୀନତା ଓ ଅନ୍ୟାୟ-ଅନୀତି ପରାୟଣତା ଭକ୍ତମାର୍ଗର ସମ୍ପୂର୍ଣ୍ଣ ପରିପନ୍ଥୀ।

ତେଣୁ ଯାନିଯାତ୍ରା ଓ ପର୍ବପର୍ବାଣି ଇତ୍ୟାଦିରେ ଭିଡ଼ ଜମାଉଥିବା ଲକ୍ଷ ଲକ୍ଷ ଭକ୍ତଙ୍କ ମଧ୍ୟରୁ ହୁଏତ ବହୁଭାଗ ଭକ୍ତର କଷଟି ପଥରରେ ଉତ୍ତୀର୍ଣ୍ଣ ହୋଇପାରିବେ ନାହିଁ। ନିଜ ନିଜର ଜ୍ଞାତିକୁଟୁମ୍ବଙ୍କ ମଙ୍ଗଳ କାମନାରେ ଅନ୍ଧ ହୋଇ ଅନ୍ୟ ତଥା ସମାଜର ସ୍ୱାର୍ଥକୁ ତୁଚ୍ଛ କରି ଭଗବାନ ବା ଦେବଦେବୀଙ୍କ ପ୍ରତି ଥିବା ଭୟର ତାଡ଼ନାରେ ଏକ ବିଚିତ୍ର ପ୍ରକାର ଭକ୍ତିର ପ୍ରଦର୍ଶନ କରୁଛନ୍ତି ମାତ୍ର। ଆମକୁ ପାଖାପାଖି ଅଢ଼େଇ ଶହ ବର୍ଷ ଧରି ଶାସନ କରିଥିବା ଇଂରେଜ ଆମକୁ 'ଅଭ୍ୟାସଗତ ମିଛୁଆ' ଭାବରେ ଆକ୍ଷେପ କରିଥିଲେ। ହୁଏତ, ସମୟ ଗଡ଼ିବା ସହ ନିର୍ମଳ ପବିତ୍ର ଭକ୍ତିଧାରା ଆଜି ମିଥ୍ୟା ଓ ପ୍ରବଞ୍ଚନାରେ ଅପମିଶ୍ରିତ ହୋଇଯାଇଛି। ସେହିଭଳି ଏକାଦଶ ଶତାବ୍ଦୀରେ ପାରସ୍ୟ ପରିବ୍ରାଜକ ଆଲ୍ ବିରୁଣୀ ଭାରତର ସାମାଜିକ, ଧାର୍ମିକ ତଥା ବୌଦ୍ଧିକ ପରିବେଶକୁ ତନ୍ନ ତନ୍ନ ଅନୁଧ୍ୟାନ କରି ଆକ୍ଷେପ କରିଥିଲେ ଯେ ଭାରତୀୟ ମସ୍ତିଷ୍କ ଗ୍ରୀକ୍‌ମାନଙ୍କ ଭଳି ଭଲ ଓ ଭେଲ ଭିତରେ ଭିନ୍ନତା ବାରିବାରେ ଅକ୍ଷମ। ସତେ ଯେପରି ସେହି ଆକ୍ଷେପର ନିଚ୍ଛକ ପ୍ରତିଫଳନ ଦେଖିବାକୁ ମିଳୁଛି ଆଜି ଆମର ତଥାକଥିତ ଧାର୍ମିକ ଆଚ୍ଚର ବ୍ୟବହାରରେ ଏକବିଂଶ ଶତାବ୍ଦୀର ପ୍ରାକ୍ କାଳରେ।

ଆଉ ଯେଉଁମାନଙ୍କ 'କୀର୍ତ୍ତିଗାଥା' ଦିନ ପ୍ରତିଦିନ ଗଣମାଧ୍ୟମଗୁଡ଼ିକରେ ବହୁଚର୍ଚ୍ଚିତ, ସେମାନେ ସମସ୍ତେ ଅଛେ ବହୁତେ ଜନସାଧାରଣଙ୍କ ଅର୍ଥରେ ପ୍ରତିପାଳିତ, ପ୍ରତିପୋଷିତ। ଏପରିକି ଜନପ୍ରତିନିଧିମାନେ ମଧ୍ୟ; ସେମାନେ ତ ପୁଣି ଜନସାଧାରଣଙ୍କ ଅର୍ଥରେ ବିଭିନ୍ନ ଭାବରେ ଉପକୃତ ହେବା ଉପରାନ୍ତେ ଜନସାଧାରଣଙ୍କ ପ୍ରତିନିଧିତ୍ୱ ଭଳି କଷ୍ଟକର ଦାୟିତ୍ୱ ପ୍ରତିପାଦନରେ ପ୍ରତିଶ୍ରୁତିବଦ୍ଧ। ତେଣୁ ନିୟମ ପ୍ରଣୟନ, କାର୍ଯ୍ୟନିର୍ବାହ ଓ ନ୍ୟାୟପ୍ରଦାନ ମାଧ୍ୟମରେ ଜନସାଧାରଣଙ୍କ ସୁବିଧା ସୁଯୋଗର ବ୍ୟବସ୍ଥା କରିବା ସେମାନଙ୍କର ଦୟାର କଥା ନୁହେଁ; ବରଂ ଦରମା ଓ ଭତ୍ତା ବଦଳରେ ସେମାନଙ୍କ ସାମ୍ବିଧାନିକ ଦାୟିତ୍ୱ ଓ କର୍ତ୍ତବ୍ୟ। ଅବହେଳା ପାଇଁ ସେମାନେ ଦାୟୀ ରହିବାକୁ ବାଧ୍ୟ। ସର୍ବୋପରି ସେମାନଙ୍କ ମଧ୍ୟରେ ଯଦି ଲକ୍ଷ ଲକ୍ଷ ଭକ୍ତ ଭର୍ତ୍ତି ହୋଇ ଥାଆନ୍ତି ସେମାନେ ତ କେବଳ ପ୍ରଚଳିତ ସରକାରୀ ନୀତିନିୟମ ଦୃଷ୍ଟିରୁ ଅପରାଧୀ ନୁହଁନ୍ତି, ଭଗବାନଙ୍କ ଆଖିରେ ବିଧର୍ମୀ ହେବା ହିଁ ସ୍ୱାଭାବିକ। କାରଣ ଧର୍ମର ଗ୍ଲାନିରୁ ଜଗତ୍‌କୁ ରକ୍ଷା କରିବା ପାଇଁ ସ୍ୱୟଂ ଭଗବାନ ମଧ୍ୟ ପ୍ରତିଶ୍ରୁତିବଦ୍ଧ।

ଭଗବାନଙ୍କ ପ୍ରତି ଅଚଳାଚଳ ଭକ୍ତିକୁ ଧରି ଭକ୍ତ ଭାରି ସ୍ୱାଭିମାନୀ। ଭଗବାନଙ୍କ ବ୍ୟତୀତ ଅନ୍ୟ କାହାରି ପାଖରେ ନିଜର ବ୍ୟକ୍ତିତ୍ୱ ଓ ବିବେକକୁ ଜଳାଞ୍ଜଳି ଦେବାକୁ ସେ ପ୍ରସ୍ତୁତ ନୁହେଁ, ସମସ୍ତ ବାଧାବିଘ୍ନ ସତ୍ତ୍ୱେ। ତା'ର ଜୀବନ ଦର୍ଶନ ହେଲା-

'ଜାଣିଛି ନିଃସଙ୍ଗ କର୍ମେ ନାହିଁ ପରାଜୟ, ରଖିଛି ଈଶ୍ୱରେ ଯେଣୁ ଜୀବନ୍ତ ପ୍ରତ୍ୟୟ'। ସେହି ବିଶ୍ୱାସକୁ ନେଇ ଦେବକୀ ଓ ବସୁଦେବ କାରାଗାରର ଅନ୍ଧକାର ଭିତରେ ରହିଥିଲେ, ପାଣ୍ଡବମାନେ ବାର ବର୍ଷ ବନବାସରେ ଗଲେ, ସତୀ ସୀତା ରାବଣର ସମସ୍ତ ପ୍ରଲୋଭନକୁ ପ୍ରତିହତ କରିବା ସତ୍ତ୍ୱେ ସତୀତ୍ୱର ପରୀକ୍ଷା ଦେଲେ। କିନ୍ତୁ ଆଜିର ଭକ୍ତମାନେ ତ ଚାଉଳ, ଡାଲି, ଭତ୍ତା, ଘର, ପଦପଦବି ଇତ୍ୟାଦି ମତଲବ ହାସଲ ପାଇଁ ଜାତି, ଧର୍ମ, ମାନମହତ ସବୁ କିଛି ଦାୟରେ ଲଗାଇବାକୁ ପ୍ରସ୍ତୁତ। କେବଳ ସେତିକି ନୁହେଁ ଆମର ଭକ୍ତ ଶିରୋମଣି ପଣ୍ଡା, ପଢ଼ିଆରୀ ଓ ପୂଜକମାନେ ମଧ୍ୟ ତଥାକଥିତ ଭିଭିଆଇପିମାନଙ୍କୁ ଠାକୁର ଓ ଦେବଦେବୀମାନଙ୍କ ସହ ଯେପରି ସ୍ୱତନ୍ତ୍ର ସାକ୍ଷାତ କରାଇବାର ଦେଖାଯାଏ ଜଣାପଡ଼େ ଯେପରି ଠାକୁରମାନେ ଏମାନଙ୍କ ଦର୍ଶନ ପାଇଁ କାହିଁ କେଉଁ କାଳରୁ ଆକୁଳ ନୟନରେ ଅନାଇ ବସିଛନ୍ତି। ଭଗବାନ ଓ ଭକ୍ତି ଭାବ ପ୍ରତି ଏହା ଠାରୁ ଅଧିକ ବିଦ୍ରୂପ କ'ଣ ହୋଇପାରେ ?

ଭକ୍ତ ଓ ଭକ୍ତିର ଏହି ପ୍ରହେଳିକାମୟ ପରିବେଶରେ ହୁଏତ ସମିଚୀନ ହେବ ରବୀନ୍ଦ୍ରନାଥଙ୍କ ଗୀତଟିଏ ମନେ ପକାଇବା। ଗୋଦାବରୀଶ ମହାପାତ୍ରଙ୍କ ଅମୃତମୟ ଭାଷାରେ ତାହାର ଅନୁସୃଜନ ହେଲା;

"ବନ୍ଦକର ମନ୍ତ୍ରପାଠ ତବ,
ବନ୍ଦକର ପୂଜାର ଆରତି
ଦେଉଳ ବାହାରେ ଦେବତା,
ହାତ ପାତି ଉଭା ହୋଇଛନ୍ତି।
ଦେବଭୋଗ ନିରନ୍ନରେ ଦିଅ
ଦେବସେବା ହେଉ ମାନବରେ
ଦେବତାର ଦରଶନ ଲଭ
ମାନବର ପ୍ରତି ଘରେ ଘରେ।।"

ତାହା ହିଁ ହେଉ ପ୍ରଭୁ; ଦେବସେବା ହେଉ ମାନବର ପ୍ରତି ଘରେ ଘରେ, ପ୍ରତି ହୃଦୟର କୋଣେ ଅନୁକୋଣେ।

□□□

# ମାଗଣାର ମହକ

"ମାଗଣା ମିଳିଲେ ବିଷ ବି ଖାଇଦେବା" ଲଘୁ ପରିହାସଟି ଆମ ସାମାଜିକ ଚରିତ୍ରର ସ୍ୱାକ୍ଷର ହେବାକୁ ବସିଲାଣି। "କଷ୍ଟ କଲେ କୃଷ୍ଣ ମିଳେ" ସତେ ଯେପରି ଗତକାଲିର କଥା; ପ୍ରାସଙ୍ଗିକତାଶୂନ୍ୟ। ମୁଦ୍ରାସ୍ଫୀତିର ଯୁଗରେ ପ୍ରତ୍ୟେକ ଜିନିଷର ଦାମ୍ ବଢୁଥିଲାବେଳେ 'କୃଷ୍ଣ'ର ଦାମ୍ କମି କମି ମୂଲ୍ୟହୀନ ହୋଇଯିବା ଆଜିକା ସମୟର ଅନେକ ବୈଚିତ୍ର୍ୟ ମଧ୍ୟରୁ ଗୋଟିଏ। ମୂଲ୍ୟ ହରାଇ ବସୁଥିବା ପଦାର୍ଥଟି 'କୃଷ୍ଣ' କି 'କଂସ' ତାହାର ଉତ୍ତର ସମୟ ତ ନିଶ୍ଚୟ ଦେବ; କିନ୍ତୁ ପ୍ରାକ୍ ସୂଚନାଗୁଡ଼ିକୁ ଅଣଦେଖା କରିବା ନିର୍ବୋଧତାର ପରିଚୟ ହେବ।

ଆଲୋଚନାଟି ଧର୍ମ କଥାରୁ ଆରମ୍ଭ କରାଯାଇପାରେ। ପୃଥିବୀର ମୁଖ୍ୟ ଧର୍ମମାନଙ୍କ ମଧ୍ୟରୁ କେବଳ ଖ୍ରୀଷ୍ଟଧର୍ମରେ "ମିସ୍‌ନାରି" ଭଳି ସଂସ୍ଥାଟିଏ ଅଛି। ସଂସ୍ଥାଟିର 'ମିସନ୍' ହେଲା ଖ୍ରୀଷ୍ଟଧର୍ମ ପ୍ରଚାର। ଖ୍ରୀଷ୍ଟଧର୍ମର ବୈଶିଷ୍ଟ୍ୟ ଓ ଔପଚାରିକ ସରଳତା ଲୋକମାନଙ୍କୁ ସେ ଧର୍ମ ପ୍ରତି ଆକୃଷ୍ଟ କରିଛି ନିଶ୍ଚିତ। ତା' ସହିତ ଆର୍ଥିକ ପ୍ରାଚୁର୍ଯ୍ୟର ଉପଯୋଗର ମଧ୍ୟ ବହୁ ଉଦାହରଣ ଅଛି। ଓଡ଼ିଶାକୁ ମିସ୍‌ନାରିମାନେ ଆସିଥିଲେ ଇଂରେଜ ଶାସନ ଅମଳରେ, ଊନବିଂଶ ଶତାବ୍ଦୀର ତୃତୀୟ ଦଶନ୍ଧିର ପ୍ରାକ୍ କାଳରେ। ଆର୍ଥିକ ସ୍ୱଚ୍ଛଳତା ତଥା ପ୍ରାଶାସନିକ ସହଯୋଗରେ ସେମାନେ ଓଡ଼ିଶାର ଅନେକ ସ୍ଥାନରେ ଗୀର୍ଜା ଓ ବୃହତ୍ କେନ୍ଦ୍ରମାନ ସ୍ଥାପନ କରିଥିଲେ। ଦୀର୍ଘ ଦିନର ପ୍ରଚେଷ୍ଟା ସତ୍ତ୍ୱେ ଓଡ଼ିଶାର ଧାର୍ମିକ ତଥା ସାଂସ୍କୃତିକ ଚେତନାର ମୂଳପିଣ୍ଡ ସନାତନୀ ଜଗନ୍ନାଥୀ ଭାବଧାରାର ପ୍ରଗଲଭ ସ୍ରୋତସ୍ୱିନୀର ପ୍ରବାହରେ ଆଖି ଦୃଶିଆ ପ୍ରତିରୋଧ ସୃଷ୍ଟି କରିବାରେ ସକ୍ଷମ ହୋଇ ନ ଥିଲେ ହେଁ ଆଦିବାସୀ ବହୁଳ ଅଞ୍ଚଳରେ ଉଲ୍ଲେଖନୀୟ ସଫଳତା ହାସଲ କରିପାରିଛନ୍ତି। ସଫଳତା ପଛରେ ରହିଛି ଧର୍ମାନ୍ତରିତ ହୋଇଥିବା ଲୋକଙ୍କ ପାଇଁ ବିଦ୍ୟାଳୟ, ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ଇତ୍ୟାଦିର ପ୍ରତିଷ୍ଠା ଓ ଆର୍ଥିକ ସହାୟତା। ଅଭାବ, ଅନଟନ ଓ ଆଶା-ରହିତ ଜୀବନ ବିତାଉଥିବା ମଣିଷଟି ପାଇଁ ବିନା ପରିଶ୍ରମରେ କେବଳ ଅନ୍ୟ ଧର୍ମ ଗ୍ରହଣ କରିବା ପଛରେ ଥିବା

---

★ ଦୈନିକ "ସମ୍ବାଦ"; ୨୭ ସେପ୍ଟେମ୍ବର ୨୦୧୧

ସାମାନ୍ୟ ଆର୍ଥିକ ସ୍ୱଚ୍ଛଳତା ତଥା ଉନ୍ନତିର ଝଲକ ଟିକକର ଆକର୍ଷଣ କିଛି କମ୍ ନ ହେବା ସ୍ୱାଭାବିକ। ଅନ୍ୟ ପକ୍ଷରେ ଏହି ମାଗଣାର ମୋହ ହିଁ ସୃଷ୍ଟି କରେ ଚିରାଚରିତ ସୌହାର୍ଦ୍ଧ୍ୟପୂର୍ଣ୍ଣ ପରିବେଶରେ ବୈଷମ୍ୟ। ଆଉ ବୈଷମ୍ୟ ସୃଷ୍ଟି କରେ ଈର୍ଷା, ମତାନ୍ତର, ମନାନ୍ତର ଓ ହିଂସା। କେତେ କାଳ ଧରି ସ୍ନେହ ସହାନୁଭୂତି ଭିତରେ ଚଳୁଥିବା ଲୋକମାନେ ହୋଇଯାଆନ୍ତି ପରସ୍ପରରେ ଶତ୍ରୁ। ପ୍ରଶାସନିକ ଦୁର୍ବଳତା କେବଳ ତୁଲାଇ ଚାଲିଥାଏ ଅବାଞ୍ଛିତ ସହଯୋଗୀର ଭୂମିକା। ଘଟଣାକ୍ରମର ପ୍ରତିସ୍ତରରେ ସରକାରୀ ନିୟମ ପାଳନରେ କ୍ରମାଗତ ଖିଲାଫ କରି କରି ସମାଜର ସ୍ୱଚ୍ଛଳବର୍ଗ ସହ ଅଭାବଗ୍ରସ୍ତ ଓ ନିଷ୍ପେସିତ ବର୍ଗର ସନ୍ତୁଳିତ ବିକାଶମୂଳକ କାର୍ଯ୍ୟକ୍ରମର ଆବଶ୍ୟକତାକୁ ଏହା ନିର୍ଦ୍ଦେଶିତ କରିଦେଲେ ସତ, କିନ୍ତୁ "ଯେଉଁ ତିମିରେକୁ ସେହି ତିମିରେ" ବାସ୍ତବତା ହୋଇ ରହିଯାଏ।

ସେହିଭଳି ଏକ ଦୃଶ୍ୟ ଦେଖିବାକୁ ମିଳେ ଜାତି କ୍ଷେତ୍ରରେ। ସ୍ୱାଧୀନତା ପ୍ରାପ୍ତିର ପର ମୁହୂର୍ତ୍ତରେ ସମ୍ବିଧାନ ନିର୍ମାଣ ବେଳେ ସମାଜର ସର୍ବାଙ୍ଗୀନ ଉନ୍ନତି କଳ୍ପେ ଭାରତର ଜନନାୟକମାନେ ବ୍ରାହ୍ମଣ୍ୟ ଧର୍ମର ନୀତିହୀନତାର ଶିକାର ହୋଇ ବିକାଶ ପଥରେ ପଛରେ ରହିଯାଇଥିବା ଜାତିର ଲୋକମାନଙ୍କୁ ଅନ୍ୟ ବର୍ଗର ଲୋକମାନଙ୍କ ସମକକ୍ଷ କରିବା ଉଦ୍ଦେଶ୍ୟରେ ସଂରକ୍ଷଣ ବ୍ୟବସ୍ଥା କରିଥିଲେ। ଲକ୍ଷ୍ୟ ହାସଲର ସମୟ ସୀମା ଥିଲା ୧୦ ବର୍ଷ। ସଂରକ୍ଷଣ ଥିଲା ଶିକ୍ଷା ଓ ଚାକିରୀ କ୍ଷେତ୍ରରେ। ବିଡ଼ମ୍ବନାର କଥା ଯେ ସ୍ୱାଧୀନତା ପ୍ରାପ୍ତିର ୬ଟି ୧୦ ବର୍ଷ ବିତିଯାଇଥିଲେ ମଧ୍ୟ କୋହଳ ପ୍ରଶାସନ ଓ ରାଜନୈତିକ ଇଚ୍ଛାଶକ୍ତିର ଅଭାବ ହେତୁ ଲକ୍ଷ୍ୟ ହାସଲ ତ ଦୂରର କଥା ବରଂ ସଂରକ୍ଷଣ ଅନୁସୂଚିତ ଜାତି ଓ ଜନଜାତିର ସୀମା ଟପି ଓବିସି, ସଂଖ୍ୟାଲଘୁ ଓ ମହିଳା ଆଦି କ୍ଷେତ୍ରକୁ ସଂପ୍ରେକ୍ଷିତ ହେବାରେ ଲାଗିଛି। ସଂରକ୍ଷଣ ସାଜିଛି ଭୋଟ ସଂଗ୍ରହର ଏକ ବଡ଼ ରାଜନୈତିକ ଅସ୍ତ୍ର। ସବୁ ବର୍ଗର ଲୋକମାନଙ୍କୁ ସମାନ ଭାବରେ ଯୋଗ୍ୟ କରିବା ଅନ୍ତରାଳରେ ସମାନ ଭାବରେ ଅଯୋଗ୍ୟ କରିବା ହିଁ ସାର ହେଉଛି। ତୀବ୍ର ପ୍ରତିଦ୍ୱନ୍ଦ୍ୱିତାପୂର୍ଣ୍ଣ ଆଧୁନିକ ସମୟରେ ସଂରକ୍ଷଣ ମାଧ୍ୟମରେ ଦେଶର ଜନସଂପଦର ବହୁଭାଗକୁ ପ୍ରତିଯୋଗିତାବିମୁଖ କରାଯାଉଛି। ପରିଣାମସ୍ୱରୂପ ଅଳ୍ପ ଯୋଗ୍ୟତାରେ ବୃତ୍ତି-ସୁଲଭ ପାଠ୍ୟକ୍ରମଟିରେ ନାମ ଲେଖାଇବା, ଚାକିରି ଖଣ୍ଡିଏ ପାଇଯିବା ବା ପଦୋନ୍ନତିଟିଏ ମିଳିଯିବାର ମୋହରେ ଅନେକ ଅନ୍ୟ ବର୍ଗର ଲୋକମାନେ ମଧ୍ୟ ସଂରକ୍ଷଣ ବ୍ୟବସ୍ଥା ଭିତରକୁ ପଶିଯିବା ପାଇଁ ଉଦ୍ୟମରତ ଅଛନ୍ତି। ଏହି ନିୟମ ବର୍ହିଭୂତ ଅନୁପ୍ରବେଶ ରୋକିବାରେ ନିଦୁଆ ପ୍ରଶାସନର ନିଦ ହଜି ଯାଇଛି। ପରିସ୍ଥିତି ଏପରି ହୋଇଛି ଯେ ଦଣ୍ଡ ଭୋଗିବା ଭୟରେ ଜନପ୍ରତିନିଧିମାନେ ନିୟମ କରି ଜାତି ପ୍ରମାଣପତ୍ର ଦେବା କାର୍ଯ୍ୟରୁ ନିଜକୁ ଦୂରେଇ ନେଇଛନ୍ତି।

ମାଗଣାର ବିପଣୀ ମଧ୍ୟ ଖୋଲିଛି ଶିକ୍ଷା କ୍ଷେତ୍ରରେ। ବିଦ୍ୟାଳୟରେ ମାଗଣାରେ ମିଳିବ ଭୋଜନ, ପୋଷାକ, ବହି, ସାଇକେଲ୍, ଟିଭି, କମ୍ପ୍ୟୁଟର ଭଳି କେତେ କ'ଣ; କେବଳ ବିଦ୍ୟାକୁ ଛାଡ଼ି ସବୁକିଛି। ବିଦ୍ୟାଳୟରେ ଶିକ୍ଷକ ନଥିବା ବା ବିଦ୍ୟୁତ୍‌ସଂଯୋଗ ନଥିବା ପ୍ରତି ନଜର ନାହିଁ। ମାଗଣା କାର୍ଯ୍ୟକ୍ରମରେ କୁବେର ଭଳି ଅର୍ଥ ଶ୍ରାଦ୍ଧ କରୁଥିବା ସରକାରର ଶିକ୍ଷକ ନିଯୁକ୍ତି, ନିଯୁକ୍ତ ଶିକ୍ଷକଙ୍କ ପ୍ରାପ୍ୟ ଦରମା ଦେବା ଓ ଲାଇବ୍ରେରୀ, ଲାବରଟୋରି ଭଳି ଶୈକ୍ଷିକ ଭିତ୍ତିଭୂମି ସୃଷ୍ଟି ବେଳକୁ ପଡ଼ିଯାଏ ପ୍ରବଳ ଅର୍ଥାଭାବ। ପାଠପଢ଼ା ପାଇଁ ହେଉ କି ନ ହେଉ ମାଗଣା ଜିନିଷଗୁଡ଼ିକ ପାଇଁ ବିଦ୍ୟାଳୟରେ ନାଁ ଲେଖାଇ ଦେଲେ ହେଲା। ମାଗଣା ବହି ଓ ସାଇକେଲ୍‌କୁ ନିଜେ ବ୍ୟବହାର ନ କଲେ ଅନ୍ୟକୁ ତ ଅନ୍ତତଃ ବିକି ହେବ। ଗଣିତ, ସାହିତ୍ୟ, ବିଜ୍ଞାନ ଶିକ୍ଷା ଚୁଲିକୁ ଯାଉ, ଠକାମୀର ଶିକ୍ଷା ତ ମିଳିଲା।

ସରକାରୀ "ମାଗଣାପାଠ"ର ସର୍ବୋତ୍କୃଷ୍ଟ ଅଧ୍ୟାୟଟି ହେଲା ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଲୋକମାନଙ୍କୁ ମାଗଣା ଚାଉଳ, ଡାଲି, ପାଣି, ଔଷଧ ଓ ବିଦ୍ୟୁତ୍‌ଶକ୍ତି ଯୋଗାଇବାର ବ୍ୟବସ୍ଥା। ଦାରିଦ୍ର୍ୟ ସୀମାରେଖା ନିର୍ଦ୍ଧାରଣରେ ଅର୍ଥନୀତିଜ୍ଞମାନଙ୍କ ମଧ୍ୟରେ ମତୈକ୍ୟ ନଥିବା ବା ନିର୍ଦ୍ଦିଷ୍ଟ ଏକ ସୀମାରେଖା ତଳେ ଥିବା ପରିବାର ଆକଳନରେ ବହୁ ଭ୍ରମ ଥିବା ପୃଷ୍ଠଭୂମିରେ ଆବଶ୍ୟକତା ନିର୍ବିଶେଷରେ ସମସ୍ତଙ୍କୁ ଦି'ଟଙ୍କିଆ ଚାଉଳ, ପାଞ୍ଚଟଙ୍କିଆ ଡାଲି, ଇନ୍ଦିରା ଆବାସ, ବାର୍ଦ୍ଧକ୍ୟ ଭତ୍ତା ଆଦି ଯୋଗାଣ ଦୁର୍ନୀତିରେ ବଡ଼ ବଡ଼ ଘାଇ ସୃଷ୍ଟି କରିବା ସହ କୃଷିଭିତ୍ତିକ ଗ୍ରାମ୍ୟ ଅର୍ଥନୀତିକୁ ବିପର୍ଯ୍ୟସ୍ତ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଛି। ଗୋଟେ ପଟେ ମାଗଣା କାର୍ଯ୍ୟକ୍ରମଗୁଡ଼ିକରେ ପାଣି ଭଳି ଅର୍ଥ ଖର୍ଚ୍ଚ କରୁଥିବା ସରକାର କୃଷିକୁ ଦୀର୍ଘସ୍ଥାୟୀ ଲାଭଜନକ ବୃତ୍ତିରେ ପରିଣତ କରିବା ପାଇଁ, କଠିନ ଶ୍ରମଭିତ୍ତିକ ଅଥଚ ଅନିଶ୍ଚିତ କୃଷି ଉତ୍ପାଦନର ଉଚିତ ସହାୟକ ମୂଲ୍ୟ ନିର୍ଦ୍ଧାରଣ, କୃଷି ଉତ୍ପାଦନ ସଂରକ୍ଷଣ ପାଇଁ ଅଧିକରୁ ଅଧିକ ଶୀତଳଭଣ୍ଡାର ସୃଷ୍ଟି ବା କୃଷି ଉତ୍ପାଦନର ବ୍ୟାବସାୟିକ ମୂଲ୍ୟବୃଦ୍ଧି ପାଇଁ କୃଷି ଭିତ୍ତିକ ମଧ୍ୟମ-ଶିଳ୍ପ (Intermediate Technology) ପ୍ରତିଷ୍ଠା ଭଳି ପଦକ୍ଷେପ ନେବା ପାଇଁ ସଦା ବିମୁଖ। ବନ୍ୟା ଓ ମରୁଡ଼ିର ପ୍ରତିକାର ପାଇଁ ଦୀର୍ଘମିଆଦୀ ଯୋଜନା ନାହିଁ। ଏପରିକି ଜଳସେଚନ କି ବିହନ କି ସାର ଯୋଗାଣର ଧାରାବାହିକ କାର୍ଯ୍ୟକ୍ରମରେ ମଧ୍ୟ ବହୁ ସରକାରୀ ଅନିୟମିତତା। ଇଂରେଜମାନେ କହୁଥିବା, "ମୌସୁମୀ ବାୟୁ ଠିକ୍ ଥିଲେ ଭାରତକୁ ଶାସନ କରିବା ସହଜ" କଥାଟି ଆଜି ବି ଉଣା ଅଧିକେ ପ୍ରଯୁଜ୍ୟ। ଚଷା ଭାଇ "ଖରା ବରଷାରେ ଖଟି ନ ଖୋଇଲେ, ଅଟକିବ ସବୁ କଳମ

ଘଷା" ପ୍ରତି କାହାରି ଭ୍ରୁକ୍ଷେପ ନାହିଁ। ମହାରାଷ୍ଟ୍ର, ଉତ୍ତରପ୍ରଦେଶ, ପଞ୍ଜାବ, ହରିଆନା ଭଳି ଓଡ଼ିଶାରେ ଶକ୍ତିଶାଳୀ କୃଷକ ସଂଗଠନର ଅନୁପସ୍ଥିତି ମଧ୍ୟ କୃଷିକୁ ସରକାରୀ ଅବହେଳାର ସହଜ ଶିକାର ହେବାରେ ସହାୟକ ହେଉଛି। ଫଳତଃ ଓଡ଼ିଶାର କୃଷି ଉତ୍ପାଦନ ବହୁ ଦଶନ୍ଧି ଧରି ମୋଟାମୋଟି ଭାବରେ ସ୍ଥିର ରହିଥିବା ସ୍ଥଳେ, ଋଣଗ୍ରସ୍ତ କୃଷକଙ୍କ ଆତ୍ମହତ୍ୟାର କାହାଣୀ ବଢ଼ିଚାଲିଲା ବେଳେ, ଗାଁ ଗହଳର ଯୁବଗୋଷ୍ଠୀ କୃଷିକୁ ଛାଡ଼ି ସହରାଭିମୁଖୀ ହେଉଛି ବା ମାଗଣା ଖାଇ ପରିଶ୍ରମ ବିମୁଖ ହୋଇ ଏକ ସର୍ବନିମ୍ନମାନର ଜୀବନଯାପନରେ ସନ୍ତୁଷ୍ଟ ରହୁଛି। ଉଭୟ ଗାଁ ଓ ସହର ଏହାର କୁପରିଣାମ ଭୋଗୁଛନ୍ତି। ଦେଶର ଅର୍ଥନୀତି ଅସନ୍ତୁଳିତ ହେବାରେ ଲାଗିଛି। ଏହା ଯେ ଦିନେ ଏକ ବିସ୍ଫୋରକ ପରିସ୍ଥିତିର ସୃଷ୍ଟି ନ କରିବ କିଏ କହିବ। ପେଟ ପାଇଁ ନୁହେଁ, ଭୋଟ ପାଇଁ ସବୁ ନାଟ ଦେଶର କାଳ ହୋଇଛି।

ଆମ ଜାତୀୟ ଜୀବନରେ ଐକ୍ୟ, ସଂହତି ଓ ଜାତିପ୍ରୀତିର ଅଭାବ ମୂଳରେ ମାଗଣାରେ ନ ହେଲେ ବି ସହଜରେ ମିଳିଥିବା ସ୍ୱାଧୀନତା ବୋଲି କୁହାଯାଇଥାଏ । କୁହାଯାଏ ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ଓ ଅହିଂସା ଭଳି ଅଭିନବ ଅସ୍ତ୍ର ଆଗରେ ବ୍ରିଟିସ୍ ସାମ୍ରାଜ୍ୟବାଦୀ ଶକ୍ତି ମାନସିକ ସ୍ତରରେ ପରାସ୍ତ ହୋଇ ଭାରତକୁ ସ୍ୱାଧୀନତା ପ୍ରଦାନର ନିଷ୍ପତ୍ତି ନେଇଥିଲା। କିନ୍ତୁ 'ପରାଜୟ'ର ପ୍ରତିଶୋଧ ନେଇଥିଲା ଦେଶକୁ ଦୁଇଭାଗ କରି। ସେହି ଦୁର୍ଭାଗ୍ୟଜନକ ଦେଶ ବିଭାଜନ ଆମ ଜାତୀୟ ଜୀବନକୁ ବ୍ୟସ୍ତ, ବିବ୍ରତ ଓ ରକ୍ତାକ୍ତ କରି ଚାଲିଛି ବର୍ଷ ବର୍ଷ ଧରି। ଏଭଳି ଏକ ନିଷ୍ଠୁର ପୃଷ୍ଠଭୂମି ଉପରେ ସରକାରଗୁଡ଼ିକଙ୍କର ଦାରିଦ୍ର୍ୟ ଦୂରୀକରଣ ନାଁରେ ଭୋଟ ସଂଗ୍ରହ ନିମିତ୍ତ ମାଗଣା କାର୍ଯ୍ୟକ୍ରମଗୁଡ଼ିକ ଦେଶର ବହୁଭାଗ ଜନସମ୍ପଦକୁ ଅଯୋଗ୍ୟ, ଅକ୍ଷମ ଓ ଆତ୍ମପ୍ରତ୍ୟୟହୀନ କରି ଗଢ଼ି ତୋଳୁଛି। ଏହା ଗୋଟେ ପଟେ ଆଜିର ଜଗତିକରଣ ଯୁଗରେ ଦେଶକୁ ଅର୍ଥନୈତିକ ପରାଧୀନତା ଆଡ଼କୁ ଠେଲିଦେବା ସହ, ଅନ୍ୟପଟେ ବିଶ୍ୱ କ୍ଷେତ୍ରରେ ତଥା ଭାରତ ଭଳି ଜନବହୁଳ ରାଷ୍ଟ୍ରରେ ଖାଦ୍ୟସଙ୍କଟର ଆଗମନକୁ ତ୍ୱରାନ୍ୱିତ କରୁ ନାହିଁ ତ ! ମାଗଣାର ମହକ ତଳେ ସମାଜ ଓ ସଭ୍ୟତା ବିନାଶର ଭୂତାଣୁ ଛପି ରହିନାହିଁ ତ। ଏଭଳି ଏକ ମହାମାରୀ ସଂକ୍ରମଣ ଅବସରରେ ଇତିହାସ କ'ଣ ଆମର ସବୁ ଦୋଷ ଦୁର୍ବଳତାକୁ କ୍ଷମା କରି କେବଳ ମୂକସାକ୍ଷୀଟିଏ ହୋଇ ରହିଯିବ ?



# ମନୋରଞ୍ଜନର ସଂସ୍କୃତି ବନାମ ଜ୍ଞାନ-ବିଜ୍ଞାନର ସଂସ୍କୃତି

"ସଂସ୍କୃତି" ଏକ ବହୁଳ ବ୍ୟବହୃତ ଶବ୍ଦ। ବିଶେଷ କରି କଳାକ୍ଷେତ୍ର ଓଡ଼ିଶାରେ। ଶବ୍ଦଟିର ବ୍ୟବହାରକୁ ଲକ୍ଷ୍ୟ କଲେ ପରିଷ୍କାର ଜଣାପଡ଼େ ସତେ ଯେପରି ସଂସ୍କୃତି ଶବ୍ଦଟି ନାଚ, ଗୀତ, ଯାନିଯାତ୍ରା ଓ ମେଳାମହୋତ୍ସବ ସର୍ବସ୍ୱ। ପୁଣି ପୂଜାର୍ଚ୍ଚନାର ଆୟୋଜନରେ ଶୁଦ୍ଧତା କି ଶାସ୍ତ୍ରୀୟତା ନାହିଁ। ନାଚରେ ହସ୍ତ, ପଦ ଓ ମୁଖମଣ୍ଡଳରେ ଲାସ୍ୟର ସ୍ଥାନ ବକ୍ଷ ଓ ନିତମ୍ବ ମାଂସପେଶୀ ଗୁଡ଼ିକର ଦ୍ରୁତ ସଂଚାଳନ ଅକ୍ତିଆର କରି ନେଇଛି। ଗୀତରେ ଭାବ ଓ ସଙ୍ଗୀତର ଚୁମ୍ବକୀୟତା ନାହିଁ ବରଂ ଗୀତ ଯେପରି ପ୍ରୟାସ କରିଚାଲିଛି ଜ୍ୟାକ୍‌ସନୀୟ ଅଙ୍ଗଭଙ୍ଗୀର ସାହାଯ୍ୟ ନେଇ ବଞ୍ଚିରହିବା ପାଇଁ। ଅପସଂସ୍କୃତି ତଡ଼ିଚାଲିଛି ସଂସ୍କୃତିକୁ ରାସ୍ତାରୁ ହଟିଯିବା ପାଇଁ ଅର୍ଥନୀତିରେ କଳାଧନ ଧଳାଧନକୁ ତଡ଼ିବା ଭଳି, ରାଜନୀତିରେ ଚରିତ୍ରହୀନମାନେ ସଚ୍ଚରିତ୍ରମାନଙ୍କୁ ତଡ଼ିଲା ଭଳି। ଏଭଳି ଏକ 'ସାଂସ୍କୃତିକ' ମାହୋଲରେ ସତ୍ୟ ଓ ସ୍ପଷ୍ଟବାଦିତା, କର୍ତ୍ତବ୍ୟପରାୟଣତା, ଦାୟିତ୍ୱବୋଧ ଓ ଶିକ୍ଷାପ୍ରୀତି ସାଂସ୍କୃତିକ ପରିସରରୁ ବିତାଡ଼ିତ ହୋଇଚାଲିଛନ୍ତି। ସେ ସବୁ ପ୍ରଚେଷ୍ଟାର ସ୍ଥାନ ନେଇଛନ୍ତି ବାର ମାସରେ କେବଳ ତେର ପର୍ବ ନୁହେଁ, ଅସଂଖ୍ୟ ମଉଜ ମଜଲିସ୍ ସର୍ବସ୍ୱ ମସ୍ତିଭରା ମହୋତ୍ସବ। ଓଡ଼ିଶାର ଲୋକମାନେ ଯେପରି ଭାବରେ ବର୍ଷତମାମ ମେଳା-ମହୋତ୍ସବ, ନାଚ-ଗୀତରେ ମସ୍‌ଗୁଲ୍ ଅଛନ୍ତି, ଜଣାଯିବ ସତେ ଯେପରି ଓଡ଼ିଶା ଭୂଖଣ୍ଡ ହିଁ ଗୋଟିଏ ଭୂ-ସ୍ୱର୍ଗ ଓ ଓଡ଼ିଆମାନେ ଦୁଧ, ମହୁ, ଖିରି ପୁରିରେ ଭାସୁଛନ୍ତି। କେତେବେଳେ କେଉଁଠି ବନ୍ୟା, ବାତ୍ୟା, ମରୁଡ଼ି ଓ ଦୈବୀ ଦୁର୍ବିପାକ ପଡ଼ିଗଲେ ମହାନନ୍ଦରେ କାଳାତିପାତ କରୁଥିବା ଲୋକମାନଙ୍କ ଭିତରେ ଲୁଚି ରହିଥିବା କଳ୍ପନାତୀତ ଦାରିଦ୍ର୍ୟ ଉକୁଟି ଉଠେ। ବୁଝିହୁଏ

★ ଦୈନିକ "ସମ୍ବାଦ"; ୨୨ ଡିସେମ୍ବର ୨୦୧୧

ନାହିଁ କାହିଁକି ଆମ ଚରିତ୍ରରେ ଏ ବିରୋଧାଭାସ, କାହିଁକି ଆମେ ମନୋରଞ୍ଜନ ସଂସ୍କୃତିରେ ମସ୍‌ଗୁଲ୍ ହୋଇ ଆମ ନିଜ ଜୀବନର ବାସ୍ତବିକତା ପ୍ରତି ଏତେ ଅଚେତନ ?

ଆମର ଏ ଅଚେତନ ଅବସ୍ଥାର ଫଳସ୍ୱରୂପ ଭକ୍ତି ଭାବରେ ଜ୍ଞୁଡୁବୁଡୁ ଓ ସଂସ୍କୃତିର ଡିଣ୍ଡିମ ପିଟୁଥିବା ଓଡ଼ିଶାର ଲୋକେ ଶ୍ରେଷ୍ଠଶ୍ରେଣୀୟ ମିଛୁଆ, ଖଚୁଆ, ଲାଞ୍ଚୁଆ ଭାବରେ ସୁପରିଚିତ। ଏହି ବ୍ୟାଧିର ଚିହ୍ନ ଛୋଟଠାରୁ ବଡ଼ ଯାଏ ପ୍ରତି ଚରିତ୍ରରେ ତଥା ବ୍ୟକ୍ତିଗତ, ସାମାଜିକ ଓ ରାଜନୈତିକ ଭଳି ପ୍ରତି କ୍ଷେତ୍ରରେ ସୁସ୍ପଷ୍ଟ। ଏହି ପୁଞ୍ଜି ବଳରେ ହିଁ ଆମେ ଆଜି ଭାରତବର୍ଷର ଦରିଦ୍ରତମ ରାଜ୍ୟ। ସବୁଠାରୁ ଉତ୍କଟ ଦାରିଦ୍ର୍ୟ ଦେଖିବା ପାଇଁ ଲୋକେ ଓଡ଼ିଶା ଆସୁଛନ୍ତି। ଆମର ମୂକ ବଧିର ଓଡ଼ିଆ ଅସ୍ମିତା ଉପରେ ଏହାର କୌଣସି ପ୍ରଭାବ ପଡ଼େନାହିଁ। ସେଥିପାଇଁ ଶିକ୍ଷା, କୃଷି, ସ୍ୱାସ୍ଥ୍ୟ, ଶିଳ୍ପ, ଶକ୍ତି ଭଳି ପ୍ରତି ଗୁରୁତ୍ୱପୂର୍ଣ୍ଣ ସମାଜମଙ୍ଗଳ କ୍ଷେତ୍ରରେ ଆମର ଉଦ୍ୟମ, ଉତ୍କର୍ଷ ଓ ଉତ୍ପାଦନ ସବୁ କିଛିର ଗତି ତଳକୁ ତଳକୁ ବୁଡ଼ିଗଲା ଗୋଡ଼ ଭଳି।

ଏଭଳି ଅବସ୍ଥାର ମୁଖ୍ୟ କାରଣ ହେଲା ଓଡ଼ିଆ ସଂସ୍କୃତିରେ କର୍ମ ପ୍ରତି ସମ୍ମାନ ନାହିଁ, ଜ୍ଞାନ ପ୍ରତି ଆଦର ନାହିଁ। ସତ୍ୟ ପଥେ, ଧର୍ମ ପଥେ ଚଳାଇବା ପାଇଁ ଭଗବାନଙ୍କୁ ପ୍ରାର୍ଥନା କରିବା କ୍ଷଣରେ ହିଁ ଆମେ ଅସତ୍ୟ ଓ ଅଧର୍ମରେ ଚାଲିବାର ପ୍ରତିଜ୍ଞା କରିଥାଉ। ଆମର ଜୀବନଚର୍ଯ୍ୟା ହିଁ ଆମର ଏ ପ୍ରତିଜ୍ଞାର ଜ୍ୱଳନ୍ତ ସ୍ୱାକ୍ଷର। ଆମର ଛଳନାମୟ ଦ୍ୱୈତ-ବ୍ୟକ୍ତିତ୍ୱ ହିଁ ଆମ ଅଧୋଗତିର ମୂଳପାଠ। ଆଉ ଯେଉଁମାନେ ନିଜ ନିଜ ଅନ୍ତରାତ୍ମାର ଆହ୍ୱାନରେ ବ୍ୟତିକ୍ରମର ଜୀବନ ବିତାଇଛନ୍ତି, ଆମେ ସେମାନଙ୍କୁ ଯଥାଶୀଘ୍ର ଭୁଲିବାରେ କାର୍ପଣ୍ୟ କରିନାହୁଁ। ଓଡ଼ିଆ ପୁନର୍ଜାଗରଣର ଭଗୀରଥ ତଥା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ପ୍ରମୁଖ ଶିଳ୍ପୀ ମଧୁସୂଦନ ଦାସଙ୍କର ଶହେ ପଚାଶ ତମ ଜନ୍ମ ପୂର୍ତ୍ତି ପାଳନରେ ଓଡ଼ିଆଙ୍କ ଆନ୍ତରିକତା ଓ ଚଳିତ ବର୍ଷ ପାଳିତ ହେଉଥିବା ରବୀନ୍ଦ୍ର ନାଥ ଟାଗୋରଙ୍କ ଶହେ ପଚାଶ ତମ ଜନ୍ମବାର୍ଷିକୀ ପାଳନର ବ୍ୟାପକତାକୁ ତୁଳନାତ୍ମକ ଉଦାହରଣ ଭାବେ ନିଆଯାଇପାରେ। ଗୋଟିଏ କର୍ମ ବିମୁଖ, ଜ୍ଞାନପିପାସା ବିବର୍ଜିତ ତଥା ସ୍ଖଳିତ ଚରିତ୍ରାବିଷ୍ଟ ଜାତି କ୍ଷେତ୍ରରେ ଯାହା ପ୍ରତ୍ୟାଶିତ ତାହା ହିଁ ଘଟିଚାଲିଛି ଆମ କ୍ଷେତ୍ରରେ ଦିନ ପ୍ରତିଦିନ। ଆମ ପତିତାବସ୍ଥାର ସୁଯୋଗ ନେଇ ସରକାର ମଧ୍ୟ ସମାଜ ମଙ୍ଗଳ ଓ ଗଣତନ୍ତ୍ରର ଦୁହାଇ ଦେଇ ନିଭାଇ ଚାଲିଛି ଦ୍ୱୈତ-ବ୍ୟକ୍ତିତ୍ୱଧାରୀ ଖଳ ନାୟକର ଭୂମିକା ଓ ଫିଟାଇ ଚାଲିଛି ନିରନ୍ତର ଶାସନ ହାସଲର ନୂଆ ନୂଆ ଫନ୍ଦିଫିକର।

ଦୁରବସ୍ଥାରୁ ମୁକ୍ତି ନିହିତ କେବଳ ଆମ ମାନସିକତା ପରିବର୍ତ୍ତନରେ। ନିଜକୁ ପୃଥିବୀର ଏକ ପ୍ରମୁଖ ସଂସ୍କୃତିସମ୍ପନ୍ନ ଜାତି ଭାବେ ବାହାସ୍ଫୋଟ ମାରୁଥିବା ଜାତି

ଏତକ ଉପଲବ୍ଧି କରିବାରେ ଅକ୍ଷମ ଯେ ଜ୍ଞାନ-ବିଜ୍ଞାନ ହିଁ ଆନ୍ତର୍ଜାତିକ ସଂସ୍କୃତିର ଉଜ୍ଜ୍ୱଳତମ ଧାରା। ଜ୍ଞାନ-ବିଜ୍ଞାନର ଉପଯୋଗ ହିଁ ଦେଇଛି ମାନବ ସଭ୍ୟତାକୁ ଯୁଗ ଯୁଗର ବ୍ୟକ୍ତିତ୍ୱ; ହେଉ ଅବା ସେ ଆଦିମ ପ୍ରସ୍ତର ଯୁଗ ଅବା ଶିଳ୍ପ ବିପ୍ଳବ ଅବା ବର୍ତ୍ତମାନର କମ୍ପ୍ୟୁଟର ଯୁଗ। ନ ଥାନ୍ତା ଯଦି କାଗଜ, କଲମ, ରେଳ, ବ୍ୟୋମଯାନ, କଳକାରଖାନା, କମ୍ପ୍ୟୁଟର ବଣପାହାଡ଼ରେ ବୁଲି ଖାଦ୍ୟ ଅନ୍ୱେଷଣ କରିବାରେ ବି ଆମର କିଛି ଆପତ୍ତି ନ ଥାନ୍ତା। ଆଇ-ପ୍ୟାଡ୍, ଆଇ-ଫୋନ୍, ଆଇ-ବଲ୍ ଭଳି ଉପକରଣଗୁଡ଼ିକ ସହ ଓଡ଼ିଆ ଜନଜୀବନର ସମ୍ପୃକ୍ତି କିଛି ବି ନଥିବା ସ୍ଥଳେ ଷ୍ଟିଭ୍ ଜବ୍‌ସଙ୍କ ତିରୋଧାନରେ ଓଧ ସାଙ୍ଗରେ ବଣଭୁଆ ପରି ଗଦ ଗଦ ହୋଇ ଦି ପଦ ଲେଖିଲା ବେଳେ ଆମେ ସମ୍ପୂର୍ଣ୍ଣ ଭାବରେ ଭୁଲିଯାଉ ଯେ କି ପ୍ରକାର ପରିବେଶ ସେମାନଙ୍କ ଘରିପଟେ ଉପଲବ୍ଧ ଯେ ଅଧାରୁ ପାଠ ଛାଡୁଥିବା ପିଲାମାନେ ମଧ୍ୟ ସେମାନଙ୍କ ସୃଜନୀଶକ୍ତି ବଳରେ ଦୁନିଆକୁ କିଛି ନା କିଛି ନୂଆ କଥା ଦେଇ ପାରିଲେ ଯାହା କି ଆମର ବହୁ ଚର୍ଚ୍ଚିତ ମେଧାବୀ ଛାତ୍ରଛାତ୍ରୀମାନେ ଦେଇପାରି ନାହାନ୍ତି। ବର୍ତ୍ତମାନ ଆମ ପରିସ୍ଥିତି ତ ଆହୁରି ଭିନ୍ନ। ତଥାକଥିତ ମେଧାବୀ ଛାତ୍ରମାନେ ପାଠ-ଶୂନ୍ୟ ପାଠଗୁଡ଼ିକ ପଢ଼ି ବଡ଼ ବଡ଼ କମ୍ପାନି ହାଟରେ ନିଲାମ ହେଉଛନ୍ତି, ସେମାନଙ୍କ କମ୍ପାନି ପରିଚାଳନା ଦାୟିତ୍ୱ ନେବା ପାଇଁ। ଜ୍ଞାନଚର୍ଚ୍ଚା କରିବ କିଏ, କେତେବେଳେ ? ଆବିଷ୍କାର, ଉଦ୍ଭାବନ କଥା ଉଠୁଛି କେଉଁଠୁ ? ଜଣାପଡୁଛି, ଯଦି ଅକସ୍ମାତ୍ ସାରା ପୃଥିବୀରେ କେବଳ ଓଡ଼ିଆମାନେ ବସବାସ କରୁଥାଆନ୍ତେ, ତେବେ ସ୍ୱର୍ଗରାଜ୍ୟର ସେ ଜ୍ଞାନରୂପକ ଆପଲ୍‌ଟି ଚିରକାଳ ପାଇଁ ଅଇଁଠା ନ ହୋଇ ଅକ୍ଷତ ହୋଇ ରହିଥାଆନ୍ତା।

ପଡ଼ୋଶୀ ବଙ୍ଗଳାର ପରିବେଶ କିନ୍ତୁ ଭିନ୍ନ। ଜ୍ଞାନର ଆଦର ପାଇଁ ସେମାନେ ସୁବିଦିତ। ଆଚାର୍ଯ୍ୟ ଜଗଦୀଶ ଚନ୍ଦ୍ର, ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର (ଯାହାଙ୍କର ଶହେ ପଚାଶତମ ଜନ୍ମବାର୍ଷିକୀ ମଧ୍ୟ ଚଳିତ ବର୍ଷ ପାଳିତ ହେଉଛି) ପ୍ରଭୃତି ବଙ୍ଗଳାର ମନୀଷୀମାନେ ଭାରତରେ ବିଜ୍ଞାନର ଗଭୀର ଅଧ୍ୟୟନ ଓ ଉଚ୍ଚମାନ ଗବେଷଣାର ଅୟମାରମ୍ଭ କରି ପୃଥିବୀବାସୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ। ସେହି ପରମ୍ପରାକୁ ସତ୍ୟେନ୍ଦ୍ର ନାଥ ବୋଷ୍, ମେଘନାଦ ସାହା, ପ୍ରଶାନ୍ତ ଚନ୍ଦ୍ର ମହାଲାନୋବିଶ୍ ଓ ଡାକ୍ତର ବିଧାନ ଚନ୍ଦ୍ର ରାୟ ପ୍ରଭୃତି ବୈଜ୍ଞାନିକମାନେ ସମୃଦ୍ଧ କରିଚାଲିଲେ। ନିଜ ନିଜ ଉଦ୍ୟମରେ ଗବେଷଣା ପ୍ରତିଷ୍ଠାନ ଓ ବିଜ୍ଞାନଭିତ୍ତିକ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କଲେ। ସେହି ପରିବେଶ ଯୋଗୁଁ ହିଁ ବଙ୍ଗଳାର ମାଟିରେ ରୋନାଲ୍ଡ଼ ରସ୍, ସି.ଭି.ରମଣ, ରବୀନ୍ଦ୍ର ନାଥ ଟାଗୋର, ମଦର ଟେରେସା ଓ ଅମର୍ତ୍ତ୍ୟସେନ୍‌ଙ୍କ ଭଳି ନୋବେଲ ବିଜୟୀ ଜ୍ଞାନ-ସମୃଦ୍ଧ ବ୍ୟକ୍ତିତ୍ୱ ସବୁ ବିକଶିତ

ହେଲେ। ଭୁଲିଯିବା ଉଚିତ ହେବ ନାହିଁ ଯେ ଜଣେ ଜ୍ଞାନୀ, ଗୁଣୀ, ବଙ୍ଗାଳୀ ପ୍ରଫେସର୍ ବିଦ୍ୟାନିଧି ଯୋଗେଶ ଚନ୍ଦ୍ର ରାୟଙ୍କ ଯୋଗୁଁ ହିଁ ଆମେ ସାମନ୍ତ ଚନ୍ଦ୍ରଶେଖରଙ୍କୁ ମହାମହୋପାଧ୍ୟାୟ ଭାବରେ ପାଇଲୁ ଓ ଦୁନିଆ ଚିହ୍ନିଲା। କାହିଁକି କେଜାଣି ପୃଥିବୀର ବିଖ୍ୟାତ ବିଶ୍ୱବିଦ୍ୟାଳୟଗୁଡ଼ିକରେ ଅଧ୍ୟୟନ ଓ ଗବେଷଣା ସୁଯୋଗ ପାଇଥିବା ପ୍ରଥମ ପିଢ଼ି ଓଡ଼ିଆ ବିଦ୍ୱାନ୍‌ଗଣ ଓଡ଼ିଶା ମାଟିରେ ସେଭଳି ପରିବେଶ ସୃଷ୍ଟି କରିବାରେ ଅସଫଳ ହେଲେ। ସତେ ଯେପରି ଡିପିଆଇ ଓ କୁଳପତି ଭଳି ପଦପଦବି ଋପରେ ସେମାନେ ଚିପି ହୋଇଗଲେ। ଜ୍ଞାନ-ବିଜ୍ଞାନ ପ୍ରତି ଶ୍ରଦ୍ଧା ତଥା ଅଧ୍ୟୟନ ଓ ଗବେଷଣାର ସଂସ୍କୃତି ଆଧୁନିକତାର ଉପାଦାନ ଗ୍ରହଣ କରି ସତେଜ ହେବା ପରିବର୍ତ୍ତେ ମରିମରି ଋଲିଲା।

ପ୍ରାଚୀନ ଭାରତରେ ଜ୍ଞାନ ବିଜ୍ଞାନର ଉତ୍କର୍ଷ ବିଶ୍ୱବିଦିତ ଥିଲା। ଗଣିତ, ବିଜ୍ଞାନ, ସାହିତ୍ୟ, ଦର୍ଶନ ଇତ୍ୟାଦିରେ ଅନନ୍ୟ ଅବଦାନ ଆଧାରରେ ନାଳନ୍ଦା, ତକ୍ଷଶିଳା ଓ ପୁଷ୍ପଗିରି ଭଳି ବିଶ୍ୱବିଦ୍ୟାଳୟଗୁଡ଼ିକୁ ସୁଦୂର ପାରସ୍ୟ, ଚୀନ୍ ଇତ୍ୟାଦି ଦେଶରୁ ଜ୍ଞାନ ଲିପ୍ସୁମାନେ ଧାଇଁ ଆସୁଥିଲେ। କିନ୍ତୁ ପ୍ରାୟ ୧୦୦୦ ଖ୍ରୀଷ୍ଟାବ୍ଦ ପରଠାରୁ ଅଧ୍ୟୟନ ଓ ଗବେଷଣାର ଧାରା ପ୍ରତିହତ ହେଲା। ଏହି ସ୍ଖଳନର କାରଣ ଖୋଜିବାକୁ ଯାଇ ଆଋର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ରଙ୍କ ଦ୍ୱାରା ୧୯୦୨ରେ ଲିଖିତ "ହିନ୍ଦୁ ରସାୟନ ବିଜ୍ଞାନର ଇତିହାସ" ବହିରେ ତିନିଟି କାରଣର ଅବତାରଣା କରାଯାଇଛି। ସେଗୁଡ଼ିକ ହେଲା ଉଗ୍ର ଜାତି ପ୍ରଥା, ମନୁବାଦ ଓ ଶଙ୍କରଙ୍କ ମାୟାତତ୍ତ୍ୱ। ଉଗ୍ର ଜାତି ପ୍ରଥା ପୁରୁଷାନୁକ୍ରମିକ ଭାବରେ ଅଧ୍ୟୟନକୁ କେବଳ ଉଚ୍ଚବର୍ଣ୍ଣ ଲୋକମାନଙ୍କର ଏକଋଟିଆ ସୌଖୀନ କାର୍ଯ୍ୟକ୍ରମରେ ପରିଣତ କଲା। ସେହିଭଳି ଜ୍ଞାନ ଚର୍ଚ୍ଚା ଓ କର୍ମ କୌଶଳ ପରସ୍ପରଠାରୁ ବିଚ୍ଛିନ୍ନ ହୋଇଗଲେ। ଶଙ୍କରଙ୍କ 'ଜଗତ୍‌ମିଥ୍ୟା' ତତ୍ତ୍ୱ ପ୍ରକୃତି ଅଧ୍ୟୟନକୁ ମୂଳରୁ ହିଁ ମୂଲ୍ୟହୀନ ସାବ୍ୟସ୍ତ କଲା। ଯେଉଁ ରହସ୍ୟମୟ ନିଖିଳ ବିଶ୍ୱର ଅବଲୋକନ, ପର୍ଯ୍ୟବେକ୍ଷଣ ଓ ମନନ ସମସ୍ତ ଜ୍ଞାନ ବିଜ୍ଞାନର ମୂଳମନ୍ତ୍ର, ସେହି ପ୍ରକୃତିଠାରୁ ମୁହଁ ଆଡ଼େଇ ନେଲେ ଜ୍ଞାନର ଉନ୍ମେଷ ହେବ ବା କିପରି ? ମଣିଷ ମନରେ ଅନୁସନ୍ଧିତ୍ସା, ଜିଜ୍ଞାସା, ଆଶ୍ଚର୍ଯ୍ୟ ଓ ସୌନ୍ଦର୍ଯ୍ୟର ଭାବ ଭରିବ କିଏ? ହୁଏତ ଓଡ଼ିଆ ଜାତିର ମାନସିକତା ଉପରୋକ୍ତ ତିନିଟି ଯାକ ବ୍ୟାଧିରେ ଅଧିକ ଭାରାକ୍ରାନ୍ତ। ଭଗବାନ କରନ୍ତୁ ଏ ଭାବଧାରା ଅପରିବର୍ତ୍ତନୀୟ ହୋଇନଥାଉ।

ସୁଗମ ସଙ୍ଗୀତକୁ ସଙ୍ଗୀତର ମୁକୁଟ ପିନ୍ଧାଇ ଆମେ ତଥ୍ୟାଭିଜ୍ଞ ମହଲରେ ଉପହସିତ ହେଲା ଭଳି ସଂସ୍କୃତିକୁ ମଧ୍ୟ କେବଳ ମନୋରଞ୍ଜନଧର୍ମୀ ଗୀତ, ନାଚ,

ମେଳାମହୋତ୍ସବର ସଂକୀର୍ଣ୍ଣ ପରିଧି ମଧ୍ୟରେ ଆବଦ୍ଧ କରିବା ଆଉ ଏକ ଭ୍ରମ ହେବ। ଶୁଦ୍ଧ ଜୀବନଚର୍ଯ୍ୟା, ଉଚ୍ଚ ଚିନ୍ତା ଓ ପ୍ରକୃତିନିବିଷ୍ଟତା ଯେ ସଭ୍ୟତା ଓ ସଂସ୍କୃତିର ପ୍ରଗଲ୍‌ଭ ପ୍ରବାହ ସେତକ ଆମକୁ ହୃଦୟଙ୍ଗମ କରିବାକୁ ହେବ। ପ୍ରକୃତି ମଧ୍ୟ ଆମକୁ ତା' ଅଧ୍ୟୟନରେ ତଲ୍ଲୀନ ହେବା ପାଇଁ ନିମନ୍ତ୍ରଣ କରିଚାଲିଛି। ତା' ନ ହୋଇଥିଲେ ସେ ଏତେ ବିରାଟ ବିଶ୍ୱରେ କେବଳ ମାତ୍ର ପୃଥିବୀ ଭଳି ଏକ ଛୋଟ ଗ୍ରହ ପୃଷ୍ଠରେ ଧୀଶକ୍ତି ସମ୍ପନ୍ନ ଜୀବ ଭାବରେ ଆମକୁ ସୃଷ୍ଟି କରିବାରେ ଏତେ ଅନନ୍ୟତା ଭରି ଦେଇନଥାନ୍ତା। ଆମର ଜଡ଼ତା ଓ ସ୍ଥାଣୁତ୍ୱରୁ ମୁକ୍ତି ନିହିତ ଅଛି ପ୍ରକୃତିର ଏହି ନିମନ୍ତ୍ରଣ ଗ୍ରହଣ କରିବାରେ, ମାନବବାଦୀ ଜ୍ଞାନ-ବିଜ୍ଞାନର ସଂସ୍କୃତିକୁ ଆପଣେଇବାରେ। ଶୁଭସ୍ୟ ଶୀଘ୍ରମ୍।



# ନୂଆ ଚିନ୍ତା, ନୂଆ ଭାବନା

ନୂତନତା ହିଁ ସଭ୍ୟତା । ଯେତେବେଳେ ମଣିଷ ତା'ର ପ୍ରଚଳିତ ଜୀବନଧାରାଠାରୁ ଟିକେ ଆଡ଼େଇ ହୋଇ ନୂଆ କିଛି ଚିନ୍ତା କରିଛି ଓ ନୂଆ ଚିନ୍ତାର ଆଧାରରେ କଳା, ସ୍ଥାପତ୍ୟ, ସାହିତ୍ୟ, ଦର୍ଶନ ଓ ବିଜ୍ଞାନରେ ଚମତ୍କାରୀ ନୂଆ କିଛି ବାଢ଼ିଛି ବା ନୂଆ କିଛି ହାତହତିଆର, ଉପକରଣ ଓ ଯନ୍ତ୍ରକୁ ନିଜ ଚଳଣି ଭିତରେ ସାମିଲ କରିଛି ପ୍ରତିଥର ସଭ୍ୟତା ଗୋଟିଏ ଗୋଟିଏ ପାଦ ଆଗକୁ ବଢ଼ିଛି । ଏଥିରେ ହିଁ ସଭ୍ୟତାର ଭିନ୍ନ ଭିନ୍ନ ସମୟକୁ ପ୍ରସ୍ତର ଯୁଗ, ଧାତୁ ଯୁଗ, ଶିଳ୍ପ ଯୁଗ ବା ସୂଚନା ପ୍ରଯୁକ୍ତି ଯୁଗ ବୋଲି ଅଭିହିତ କରିବାର ତାତ୍ପର୍ଯ୍ୟ ନିହିତ । ଯୁଗେ ଯୁଗେ ନୂତନତା ହିଁ ଦେଇଛି ସଭ୍ୟତାକୁ ତା'ର ବ୍ୟକ୍ତିତ୍ୱ । ପୁଣି ନୂତନତାର ଆଲୋକରେ ଜନଜୀବନ ହୋଇଛି ଦୀପ୍ତିମାନ୍ ଓ ଲାଭ କରିଛି ଭବିଷ୍ୟତକୁ ସାମ୍ନା କରିବାର ଅଫୁରନ୍ତ ପ୍ରେରଣା । ସେଥି ଲାଗି ପ୍ରତି ଦେଶବାସୀ ନିଜ ନିଜ ଭାବରାଜ୍ୟରେ ପ୍ରସ୍ଫୁଟିତ ନୂତନତାକୁ ନେଇ ଯଥାର୍ଥ ଭାବରେ ଆନନ୍ଦିତ ଓ ଗର୍ବିତ ।

ସେହି ନୂଆ ଚିନ୍ତା ବା ନୂଆ ଭାବନା ସୃଜନଶକ୍ତିର ମାପକାଠିରେ ଆମେ ଓ ଆମ ଦେଶ ଆଜି ହୋଇଯାଇଛି ସତେ ଯେପରି ଅପାଂକ୍ତେୟ । ଆମର ବିପୁଳ ଜନସଂଖ୍ୟା କେବଳ ଯେପରି ନିର୍ଜୀବ ସଂଖ୍ୟାଟିଏ ହୋଇ ରହିଯାଇଛି । ନାହିଁ ସେଥିରେ ନୂତନତା ସୃଷ୍ଟିକାରୀ ଜୀବନର ଚମକ । ନୂତନ ଚିନ୍ତା ସୃଷ୍ଟିକାରୀ ଶକ୍ତିର ପରିମାପ ଭାବରେ ଆମେ ହୁଏତ ନୋବେଲ୍ ପୁରସ୍କାର ବା ନୂତନ ଉତ୍ପାଦର ସ୍ୱତ୍ୱାଧିକାର ସଂଖ୍ୟାକୁ ବ୍ୟବହାର କରିପାରୁ । ସେହି ପରିମାପରେ ଆମ ସଫଳତା ନଗଣ୍ୟ । ଗତ ୧୧୨ ବର୍ଷ ମଧ୍ୟରେ ଆମେ ପାଇଛେ ମାତ୍ର ୨ଟି ନୋବେଲ୍ ପୁରସ୍କାର ଯେଉଁଠି ଆମେରିକା ପାଇଛି ୭୨୬ଟି । ଅନ୍ୟ ଯେଉଁ ଋଗି ଜଣ ଭାରତୀୟ ନୋବେଲ୍ ପୁରସ୍କାର ପାଇଛନ୍ତି, ସେମାନଙ୍କ ଗବେଷଣା କ୍ଷେତ୍ର ଭାରତ ବାହାରେ; ଆମେରିକାରେ ବା ଇଂଲଣ୍ଡରେ । ସେହିଭଳି ନୂତନ ଉତ୍ପାଦ ଭିତ୍ତିରେ ପାଟେଣ୍ଟ୍ ଲାଭ କରିଥିବା ପ୍ରଥମ ୨୦ଟି ଦେଶ

★ ଦୈନିକ "ସମ୍ବାଦ"; ୧୯ ଜୁନ୍ ୨୦୧୨

ମଧ୍ୟରେ ଭାରତ ନାହିଁ ଯଦିଓ ଆମ ଭଳି ବିପୁଳ ଜନସଂଖ୍ୟା ଭିତ୍ତିକ ସମସ୍ୟା ଜର୍ଜରିତ ଚୀନ୍ ତୃତୀୟ ସ୍ଥାନରେ ଅଛି । ଏପରିକି ଆମ ପାଟେଣ୍ଟ୍ ଦରଖାସ୍ତ ସଂଖ୍ୟା ୨୦୦୮ରେ ୧୦୭୦ ଥିବା ସ୍ଥଳେ ୨୦୦୯ରେ ୭୬୧କୁ ଖସି ଆସିଛି । ଚୀନ୍‌ର ପାଟେଣ୍ଟ୍ ଦରଖାସ୍ତ ସଂଖ୍ୟା ୨୦୦୯ରେ ଥିଲା ୭୯୪୬ । ସେହିଭଳି ଆଉ ଏକ ପରିମାପ ହେଲା ଆନ୍ତର୍ଜାତୀୟ ନୂତନତ୍ୱ ସୂଚନାଙ୍କ ବା (ଗ୍ଲୋବାଲ୍ ଇନୋଭେସନ୍ ଇଣ୍ଡେକ୍ସ) ଜି.ଆଇ.ଆଇ. । ଗୋଟିଏ ଦେଶର ଅନୁଷ୍ଠାନ, ମାନବସମ୍ବଳ, ଗବେଷଣା, ଭିତ୍ତିଭୂମି, ବଜାର ଓ ବ୍ୟବସାୟ ଇତ୍ୟାଦି ଭିତ୍ତିରେ ଜି.ଆଇ.ଆଇ. ସୂଚନାଙ୍କ ନିର୍ଦ୍ଧାରିତ ହୋଇଥାଏ । ୨୦୧୧ ମସିହାର ଗଣନା ଆଧାରରେ ଆମ ସ୍ଥାନ ୧୨୫ଟି ଦେଶ ମଧ୍ୟରୁ ୬୨ରେ ଥିଲାବେଳେ ସୁଇଜରଲାଣ୍ଡ ପ୍ରଥମ ଓ ଚୀନ୍ ୨୯ ତମ ସ୍ଥାନରେ ଥିଲା । ୨୦୧୦ରେ ଆମ ସ୍ଥାନ ଥିଲା ୫୬ ଓ ୨୦୦୯ରେ ଆମ ସ୍ଥାନ ଥିଲା ୪୩ । ଅର୍ଥାତ୍ ଗତ ୩ ବର୍ଷ ଧରି ଆମ ସ୍ଥାନ ଖସିବାରେ ଲାଗିଛି । ସେହିଭଳି ମାନବ ଉନ୍ନତି ସୂଚନାଙ୍କ ବା ଏଚ୍.ଡ଼ି.ଆଇ. ପରିମାପରେ ୧୬୯ ଦେଶ ମଧ୍ୟରୁ ଆମ ସ୍ଥାନ ୧୧୯ରେ ରହିଛି । ଆମ ଲୋକସଂଖ୍ୟାର ପ୍ରାୟ ଏକ ଚତୁର୍ଥାଂଶ ବିଶୁଦ୍ଧ ପିଇବା ପାଣି ପାଉ ନ ଥିବା ସ୍ଥଳେ, ଏକ ପଞ୍ଚମାଂଶ ଲୋକ ସର୍ବନିମ୍ନ ଡାକ୍ତରୀ ସୁବିଧା ପାଉ ନାହାନ୍ତି । ଅର୍ଦ୍ଧ-ପ୍ରାୟ ପିଲା ପୁଷ୍ଟିକର ଆହାର ପାଉ ନ ଥିବାବେଳେ ଆମର ଅର୍ଦ୍ଧାଧିକ ପ୍ରାଥମିକ ବିଦ୍ୟାଳୟର ପ୍ରତି ୨ଟି ଶ୍ରେଣୀକୁ ଜଣେ ଶିକ୍ଷକ; ଏପରି କ୍ଷେତ୍ରରେ ଆମେ ଉପର ସ୍ତରରେ ରହିପାରିବା କିପରି ? ପ୍ରତ୍ୟେକ ସୂଚନାଙ୍କ ସୂଚାଇ ଦେଉଛି ଆମର ଦୟନୀୟ ଦୁର୍ବଳ ସ୍ଥିତିକୁ ।

ଆମର ନିରାଶା ବହୁଗୁଣିତ ହୁଏ ଅତୀତକୁ ଋହିଁଲେ । ଅତୀତ ଆମର ଥିଲା ସମୃଦ୍ଧ ଓ ସମୁନ୍ନତ । ଅଥର୍ବ ବେଦରେ ଇଞ୍ଜିନିୟରିଂ ଓ ସ୍ଥାପତ୍ୟ କଳାର ବିଶେଷ ଆଲୋଚନା ଥିଲା । ଋଗ୍ ବେଦରେ ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି ବିଷୟରେ ଅତ୍ୟନ୍ତ ଗଭୀର ପ୍ରଶ୍ନ ସବୁ ଉତ୍‌ଥାପିତ ହୋଇଥିଲା । ମହର୍ଷି ଭରଦ୍ୱାଜଙ୍କ 'ଯନ୍ତ୍ର ସର୍ବସ୍ୱ' ଗ୍ରନ୍ଥରେ ଜଳ, ସ୍ଥଳ ଓ ଆକାଶରେ ଗତି କରି ପାରୁଥିବା ଏକ ହଜାରରୁ ଅଧିକ ଯାନବାହନର ବର୍ଣ୍ଣନା ଥିଲା । ମହର୍ଷି କଣାଦଙ୍କ ବୈଷୟିକ ଶିକ୍ଷାନୁଷ୍ଠାନରେ ବସ୍ତୁର ମୌଳିକ କଣିକା ବିଷୟରେ ଖ୍ରୀଷ୍ଟପୂର୍ବ ସପ୍ତମ ଶତାବ୍ଦୀରେ ଆଲୋଚନା କରାଯାଇଥିଲା । ସେହିଭଳି ସୁଶ୍ରୁତଙ୍କ ବିଭିନ୍ନ ପ୍ରକାରର ଶଲ୍ୟ ଚିକିତ୍ସା, ଚରକଙ୍କ ସନ୍ତୁଳିତ ଶରୀର ଚିକିତ୍ସା, ପତଞ୍ଜଳିଙ୍କ ଯୋଗଶାସ୍ତ୍ର ଓ ଆୟୁର୍ବେଦ ଇତ୍ୟାଦି ମଧ୍ୟ ନିଜ ନିଜ କ୍ଷେତ୍ରରେ ଚିର ଜାଜ୍ୱଲ୍ୟମାନ କୀର୍ତ୍ତି ଭାବରେ ସର୍ବସ୍ୱୀକୃତ । ଏଥି ସହିତ ଦର୍ଶନରେ ଅଦ୍ୱୈତବାଦ ଓ ଗଣିତ

ଜ୍ୟୋତିର୍ବିଜ୍ଞାନ କ୍ଷେତ୍ରରେ ଆର୍ଯ୍ୟଭଟ୍ଟ, ବ୍ରହ୍ମଗୁପ୍ତ, ବରାହମିହିର ଓ ଭାସ୍କର ପ୍ରଭୃତିଙ୍କ ମୌଳିକ ଅବଦାନ ମଧ୍ୟ ଚିରଦିନ ପାଇଁ ଅମ୍ଳାନ ହୋଇ ରହିବ। ଏପରିକି ଶାସ୍ତ୍ର-ପୁରାଣ ବର୍ଣ୍ଣିତ ଭାସମାନ ପୋଲ, ପୁଷ୍ପକ ବିମାନ, ମନଯାନ ତଥା ଅଗ୍ନିବର୍ଷୀ, ଜଳବର୍ଷୀ ବାଣ ଆଦିର ଅବତାରଣା ମଧ୍ୟ ଆମ ପୂର୍ବଜମାନଙ୍କର ଅଦ୍ଭୁତ କଳ୍ପନା ଶକ୍ତିର ପରିଚୟ ଦିଏ। ଦୀର୍ଘ ଦିନର ପରାଧୀନତା ଭିତରେ ଆମେ ଆମର କର୍ମନିପୁଣତା ଓ କଳ୍ପନାବିଳାସକୁ ହଜେଇ ବସିଛୁ। କିନ୍ତୁ ଆଜିର ପ୍ରତିଯୋଗିତାପୂର୍ଣ୍ଣ ଯୁଗରେ ସେତକ ଫେରିପାଇବା ଆମ ପକ୍ଷରେ ଅନିବାର୍ଯ୍ୟ ହୋଇପଡ଼ିଛି।

ସେତକ ଫେରିପାଇବା ଲକ୍ଷ୍ୟରେ ଜାତୀୟ ସ୍ତରରେ ଅନେକଗୁଡ଼ିଏ ସ୍ୱାଗତଯୋଗ୍ୟ ପଦକ୍ଷେପ ଗ୍ରହଣ କରାଯାଉଛି। ଜାତୀୟ ନବ-ପ୍ରକ୍ରିୟା ପ୍ରତିଷ୍ଠାନ ଗଢ଼ାଯାଇ ବିଦ୍ୟାଳୟ ଛାତ୍ରଛାତ୍ରୀମାନଙ୍କ ମନରେ ନୂଆ କିଛି କରିବା ପାଇଁ ସ୍ଫୁରଣ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଆର୍ଥିକ ସାହାଯ୍ୟ ଓ ପୁରସ୍କାର ବ୍ୟବସ୍ଥା କରାଯାଇଛି। ଏହି ପ୍ରତିଷ୍ଠାନ ପାଖରେ ବର୍ତ୍ତମାନ ୫୪୫ ଜିଲ୍ଲାର ବିଦ୍ୟାଳୟ ଛାତ୍ରଛାତ୍ରୀଙ୍କ ୧ ଲକ୍ଷ ୪୦ ହଜାର ଉଦ୍ଭାବନ ଉପଲବ୍ଧ ବୋଲି କୁହାଯାଉଛି। ଏହି ଉଦ୍ଭାବନଗୁଡ଼ିକ ଭିତ୍ତିରେ ଭାରତରେ ୨୨୦ଟି ପାଟେଣ୍ଟ୍ ଦରଖାସ୍ତ ଓ ଆମେରିକାରେ ଗୋଟିଏ ଦରଖାସ୍ତ କରାଯାଇଛି। ଭାରତ ସରକାରଙ୍କ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ବିଭାଗ ମଧ୍ୟ କଲେଜ୍ ସ୍ତରରେ 'ଇନ୍‌ସ୍ପାୟାର୍' (ଇନୋଭେସନ୍ ଇନ୍ ସାଇନ୍‌ସ ପର୍‌ସୁଇଟ୍ ଫର୍ ଇନ୍‌ସ୍ପାୟାର୍ଡ଼ ରିସର୍ଚ୍ଚ) ମେଧାବୃତ୍ତିର ବ୍ୟବସ୍ଥା କରିଛନ୍ତି। ଭାରତ ସରକାରଙ୍କ ବିଜ୍ଞାନ ଓ ଶିଳ୍ପ ଗବେଷଣା ବିଭାଗ ମଧ୍ୟ ଶିଳ୍ପୋଦ୍ୟୋଗ କ୍ଷେତ୍ରରେ ନୂତନତାକୁ ପ୍ରୋତ୍ସାହିତ କରିବା ପାଇଁ ଆର୍ଥିକ ଓ ପରାମର୍ଶଭିତ୍ତିକ ସାହାଯ୍ୟ ସହଯୋଗର ବ୍ୟବସ୍ଥା କରିଛନ୍ତି। ଉଦ୍ଦେଶ୍ୟ ହେଲା ବହୁ ସଂଖ୍ୟାରେ ନିଷ୍ଠାବାନ ପ୍ରୟୋଗୋଦ୍ୟୋଗୀ ସୃଷ୍ଟି କରିବା। ଏହି ଧାରାରେ ଭାରତ ସରକାରଙ୍କ ମାନବସମ୍ବଳ ବିଭାଗ ଦେଶର ବିଭିନ୍ନ ସ୍ଥାନରେ ୧୪ଟି ନବ-ପ୍ରକ୍ରିୟା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବାର ଯୋଜନା କରିଛନ୍ତି। ସାରା ପୃଥିବୀର ବିଭିନ୍ନ ସ୍ଥାନରେ ପ୍ରବେଶିକା ପରୀକ୍ଷା କରାଯାଇ ଏହି ସବୁ ବିଶ୍ୱବିଦ୍ୟାଳୟରେ ପୃଥିବୀର ସବୁ ଦେଶର ଛାତ୍ରଛାତ୍ରୀମାନଙ୍କୁ ଏକାଠି ପଢ଼ିବାର ପରିକଳ୍ପନା କରାଯାଇଛି। ଏହାର ମୁଖ୍ୟ ଉଦ୍ଦେଶ୍ୟ ମଧ୍ୟ ଚିନ୍ତା ଜଗତରେ ନୂତନତାର ପରିସ୍ଫୁଟନ ଯାହାକି ବ୍ୟକ୍ତିବିଶେଷ, ସମାଜ ତଥା ମାନବଜାତି ଆଗରେ ଥିବା ସମସ୍ୟାଗୁଡ଼ିକର ସମାଧାନର ସୂତ୍ର ପ୍ରଦାନ କରିବାରେ ସହାୟକ ହେବ।

ଏଇଠି ଟିକେ ପରିସଂଖ୍ୟାନ ତଥା ସରକାରୀ ପଦକ୍ଷେପଗୁଡ଼ିକରୁ ସାମାନ୍ୟ ବିରତି ନେଇ ଭାବିବା ଉଚିତ ହେବ ଯେ ନୂଆ ଚିନ୍ତା ଓ ନୂଆ ଭାବନାର ଉନ୍ମେଷ ପାଇଁ କେଉଁ ଉପାଦାନଟି ଅପରିହାର୍ଯ୍ୟ । ଗୋଟିଏ ପ୍ରକୃଷ୍ଟ ଉଦାହରଣ ହେଉଛି ଛୋଟିଆ ଦେଶ ଗ୍ରୀସ୍ । ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରୁ ତୃତୀୟ ଶତାବ୍ଦୀର ସ୍ୱଳ୍ପ ସମୟ ମଧ୍ୟରେ ଜ୍ଞାନ ଜଗତକୁ ଗ୍ରୀସ୍‌ର ଅବଦାନକୁ ବିଚାରକୁ ନିଆଯାଇପାରେ । ଆହୁରି ମଧ୍ୟ ୧୪୦୦ ଖ୍ରୀଷ୍ଟାବ୍ଦରୁ ୧୭୦୦ ମଧ୍ୟରେ ୟୁରୋପରେ ଭାବଜଗତର ପୁନଃଜାଗରଣକୁ ବିଚାରକୁ ନିଆଯାଇପାରେ । ଦୁଇଟିଯାକ କ୍ଷେତ୍ରରେ ଶକ୍ତିଶାଳୀ ଉଦାରବାଦୀ ଶାସନ ମୁଖ୍ୟଙ୍କ ପ୍ରଭାବରେ ସୃଷ୍ଟି ହୋଇପାରିଥିଲା ଏକ ଉନ୍ମୁକ୍ତ ପରିବେଶ । ଏଭଳି ଏକ ପରିବେଶ ଯେଉଁଥିରେ କବି, ଭାବୁକ ଓ ବିଜ୍ଞାନୀ ନିଜ ନିଜ ପ୍ରବୃତ୍ତି ଆଧାରରେ ଭାବରାଜ୍ୟର ଦିଗବିଦିଗ ବିଚରଣ କରି ପାରୁଥିଲେ ନିଃସଙ୍କୋଚରେ, ନିର୍ବିଘ୍ନରେ । ସାମାଜିକ ଓ ଧାର୍ମିକ ପୀଡ଼ନରୁ ମୁକ୍ତ ହୋଇଥିଲା ଜ୍ଞାନ ଆହରଣର ମାର୍ଗ । ମୁକ୍ତ ମନ ଓ ମସ୍ତିଷ୍କ ନିସୃତ ନୂତନ ଭାବନା ଓ ନୂତନ ବିଚାରରେ ଉଦ୍‌ଭାସିତ ହୋଇଥିଲା ଜନଜୀବନ ଓ ସାରା ଦୁନିଆ । ଆଧୁନିକ ସଭ୍ୟତା ଏହି ଉନ୍ମେଷର ଫଳଶ୍ରୁତି ।

ତେଣୁ ଆମ ଆଗରେ ଥିବା ଆହ୍ୱାନଟି ସୁସ୍ପଷ୍ଟ । ଆମକୁ ଏପରି ଏକ ସାମାଜିକ, ଅର୍ଥନୈତିକ, ରାଜନୈତିକ ତଥା ବୌଦ୍ଧିକ ପରିବେଶ ସୃଷ୍ଟି କରିବାକୁ ହେବ ଯେଉଁଥିରେ ଅଭାବ, ଅନାଟନ, ରୋଗବୈରାଗ ଓ ଅନ୍ୟାୟ ଅତ୍ୟାଚାରରୁ ମୁକ୍ତହୋଇ ମଣିଷର ମନ ଓ ମସ୍ତିଷ୍କ ନୂଆ ଚିନ୍ତା, ନୂଆ ଭାବନା ଏବଂ ନୂଆ କାମର ଉଦ୍‌ବେଳନରେ ପ୍ରଗଲ୍‌ଭ ହୋଇ ଉଠିବ । ଜଡ଼ ମସ୍ତିଷ୍କରେ ସୃଜନର ଶିହରଣ ଖେଳିବ । ଏଭଳି ଏକ ପରିବେଶ ସୃଷ୍ଟି କରିବା ଦିନକର କାମ ନୁହେଁ । ଏହା ପୂଜା ପାଠ ବା କୁହୁକବାଡ଼ିର ସାଧ୍ୟତୀତ । ଦଶନ୍ଧି ଦଶନ୍ଧି ଧରି ପ୍ରତିବଦ୍ଧତାର ସହ ପ୍ରଚେଷ୍ଟିତ ରହିଲେ ହିଁ ଆମେ ଏଭଳି ଏକ ଉତ୍ତରିତ ସ୍ଥିତିରେ ପହଞ୍ଚିପାରିବା । ଏ କ୍ଷେତ୍ରରେ ଆମର ପ୍ରଧାନ ପ୍ରତିବନ୍ଧକ ଦୁଇଟି ହେଲା ନିର୍ବାଚନ-ସର୍ବସ୍ୱ ଅନ୍ତଃସାରଶୂନ୍ୟ ଗଣତାନ୍ତ୍ରିକ ଶାସନ ପଦ୍ଧତି ଓ ମଧ୍ୟଯୁଗୀୟ ପ୍ରଶାସନିକ ବ୍ୟବସ୍ଥା । ଦୁଇଟିଯାକ ବ୍ୟବସ୍ଥାରେ ସ୍ୱାଧୀନୋତ୍ତର କାଳରେ ଦ୍ରୁତ ଅଧଃପତନ ହିଁ ପ୍ରଦର୍ଶିତ ହୋଇଚାଲିଛି । ଜାତୀୟ ସ୍ତରରେ କିଛି ସ୍ୱାଗତଯୋଗ୍ୟ ନୀତି ଅନୁସୃତ ହୋଇଥିବା ସ୍ଥଳେ ରାଜ୍ୟଗୁଡ଼ିକରେ ଉପଲବ୍ଧ, ଶିକ୍ଷା-ବିରୋଧୀ ତ ନୁହେଁ ଶିକ୍ଷା ଧ୍ୱଂସକାରୀ, ମନୋଭାବ ଯୋଗୁଁ ସେଗୁଡ଼ିକ ଲକ୍ଷ୍ୟଚ୍ୟୁତ ତଥା ଫଳ ବିବର୍ଜିତ ହୋଇପଡୁଛନ୍ତି । ତେଣୁ ପ୍ରଥମେ ନିଜକୁ ଏଭଳି କଣ୍ଠରୋଧକାରୀ ରାଜନୈତିକ ଓ ପ୍ରଶାସନିକ ବ୍ୟବସ୍ଥାର ପତନମୁଖୀ ପ୍ରବାହରୁ ମୁକ୍ତ କରିବାକୁ ହେବ । ପରବର୍ତ୍ତୀ

ପଦକ୍ଷେପ ଭାବରେ ସୁଲଭ ସାର୍ବଜନୀନ ଗୁଣାତ୍ମକ ଶିକ୍ଷା ବ୍ୟବସ୍ଥାର ପ୍ରତିଷ୍ଠା ପାଇଁ ପ୍ରତିବଦ୍ଧତା ଓ ପ୍ରତିଶ୍ରୁତି ନେଇ ନିରନ୍ତର ପ୍ରଚେଷ୍ଟାରତ ହେବାକୁ ପଡ଼ିବ; ପ୍ରାଥମିକ ସ୍ତରଠାରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ। ମନେ ରଖିବାକୁ ହେବ ଯେ ଗାଁ-ଗହଳରେ ରହୁଥିବା ଶତକଡ଼ା ୭୦ ଭାଗ ଲୋକସଂଖ୍ୟା ମଧ୍ୟରେ ହିଁ ଶତକଡ଼ା ୭୦ ଭାଗ ପ୍ରତିଭା ଲୁକ୍କାୟିତ। ଏକ ଉନ୍ମୁକ୍ତ ବହୁମୁଖୀ ପ୍ରତିଭା-ଅନ୍ୱେଷଣଭିତ୍ତିକ ଶୈକ୍ଷିକ ବାତାବରଣ ମଧ୍ୟରେ ସେସବୁ ପ୍ରତିଭାର ଉନ୍ମେଷ ଓ ଉନ୍ମୋଚନ ନିହିତ। ସେଥିପାଇଁ ଟମାସ୍ ଏଡ଼ିସନ୍ କହିଥିଲେ, "To have a great idea, have a lot of them" ଏହି ଦୃଷ୍ଟିରୁ ନୂଆ ଚିନ୍ତନ ବା ନୂଆ ଭାବନା ସୃଷ୍ଟିକାରୀ ସୃଜନଶୀଳ ପରିବେଶ ଯେତେ ଅଧିକ ବ୍ୟକ୍ତିବିଶେଷ, ଅନୁଷ୍ଠାନ ଓ ସମାଜର ଅଂଶକୁ ସ୍ପର୍ଶ କରିବ ସେତେ ମଙ୍ଗଳ। ଯେଉଁ ପରିବେଶରେ ପ୍ରତ୍ୟେକ ସମାଧାନ ସୃଷ୍ଟି କରିବ ନୂଆ ନୂଆ ପ୍ରଶ୍ନ; ସରଳ ଜୀବନ ଓ ଉଚ୍ଚଚିନ୍ତନ ହେବ ଜୀବନ ମନ୍ତ୍ର। ବିଶେଷ କରି ବିଜ୍ଞାନ କ୍ଷେତ୍ରରେ ନୂତନତାକୁ ନେଇ ଜନଜୀବନକୁ ପ୍ରଭାବିତ କରିବାର ରାସ୍ତା ବହୁ ଜଟିଳ। ପରିବେଶରୁ ପ୍ରେରଣା ପାଇ ତାହା ପ୍ରତିଫଳିତ ହେବ ଗବେଷଣାରେ; ଗବେଷଣାରୁ ମିଳିବ ନୂଆ ବିଚାର ଓ ନୂଆ ବିଚାରରୁ ସୃଷ୍ଟି ହେବ ନୂଆ ମାଧ୍ୟମ, ଉପକରଣ, ଯନ୍ତ୍ରଟିଏ ବା କଳା, ସ୍ଥାପତ୍ୟ ଅବା ପ୍ରବନ୍ଧ ବା କବିତାଟିଏ। ସେଗୁଡ଼ିକ ହେବେ ନୂଆ ଯୁଗର ବାର୍ତ୍ତାବହ। ସ୍ୱାଭାବିକ ଭାବରେ ସମସ୍ତ ଅସଫଳ ପ୍ରଚେଷ୍ଟାକୁ ତଥା ଅମଡ଼ା ମାଡ଼ିବାକୁ ଆନନ୍ଦର ସହ ଗ୍ରହଣ ଏବଂ ଉତ୍ସାହିତ କରିବାକୁ ହେବ। ଏହି ପ୍ରଚେଷ୍ଟାର ନିଷ୍କର୍ଷ ହେବ ସଭ୍ୟତାକୁ ଆମର ଅବଦାନ।

ଏହିଭଳି ଏକ ସାର୍ବଜନୀନ ଉନ୍ମାଦନାଭରା ସୁନ୍ଦର ସୃଜନଶୀଳ ପରିବେଶ ସୃଷ୍ଟି କରିବାରେ ସକ୍ଷମ ହେଲେ ହୁଏ ତ ଆମେ ମଧ୍ୟ କବି କଣ୍ଠରେ କଣ୍ଠ ମିଳାଇ ଗାଇ ପାରିବା,

We are the music makers,
We are the dreamers of dreams
* * * * * * * * * * * *
Yet, we are the movers and shakers
of the whole world, it seems.

ଅନ୍ୟଥା କବିତାଟି ପଢ଼ି ହୃଦୟସ୍ଥ ନୁହେଁ କେବଳ ମୁଖସ୍ଥ କରିବା ହିଁ ଆମ ପକ୍ଷରେ ସାର ହେବ।



# ବିଶ୍ୱାସ ବିଲୟର ବିଷାଦ ସ୍ୱର

ସମୟ। ଏକ ରହସ୍ୟଭରା ଶବ୍ଦ। ହାତୀକୁ ପାଞ୍ଚ ଜଣ ଅନ୍ଧ ପାଞ୍ଚ ପ୍ରକାରେ ବର୍ଣ୍ଣନା କଲା ଭଳି, ଏକ ନିର୍ଦ୍ଦିଷ୍ଟ ସମୟ ଖଣ୍ଡକୁ ଭିନ୍ନ ଭିନ୍ନ ମାନସିକତାସମ୍ପନ୍ନ ବ୍ୟକ୍ତି ଭିନ୍ନ ଭିନ୍ନ ଭାବରେ ଚିହ୍ନନ୍ତି। ତଥାପି ପ୍ରତି କାଳଖଣ୍ଡର ଏକ ମୁଖ୍ୟ ସ୍ୱର ଥାଏ। ତାଳ, ଲୟ ଓ ବାଦ୍ୟର ଆଦ୍ୟ ମୂର୍ଚ୍ଛନାରୁ ଜଣେ ସଙ୍ଗୀତଜ୍ଞ ସଙ୍ଗୀତର ରାଗ ଚିହ୍ନିପାରିବା ଭଳି, ଜଣେ ଗଣିତଜ୍ଞ ଗୋଟିଏ ସନ୍ଦର୍ଭର ଅଳ୍ପ କିଛି ପୃଷ୍ଠା ପଢ଼ି ତା'ର ଇଉକ୍ଲିଡ୍, ଗାଉସ୍ ଓ ରାମାନୁଜନଙ୍କୁ ଚିହ୍ନି ପାରିଲା ଭଳି ଜଣେ ସାହିତ୍ୟକ ଧାଡ଼ି କେତୋଟିରୁ କାଳିଦାସ, ସେକ୍ସପିୟର ଓ ଗେଟେଙ୍କୁ ଚିହ୍ନିଲା ଭଳି ଅଳ୍ପ କିଛି ପାରିପାର୍ଶ୍ୱିକ ଘଟଣାବଳୀ ଗୋଟିଏ କାଳଖଣ୍ଡର ମୁଖ୍ୟ ସ୍ୱରକୁ ପରିଚୟ ପ୍ରଦାନ କରିଥାଏ। ସେହି ନ୍ୟାୟରେ ବ୍ୟଥା ଓ ବେଦନାର ସହ ହୁଏତ ଆମକୁ ସ୍ୱୀକାର କରିବାକୁ ହେବ ଯେ ଆମ ସମୟର ମୁଖ୍ୟ ସ୍ୱରଟି ହେଉଛି ବିଶ୍ୱାସର ବିଲୟ। ଏହି ବିଲୟ ଯେ ବ୍ୟକ୍ତି, ସମାଜ, ରାଷ୍ଟ୍ର ତଥା ସଭ୍ୟତାକୁ ଦୋଦୁଲ୍ୟମାନ ସ୍ଥିତିକୁ ଠେଲି ଦେଉଛି, ତାହା କହିବା ବାହୁଲ୍ୟ। କାରଣ ମାନବୀୟସତ୍ତାର ମୂଳପିଣ୍ଡ ହିଁ ବିଶ୍ୱାସ।

ବିଶ୍ୱାସର ପରିସର ବ୍ୟାପକ। ବ୍ୟକ୍ତି-ବ୍ୟକ୍ତିଠାରୁ ଆରମ୍ଭ କରି ବ୍ୟକ୍ତି ଓ ରାଷ୍ଟ୍ର ମଧ୍ୟ ଦେଇ ଏହା ବ୍ୟକ୍ତି ଓ ସ୍ରଷ୍ଟା ପର୍ଯ୍ୟନ୍ତ ପରିବ୍ୟାପ୍ତ। ଏହାର ବିଶଦ ଓ ଗଭୀର ଆଲୋଚନା ଆମ ସମୟର ଜଣେ ପ୍ରାଜ୍ଞପୁରୁଷ ସର୍ବପଲ୍ଲୀ ରାଧାକୃଷ୍ଣନ ତାଙ୍କ ଲିଖିତ "ଦି ପ୍ରେଜେଣ୍ଟ୍ କ୍ରାଇସିସ୍ ଅଫ୍ ଫେଥ୍" ବହିଟିରେ କରିଛନ୍ତି। ଆମେ କେବଳ ଆମ ଚାରିପଟେ ଦିନ ପ୍ରତିଦିନ ଘଟି ଯାଉଥିବା କିଛି ଘଟଣାବଳୀ ବିଶ୍ୱାସର ଏ ସଙ୍କଟକୁ କିପରି ତୀବ୍ରରୁ ତୀବ୍ରତର କରିବାରେ ଲାଗିଛି ତାରି ଆଲୋଚନା କରିବା। ତା'ପୁଣି ଆମ ସ୍ୱଳ୍ପ ବୁଦ୍ଧିରେ, ରାଧାକୃଷ୍ଣନଙ୍କ ଭଳି ପ୍ରଜ୍ଞାର ଆଧାରରେ ନୁହେଁ।

ଗଣମାଧ୍ୟମଗୁଡ଼ିକୁ ସମାଜର ପ୍ରତିବିମ୍ବ ବୋଲି ଧରିନେଇ ସେଥିରେ ପ୍ରକାଶିତ ସମ୍ବାଦ ତ ନୁହେଁ ବିସମ୍ବାଦଗୁଡ଼ିକ ଯେ ମଣିଷର ଅନ୍ତରାତ୍ମାକୁ ଅକୁହା ଯନ୍ତ୍ରଣାରେ

---

★ ଦୈନିକ "ସମ୍ବାଦ"; ୨୦ ଜୁଲାଇ ୨୦୧୨

ଜର୍ଜରିତ କରି ଦେଉଛି, ତାହା କହିଲେ ନିଶ୍ଚୟ ସ୍ୱଳ୍ପୋକ୍ତି ହେବ। କେଉଁଠି ପ୍ରେମିକ ପ୍ରେମିକାଙ୍କୁ ନେଇ ଧର୍ଷଣ ଓ ହତ୍ୟାର ଖବର ତ ଅନ୍ୟ କେଉଁଠି ଅଶ୍ଳୀଳ ଫଟୋକୁ ନେଇ ବ୍ୟବସାୟ ଓ ପ୍ରତାରଣାଜନିତ ଆତ୍ମହତ୍ୟାର ଖବର। ଏଭଳି ସମ୍ପର୍କ ଭିତରେ ପ୍ରେମ ଭଳି ଏକ ସ୍ୱର୍ଗୀୟ ଭାବନା ଯେ କେଉଁଠି ଓ କିପରି ଥିଲା ବୁଝିବା କଷ୍ଟକର। ଅନ୍ତତଃ ପକ୍ଷେ ସେଭଳି ଭାବନା ତ ନିଶ୍ଚିତ ଭାବରେ ନ ଥିଲା, ଯାହାକୁ ନେଇ କବି କହେ "କାହିଁ ବନ୍ଧୁତା କାହିଁ ପ୍ରେମ ସୁନ୍ଦର; ଯାର ପ୍ରାପତି ଲାଗି ଦେବତା ନର"। ପୁଣି ଏଭଳି ଘଟଣାଗୁଡ଼ିକରେ ସ୍କୁଲ୍ କଲେଜର କୋମଳମତି ବାଳକ ବାଳିକାମାନଙ୍କର ଅଧିକରୁ ଅଧିକ ସମ୍ପୃକ୍ତି ଏକ ଉତ୍କଟ ସାମାଜିକ ବ୍ୟାଧିର ସଙ୍କେତ ବହନ କରେ। ହୁଏତ ଏଭଳି ଏକ ସାମାଜିକ ବିପତ୍ତିରୁ ଯୁବ ସମାଜକୁ ମୁକ୍ତ ରଖିବା ଲାଗି ଗାନ୍ଧିଜୀ ପରାମର୍ଶ ଓ ଆହ୍ୱାନ ଦେଇଥିଲେ ଯେ, "Do not fall in love but rise with it". ଅର୍ଥାତ୍ "ପ୍ରେମରେ ପଡ଼ ନାହିଁ, ପ୍ରେମରେ ଉପରକୁ ଉଠ"।

ସେହିଭଳି ଆଧୁନିକତାର ବାଧ୍ୟବାଧକତା ଆଘାତରେ ବିବାହ ଏକ ଅନୁଷ୍ଠାନ ଭାବରେ ନିଜର ପ୍ରତିଷ୍ଠା ହରାଇ ବସୁଥିବାବେଳେ ବୈବାହିକ ସମ୍ପର୍କ ମଧ୍ୟ ଶୀତଳ ଓ ଶୁଷ୍କ ହେବାରେ ଲାଗିଛି। ସତେ ଯେପରି ବଣ ଜଙ୍ଗଲରେ ବୁଲି ଖାଦ୍ୟ ଅନ୍ୱେଷଣ କରୁଥିବା ମଣିଷ ନିଜର କାୟିକ ଓ ମନସ୍ତାତ୍ତ୍ୱିକ ନିରାପତ୍ତା ଦୃଷ୍ଟିରୁ ସମାଜଟିଏ ଗଢ଼ିଥିଲେ ମଧ୍ୟ ଶହ ଶହ ବର୍ଷ ଧରି ସମାଜର ଧରାବନ୍ଧା ନିୟମ ଭିତରେ ରହି ଅତିଷ୍ଠ ହୋଇ ସେ ପୁଣିଥରେ ଏକ ଲଙ୍ଗଳା-ପୁଙ୍ଗୁଳା ପରିବେଶକୁ ଫେରିଯିବାକୁ ଉଦ୍ୟତପ୍ରାୟ। କିନ୍ତୁ ବହିର୍ଦୃଷ୍ଟିରୁ ଏକ ଅତ୍ୟାଧୁନିକ ଜୀବ ଭାବରେ। ସମ୍ପର୍କର ଅନୁପସ୍ଥିତିରେ ନା ଦରକାର ପଡ଼ିବ ବିଶ୍ୱାସ ନା ସେଥିପ୍ରତି ପ୍ରତ୍ୟୟ ଓ ନିଷ୍ଠା। ପ୍ରତ୍ୟୟ ଓ ନିଷ୍ଠାର ଅଭାବରେ ତଥାକଥିତ ପ୍ରେମିକ-ପ୍ରେମିକାମାନଙ୍କ ଭଳି ସ୍ୱାମୀ-ସ୍ତ୍ରୀମାନେ ମଧ୍ୟ ପରସ୍ପରର ଅବିଶ୍ୱାସ ଓ ଅତ୍ୟାଚାରର ଶିକାର ହୋଇ ଅଧିକରୁ ଅଧିକ ସଂଖ୍ୟାରେ ଆତ୍ମହତ୍ୟାକୁ ଜୀବନଯନ୍ତ୍ରଣାରୁ ମୁକ୍ତିର ବାଟ ହିସାବରେ ବାଛି ନେଉଛନ୍ତି। ଭାରତ ଭଳି ଏକ ଐତିହ୍ୟ ତଥା ପରମ୍ପରା ସମୃଦ୍ଧ ଦେଶରେ ପ୍ରତି ଚାରି ମିନିଟ୍‌ରେ ଗୋଟିଏ ଆତ୍ମହତ୍ୟା ଉହାଡ଼ରେ ଏହା ହିଁ ମୁଖ୍ୟ କାରଣ ଭାବରେ ଉଭା ହୋଇଛି।

କଥା ଏତିକିରେ ସରୁ ନାହିଁ। ବ୍ୟକ୍ତି-ବ୍ୟକ୍ତି ସମ୍ପର୍କ ବାହାରେ ବ୍ୟକ୍ତି ଓ ସମାଜ ମଧ୍ୟରେ ଥିବା ସମ୍ପର୍କ ମଧ୍ୟ ଛିଡ଼ି ଛିଡ଼ି ଚାଲିଛି। ସମସ୍ତ ସାମାଜିକ ସୁରକ୍ଷା ଉପଭୋଗ କରୁଥିବା ମଣିଷ ଅନ୍ୟର ସାମାଜିକ ଅଧିକାରକୁ ଭ୍ରୂକ୍ଷେପ କରୁ ନାହିଁ। ବ୍ୟକ୍ତିବିଶେଷ ତା'ର ସାମାଜିକ ମୂଲ୍ୟବୋଧ ହରାଇ ବସିଛି। ପାଟି ଖୋଲିଲେ ବିପଦ। "ନିଜେ

ବଞ୍ଚିଲେ ବାପର ନାଁ” ହିଁ ତା'ର ଜୀବନ ଆଦର୍ଶ ପାଲଟି ଯାଇଛି। ସମାଜର ଦୋଷଗୁଣକୁ ନେଇ ଲେଖାଟିଏ ଲେଖିପାରିବ, ଓଜସ୍ୱିନୀ ଭାଷଣଟେ ଦେଇପାରିବ, କିନ୍ତୁ କାର୍ଯ୍ୟ ବେଳକୁ ସେ ନ ଥିବ ନଚେତ୍ ଠିକ୍ ଓଲଟା କାର୍ଯ୍ୟରେ ଲିପ୍ତ ଥିବ। କେବଳ ବ୍ୟକ୍ତିବିଶେଷ ନୁହେଁ ହବ୍‌ସଙ୍କ ଭାଷାରେ ସାମାଜିକ ଚୁକ୍ତି ମାଧ୍ୟମରେ ଜନସମୂହଙ୍କ ସାମୂହିକ ଇଚ୍ଛାଶକ୍ତିରୁ ଶକ୍ତିଲାଭ କରିଥିବା ପରାକ୍ରମୀ ତୃତୀୟ ପକ୍ଷ ବା 'ଲେଭିଏଥାନ୍'ର ପ୍ରତୀକ ସ୍ୱରୂପ ପ୍ରଶାସନ ମଧ୍ୟ ବିଶ୍ୱସନୀୟତା ଲାଭ କରିବାରେ ସମ୍ପୂର୍ଣ୍ଣ ଅକ୍ଷମ ହେଉଛି। ସତେ ଯେପରି ଦୁଷ୍କର୍ମ ଓ ଦୁର୍ନୀତିରେ ଲିପ୍ତ ହେବାରେ କାହାରି ମନରେ କୁଣ୍ଠା ନାହିଁ, ଡର ନାହିଁ। “ଯେରି ବିଦ୍ୟା ନେଇ ଆଣି ଥୋଇ ପାରିଲେ ଭଲ” ଯୁଗ ଧର୍ମ ପାଲଟିଛି। କୁକର୍ମ ହିଁ ସାଜିଛି ଉପରକୁ ଉଠିବାର ପ୍ରକୃଷ୍ଟ ମାର୍ଗ। ଆମ ଯୁଗର 'ଲେଭିଏଥାନ୍' ଓ ତାଙ୍କ ଜ୍ଞାତି ପରିଜନମାନେ ଏହି ରାସ୍ତାକୁ ନିଷ୍କଣ୍ଟକ କରି ଦେଇଛନ୍ତି। ସାମାଜିକ-ବିବେକର ଏଭଳି ଅପମୃତ୍ୟୁ କୌଣସି ଦୁଃଖାନ୍ତ ଗ୍ରୀକ୍ ନାଟକ ତୁଳନାରେ କମ୍ ଦୁଃଖଦାୟକ ନୁହେଁ। ଏହିଭଳି ଏକ ନିର୍ବାକ ନିସ୍ପନ୍ଦ ସାମାଜିକ ପରିବେଶରେ ହିଁ ଯାତ୍ରୀବାହୀ ବସ୍‌ରୁ, ରାସ୍ତାରୁ, ଘରୁ ବା କାର୍ଯ୍ୟାଳୟମାନଙ୍କରୁ ଭିଡ଼ିନେଇ ଗଣ ବଳାତ୍କାର ଓ ହତ୍ୟା ଭଳି ନାରକୀୟ କାଣ୍ଡ ଘଟାଇବାର ସାହସ ଅପରାଧୀମାନଙ୍କୁ ମିଳିଥାଏ। ଆଉ ସେହି ଅପରାଧୀ ବା ସେମାନଙ୍କ ସୁରକ୍ଷା ପ୍ରଦାନକାରୀଙ୍କ ପ୍ରଭାବ ଆଗରେ ତଥାକଥିତ ପ୍ରଶାସନ ପଙ୍ଗୁ ଓ ସ୍ଥାଣୁ ପାଲଟିଯାଏ। ଅସହାୟତାର ବାତାବରଣ ଭିତରେ ଅପରାଧପ୍ରବଣତା ଓ ଅପରାଧ ସମାଜକୁ ଦ୍ରୁତ ବେଗରେ କବଳିତ କରିବା ସହିତ ସାରା ସମାଜ ଶଙ୍କାଗ୍ରସ୍ତ ଓ ସନ୍ତପ୍ତ ହୋଇ ପଡ଼ିରହିବା ହିଁ ସାର ହୋଇଛି।

ବିଶ୍ୱାସର ହୁଏତ ସବୁଠାରୁ ବଡ଼ ବିପର୍ଯ୍ୟୟ ଘଟିଛି ରାଜନୈତିକ ସ୍ତରରେ; ହେଉ ଜାତୀୟ ଅବା ଆନ୍ତର୍ଜାତୀୟ। ରାଜନୀତି କେବଳ ରାଜ୍ୟ ଶାସନର ନୀତି ନୁହେଁ, ଏହା ନୀତିମାନଙ୍କ ମଧ୍ୟରେ ରାଜା ସଦୃଶ ଶ୍ରେଷ୍ଠ ବୋଲି ମଧ୍ୟ କଳ୍ପନା କରାଯାଇପାରେ। କିନ୍ତୁ ରାଜନୀତି ଭିତରେ ନୀତିଶୂନ୍ୟତା ହିଁ ଆମ ସମୟର ବିରାଟ ଆଶ୍ଚର୍ଯ୍ୟ। ରାଜନେତାଙ୍କର ବା ରାଜନୈତିକ ଦଳର ସ୍ୱାର୍ଥନୀତି ହିଁ ରାଜନୀତି ଭାବରେ ବିବେଚିତ ହେଉଛି। “ରାଜନୀତିରେ କେହି ଚିର ଶତ୍ରୁ କି ଚିର ମିତ୍ର ନୁହଁନ୍ତି” ବକ୍ତବ୍ୟର ଗଭୀର ନୀତିଭିତ୍ତିକ ଅର୍ଥକୁ ଉପେକ୍ଷା କରି ବ୍ୟାବହାରିକ ସ୍ତରରେ ନୀତିହୀନତାର ଏକ ଉପହାସଯୋଗ୍ୟ ସ୍ତରକୁ ନେଇଯିବାର ନାଟକ ଦିନ ପ୍ରତିଦିନ ଅଭିନୀତ ହେବାରେ ଲାଗିଛି। ସବୁଠି କେବଳ ଖୁଲମ୍‌ଖୁଲା ନିରୁତା ସ୍ୱାର୍ଥର ଖେଳ ଜଳଜଳ ହୋଇ ଦିଶିଯାଉଛି। ଯେଉଁ ନେତାମାନେ ନିଜନିଜ ମଧ୍ୟରେ ବୁଝାମଣାକୁ

ଅତୁଟ ରଖିପାରୁ ନାହାନ୍ତି, ସେମାନେ ଅଶିକ୍ଷିତ ଅଭାବୀ ଲୋକମାନଙ୍କଠାରୁ ବିଭିନ୍ନ ପ୍ରଲୋଭନ ମାଧ୍ୟମରେ ଭୋଟ ଜରିଆରେ ହାସଲ କରିଥିବା ସେବା ଓ ପ୍ରତିନିଧିତ୍ୱର ବିଶ୍ୱାସନାମାକୁ ପ୍ରତାରଣାରେ ପରିଣତ କରିବା ଅତ୍ୟନ୍ତ ସ୍ୱାଭାବିକ। ରାଷ୍ଟ୍ରପତି ନିର୍ବାଚନ ପରିପ୍ରେକ୍ଷୀରେ ରାଷ୍ଟ୍ରପତି ପଦ ପାଇଁ ପ୍ରାର୍ଥୀଚୟନ ଓ ସମର୍ଥନ ନାଁରେ ବିଭିନ୍ନ ରାଜନୈତିକ ଦଳ ପ୍ରଦର୍ଶନ କରିଥିବା ଛୋଟ ଛୋଟ ଦୃଶ୍ୟଗୁଡ଼ିକ ପରସ୍ପର ମଧ୍ୟରେ ଥିବା ବିଶ୍ୱାସହୀନତାର ସଦ୍ୟତମ ଉଦାହରଣ। ପ୍ରତ୍ୟେକ ରାଜନୈତିକ ଗୋଷ୍ଠୀ ଜାତି, ଧର୍ମ, ଲିଙ୍ଗ ଓ ଭାଷାଭାଷୀ ଅଞ୍ଚଳ ଇତ୍ୟାଦିର ଦୁହାଇ ଦେଇ ବର୍ଷ ବର୍ଷ ଧରି ରାଜନୀତିରେ ଲୁଡୁବୁଡୁ ହେଉଥିବା ବ୍ୟକ୍ତିବିଶେଷଙ୍କୁ ଚୟନ କରିବା ଭାରତ ବର୍ଷ ପାଇଁ ଆଉ ଏକ ବିଡ଼ମ୍ବନାର କଥା। ସତେ ଯେପରି ଏତେ ବଡ଼ ଦେଶରେ କଳା, ବିଜ୍ଞାନ, ସାହିତ୍ୟ ଓ ସମାଜସେବା ଇତ୍ୟାଦି କ୍ଷେତ୍ରରେ ଏପରି କେହି ସ୍ୱନାମଧନ୍ୟ ବିଜ୍ଞ, ଚରିତ୍ରବାନ ଓ ଦେଶପ୍ରେମୀ ଲୋକ ନାହାନ୍ତି ଯେ କି ପଙ୍କିଳ ରାଜନୀତିରୁ ଊର୍ଦ୍ଧ୍ୱରେ ରହି ସଙ୍କଟ ସମୟରେ ଦେଶର 'କନ୍‌ସାଇନ୍‌ସ କିପର' ବା ବିବେକରକ୍ଷକ ଭାବରେ ଜନମାନସରେ ବିଶ୍ୱାସଭାଜନ ହେବା ସହ ଆନ୍ତର୍ଜାତିକ ସ୍ତରରେ ଭାରତର ମର୍ଯ୍ୟାଦା ଓ ମହାନତାର ସଫଳ ପ୍ରତିନିଧିତ୍ୱ କରିପାରିବ। ଆମ ସଂସଦୀୟ ଗଣତନ୍ତ୍ରର ବିଧିବ୍ୟବସ୍ଥା ଭିତରେ ରାଷ୍ଟ୍ରପତି ଶାସନ ମୁଖ୍ୟ ନ ହୋଇ କେବଳ ରାଷ୍ଟ୍ରମୁଖ୍ୟ ହୋଇଥିବା ଦୃଷ୍ଟିରୁ ଜଣେ ନିଷ୍କଳଙ୍କ ଦାର୍ଶନିକ ଭାବାପନ୍ନ ବ୍ୟକ୍ତି ହିଁ ରାଷ୍ଟ୍ରପତି ପଦବିର ମର୍ଯ୍ୟାଦା ରକ୍ଷା କରିପାରିବେ। କିନ୍ତୁ ବର୍ତ୍ତମାନର ରାଜନୈତିକ ଦଳଗୁଡ଼ିକ ଯେ ସେଭଳି ବିଶ୍ୱାସର ପାତ୍ର ହୋଇ ରହିନାହାନ୍ତି ତାହା ସେମାନଙ୍କ ପ୍ରାର୍ଥୀଚୟନରୁ ହିଁ ସ୍ପଷ୍ଟ ହୋଇଯାଇଛି। ଦେଶ ପ୍ରଶାସନ ଭାର ନ୍ୟସ୍ତ ଥିବା ଅନୁଷ୍ଠାନ ଓ ବ୍ୟକ୍ତିବିଶେଷଙ୍କ ଉପରେ ବିଶ୍ୱାସର ଅଭାବ ସମାଜର ତୃଣମୂଳ ସ୍ତର ଯାଏ ସଂକ୍ରମିତ ହୋଇ ପାରିବାରିକ, ସାମାଜିକ, ଅର୍ଥନୈତିକ ତଥା ରାଜନୈତିକ କ୍ଷେତ୍ରରେ ବିଭୀଷିକା ସୃଷ୍ଟି କରୁଛି। ଗଣମାଧ୍ୟମଗୁଡ଼ିକରେ ଦୈନନ୍ଦିନ ପ୍ରକାଶିତ ନକ୍ସଲ ହିଂସା, ଧର୍ଷଣ ଓ ଦୁର୍ନୀତି ଆଦି ଅମାନବୀୟ ଘଟଣାଗୁଡ଼ିକ ଏହି ବିଭୀଷିକାର ଗୋଟିଏ ଗୋଟିଏ ହୃଦୟବିଦାରକ ପରିସ୍ଫୁଟନ ମାତ୍ର।

ଆନ୍ତର୍ଜାତିକ ସ୍ତରରେ ମଧ୍ୟ ବିଶ୍ୱାସ ତା'ର ପରାକାଷ୍ଠା ହରାଇ ବସିଛି। ଅନ୍ତର୍ଦେଶୀୟ ଶାନ୍ତି ବିଶ୍ୱାସ ଉପରେ ପ୍ରତିଷ୍ଠିତ ନ ହୋଇ ଅବିଶ୍ୱାସରୁ ଉତ୍ପନ୍ନ ସାମରିକ ଶକ୍ତିର ସନ୍ତୁଳନ ଉପରେ ହିଁ ପ୍ରତିଷ୍ଠିତ ହୋଇଛି। ପୃଥିବୀ ପୃଷ୍ଠରୁ ମାନବ ସଭ୍ୟତାକୁ ଲୋପ କରିପାରିବା ଭଳି ଆଶଙ୍କା ସୃଷ୍ଟିକାରୀ ଭୂମଣ୍ଡଳୀୟ ତାପବୃଦ୍ଧି ସଦୃଶ ଜାଗତିକ ସମସ୍ୟା ଉପରେ ଧନୀ ଓ ଗରିବ ଦେଶମାନଙ୍କ ମଧ୍ୟରେ ଏକ ସର୍ବସମ୍ମତ ଦୃଢ଼ ରାଜିନାମା ସ୍ୱାକ୍ଷରିତ ନ ହୋଇପାରିବା ମୂଳରେ ରହିଛି ବିଶ୍ୱାସର ଅଭାବ। ଅନ୍ତର୍ଦେଶୀୟ ସମ୍ପର୍କର

ମୁଖ୍ୟ ସ୍ୱର ହୋଇଛି ବ୍ୟବସାୟ। ସାମ, ଦାନ, ଦଣ୍ଡ, ଭେଦ କୌଶଳାଶ୍ରୟୀ ଲାଭ-କ୍ଷତିର ଶୁଷ୍କ ହିସାବ ଭିତରେ ବିଶ୍ୱାସର ସ୍ଥାନ କାହିଁ!

ଯେଉଁ ବିଶ୍ୱାସର ମାହାତ୍ମ୍ୟ ବଖାଣିବାକୁ ଯାଇ ଶାସ୍ତ୍ରକାର 'ବିଶ୍ୱାସେ ମିଳଇ ହରି' ବୋଲି ଆପ୍ତିବାଣୀ ଶୁଣାଇଛନ୍ତି, ଯେଉଁ ପ୍ରତ୍ୟୟର ପ୍ରତିଷ୍ଠାକୁ ହୃଦୟରେ ଧରି କବି "ଜାଣିଛି ନିଃସଙ୍ଗ କର୍ମେ ନାହିଁ ପରାଜୟ, ରଖିଛି ଈଶ୍ୱରେ ଯେଣୁ ଜୀବନ୍ତ ପ୍ରତ୍ୟୟ" ବୋଲି ବୋଲି ଆଶା ଓ ଆଶ୍ୱାସନାର ବରାଭୟ ବାଣୀ ଶୁଣାଇଛନ୍ତି ସେହି ବିଶ୍ୱାସ ଓ ପ୍ରତ୍ୟୟର ଅମରାବତୀ ଆଜି ବିଧ୍ୱସ୍ତ ଓ ବିଦୀର୍ଣ୍ଣ। ଭାବ ଉପରୁ ବିଶ୍ୱାସ କାଢ଼ି ନେଇ ମଣିଷ ତାକୁ ଲାଭର ବେଦି ଉପରେ ସ୍ଥାପନା କରିଛି। ବିଶ୍ୱାସ ଓ ପ୍ରତ୍ୟୟ ଶୂନ୍ୟତାର ବାତ୍ୟାଘାତରେ ବ୍ୟକ୍ତି, ପରିବାର, ସମାଜ, ରାଷ୍ଟ୍ର ଓ ସଭ୍ୟତା ସବୁ କିଛି ଅଶାନ୍ତ ସମୁଦ୍ରରେ ହୁଲିଡ଼ଙ୍ଗା ସଦୃଶ ଦୋଦୂଲ୍ୟମାନ। ଅନ୍ତଃସ୍ଥଳରେ ନିଶ୍ଚିହ୍ନ ହୋଇଯିବାର ଭୟ। ଜୈବବିବର୍ତ୍ତନର ପ୍ରବାହରେ ନବୋଦ୍ଭବନର ଆକସ୍ମିକତା ଭଳି, ସମସ୍ତ ଅପଶକୁନର ଘନଘଟା ମଧ୍ୟରେ ବିଶ୍ୱାସର ଆକସ୍ମିକ ନବଉନ୍ମେଷର ଅଲୌକିକତାକୁ ପ୍ରତୀକ୍ଷା କରିବା ହିଁ ବର୍ତ୍ତମାନ ପାଇଁ ଏକମାତ୍ର ଭରସା।



# କାପୁରୁଷମାନଙ୍କର କାୟା ବିସ୍ତାର

ସମୟ ତା'ର ନିରବଧି ନିରବ ପ୍ରବାହ ଭିତରେ କେତେ କ'ଣ କଥା ଆମକୁ ନ ଶୁଣାଏ ସତେ ! କେତେବେଳେ ପୁରୁଷାର୍ଥର କଥା ତ ଆଉ କେତେବେଳେ ପରମାର୍ଥର ଗାଥା। ଆମ ଭାରତ ଭୂମି ତ ପୁଣି କେତେ କେତେ ଅବତାରୀ ମୁନିଋଷିମାନଙ୍କର ଜ୍ୟୋତିରେ ଜ୍ୟୋର୍ତିମୟ ଭୂଖଣ୍ଡ ବୋଲି ଅନେକଙ୍କର ବିଶ୍ୱାସ। ଏହି ଭୂମିର ମାଟି, ପାଣି, ପବନର ଅଣୁ ପରମାଣୁରେ କୁଆଡ଼େ ଧ୍ୱନିତ ହୁଏ ଆଧ୍ୟାତ୍ମିକତାର ଗୁଞ୍ଜରଣ। କିନ୍ତୁ କାହିଁ ତା'ର ସେ ଅମୃତମୟ ରୂପ ? ଆଜି ତ ଲାଗୁଛି ଯେପରି ଶାଗୁଣା ଡେଣାରେ ଉଡ଼ି ଉଡ଼ି ସମୟ ଗାଇ ଚାଲିଛି କାପୁରୁଷାର୍ଥର କର୍କଶ ଗୀତି। ଲାଗୁଛି ସତେ ଯେପରି ସମୟର ମହୋଦଧି ବକ୍ଷରେ ବୁଦ୍‌ବୁଦ୍‌ର ଅଳିକ ଅଭିନୟରେ ଅବତୀର୍ଣ୍ଣ ମଣିଷ, 'ସଭ୍ୟତାର' ଆଖି ଝଲସା ଆଲୋକରେ ଅନ୍ଧ ହୋଇ ଅନୈତିକ ଅପ୍ରାକୃତିକ ସଙ୍ଗୀତର ମୁର୍ଚ୍ଛନାରେ ଝୁମି ଝୁମି, ନିଜକୁ ନିଃଶେଷ କରିଦେବାର ଅଭିଯାନ ଆରମ୍ଭ କରିଦେଇଛି। ସେଦିନ ବଣ ଜଙ୍ଗଲରେ ନିଃସଙ୍ଗ ଓ ଉଲଗ୍ନ ହୋଇ ବୁଲୁଥିବା ମଣିଷ ଆଜି ଗୋଟିଏ ସଭ୍ୟ ସାମାଜିକପ୍ରାଣୀ। ବଣ ଜଙ୍ଗଲରେ ଏକୁଟିଆ ବୁଲୁଥିଲା ବେଳେ ହିଂସ୍ର ବନ୍ୟଜନ୍ତୁର ଆକ୍ରମଣ ବା ଭୟଙ୍କର ପ୍ରାକୃତିକ ଘଟଣାଦି ଭଳି ଆସନ୍ନ ବିପଦରେ ଭୟଭୀତ ହୋଇ କାହାର ହାତ ହୁଏତ ଧରି ପକେଇଥିବ। ସ୍ପର୍ଶର ଉଷ୍ଣତା କେବେ ହୁଏତ ନେଇଥିବ କାମନାର ରୂପ। ଆଉ କାମନାରୁ ହୋଇଥିବ ପୁରୁଷ-ସ୍ତ୍ରୀର ମିଳନ ଆଦାମ୍ ଓ ଇଭ୍‌ଙ୍କ ଭାଗ୍ୟଲେଖା ଭଳି। ମିଳନ ଦେଇଥିବ ସନ୍ତାନ। ଶିଶୁର ସୁରକ୍ଷା ନେଇ ବାପା-ମା'ଙ୍କ ଆଗରେ ଉଭା ହୋଇଥିବା ଏକ ବିରାଟ ସମସ୍ୟା ପ୍ରକୃତିର ଏକ ବିଧାନକୁ ନେଇ ଯେ ସବୁ ପ୍ରାଣୀଙ୍କ ତୁଳନାରେ ଅସହାୟ ମଣିଷ ଶିଶୁ ଆବଶ୍ୟକ କରେ ବହୁ ଅଧିକ ସମୟ ନିଜକୁ ସୁରକ୍ଷା ଦେବାର ଯୋଗ୍ୟତା ହାସଲ ପାଇଁ। ଏହି ସମସ୍ୟାର ସମାଧାନସ୍ୱରୂପ ନିଜ ସନ୍ତାନର ସୁରକ୍ଷା ଭଳି ମୌଳିକ ଆବଶ୍ୟକତାକୁ ନେଇ ମଣିଷ ହୁଏତ ସ୍ୱାମୀ-ସ୍ତ୍ରୀର ସଂଜ୍ଞା ନିରୂପଣ କରିଥିବ ଓ ସୃଷ୍ଟି ହୋଇଥିବ ପରିବାରର ପରିକଳ୍ପନା ଯେତେ ହୁଗୁଳା-ମୁକୁଳା ହେଉପଛେ। ତା'ପରେ

★ ଦୈନିକ "ସମ୍ବାଦ"; ୧୦ ଏପ୍ରିଲ ୨୦୧୩

ଗଢ଼ା ହୋଇଥିବ ଗୋଷ୍ଠୀ, ଗୋତ୍ର ଓ ଗାଁ ଇତ୍ୟାଦି ଶହ ଶହ ବର୍ଷର ଆଚାର ବ୍ୟବହାରର ପରିବର୍ତ୍ତନକୁ ନେଇ। ସତେ ଯେପରି ଏହି ସଂଗଠନ ପ୍ରକ୍ରିୟା ଚାଲିଛି ଏକ ଗାଣିତିକ ସୂତ୍ର ଆଧାରରେ; ପ୍ରଥମେ ଏକ, ତା'ପରେ ଏକରୁ ଦୁଇ, ଦୁଇରୁ ତିନି ଓ ଧୀରେ ଧୀରେ ତିନିରୁ ହଜାରେ, ହଜାରରୁ ଲକ୍ଷ ଓ ଲକ୍ଷେରୁ କୋଟି, ଏମିତି ଏମିତି ମଣିଷ ହୋଇଗଲା ଏକାଧାରରେ ପରିବାର, ସମାଜ, ରାଷ୍ଟ୍ର ଓ ସଭ୍ୟତାର ରୂପକାର ଓ ସେ ସମସ୍ତ ଅନୁଷ୍ଠାନଗୁଡ଼ିକର ଦାୟିତ୍ୱସମ୍ପନ୍ନ ଶୃଙ୍ଖଳିତ ସଦସ୍ୟ। ମଣିଷ ଚୁକ୍ତିବଦ୍ଧ ହେଲା ନିଜ ସହିତ ନିଜେ ! ସାହାଯ୍ୟ, ସହଯୋଗ, ସଦିଚ୍ଛା, ସହାନୁଭୂତି, ସତ୍ୟ, ସୌନ୍ଦର୍ଯ୍ୟ ଓ ସଭ୍ୟତାର ପରିଧି ମଧ୍ୟରେ ନିଜକୁ ଆବଦ୍ଧ ରଖିବାର ଚୁକ୍ତି; ପଶୁଟିଏ ହୋଇ ମଧ୍ୟ ପାଶବିକ ପ୍ରବୃତ୍ତିରୁ ନିଜକୁ ନିବୃତ୍ତ ରଖିବାର ଚୁକ୍ତି।

ଆଜିର ମଣିଷ କିନ୍ତୁ ଯୁଗ ଯୁଗ ଧରି ସେ ଚୁକ୍ତିଗୁଡ଼ିକୁ ହାରାହାରି ନ୍ୟାୟରେ ମାନି ମାନି କ୍ଳାନ୍ତ ହୋଇଗଲା ଭଳି ମନେହୁଏ। ଅନ୍ତତଃ ପ୍ରତିଦିନର ହୃଦୟ ବିଦାରକ ଅଖବରଗୁଡ଼ିକ ତାହା ହିଁ ଉଦ୍‌ଘୋଷଣା କରୁଛନ୍ତି। ଆମର ଆଧୁନିକ ସମାଜ ଯେ ଅନ୍ତର୍ନିହିତ ଦୁରାରୋଗ୍ୟ ରୋଗରେ ପୀଡ଼ିତ-ଏ ଉଦ୍‌ଘୋଷଣାମାନ ତା'ର ମଧ୍ୟ ଏକ ଜ୍ୱଳନ୍ତ ପ୍ରମାଣ। କେଉଁ ସ୍ଥାନରେ, କେଉଁ ପରିସ୍ଥିତିରେ, କେତେ ଜଣ ମଣିଷ କେଉଁ ଦୁଷ୍କର୍ମରେ ପ୍ରବୃତ୍ତ ସେସବୁର ଖବର ତଥା ଦୁଷ୍କର୍ମର ଦଣ୍ଡବିଧାନ କଥା ହୁଏତ ଆମ ପ୍ରଚଳିତ ଶାସନ ବ୍ୟବସ୍ଥା ବୁଝିବ କିନ୍ତୁ ତା'ଠାରୁ ବହୁଗୁଣରେ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ହେଉଛି ଏଭଳି ଉଦ୍ଭଟ ନାଟକର ରଚୟିତା କିଏ? କିଏ ଏ ଅବରୋହୀ ଅଭିନୟଗୁଡ଼ିକର ନିର୍ଦ୍ଦେଶକ? ଟିକିଏ ଚିନ୍ତାକଲେ ସ୍ପଷ୍ଟ ପ୍ରତୀୟମାନ ହେବ ଯେ ଏସବୁ ଉଦ୍ଭଟ ନାଟକର ରଚୟିତା ଆଧୁନିକ ସମାଜର ମନସ୍ତତ୍ତ୍ୱ।

ସମୟ ଓ ସମାଜର ମନସ୍ତତ୍ତ୍ୱକୁ ବୁଝିବା ପାଇଁ ଆମକୁ ପୁଣି ଟିକେ ପଛକୁ ଅନେଇବାକୁ ପଡ଼ିବ। ଗୋଷ୍ଠୀ ରଚନା କରି ଚାଷବାସ ଶିଖି ମଣିଷ ଯେତେବେଳେ ନଦୀ ଓ ଝରଣା-କୂଳିଆ ଶାନ୍ତ ପରିବେଶରେ ନିଜ ପାଇଁ ଦାନା, କନା ଓ ମୁଣ୍ଡ ଉପରକୁ ଚାଳଖଣ୍ଡେର ବନ୍ଦୋବସ୍ତ କରିପାରିଲା ତା'ର ଆବଶ୍ୟକତାର ମାଣକ ତ ପୂରିଗଲା, କିନ୍ତୁ ପେଟର ଭୋକ ମରିଯିବା ସହ ମନ ଓ ମସ୍ତିଷ୍କର ଭୋକ ମୁଣ୍ଡ ଟେକିଲା। ମଣିଷ ଭାବରାଜ୍ୟର ସୃଷ୍ଟି କଲା। ପ୍ରକୃତିଦତ୍ତ ସୃଜନୀ ଶକ୍ତି ନେଇ ମଣିଷ ସୃଷ୍ଟି କଲା କଳା, ସାହିତ୍ୟ, ଗଣିତ, ଦର୍ଶନ ଓ ବିଜ୍ଞାନ। ହୃଦୟ ଓ ଆବେଗ ସ୍ପନ୍ଦିତ କଳା, ସାହିତ୍ୟକୁ ନେଇ ମଣିଷ ପ୍ରକୃତିର ପୂଜା କଲା ତ ଧୀଶକ୍ତି ପ୍ରସୂତ ବିଜ୍ଞାନ ସାହାଯ୍ୟରେ ଭାବରାଜ୍ୟରୁ ଯନ୍ତ୍ରରାଜ୍ୟକୁ ଡେଇଁବାର କଳାକୌଶଳ ହାସଲ କରି

ମଣିଷ ପ୍ରକୃତିକୁ ପଦାନତ କରିବାର ସ୍ୱପ୍ନ ଦେଖିଲା। ଛୋଟ ଛୋଟ ବିଜୟରେ କିଛି ସମୟ ଉତ୍‌ଫୁଲ୍ଲିତ ବି ହେଲା। କିନ୍ତୁ ଦ୍ୱିତୀୟ ବିଶ୍ୱଯୁଦ୍ଧର ଶେଷଦୃଶ୍ୟ ଭାବରେ ଆଣବିକ ଅସ୍ତ୍ରର କଳ୍ପନାତୀତ ଭୟାବହତାରେ ଭୟଭୀତ ହୋଇ ସେ ଏକ ଆତ୍ମଘାତୀ ପଥର ପଥିକ ସାଜିଛି ବୋଲି ମଣିଷ ବୁଝିପାରିଲା। ପ୍ରକୃତି ଉପରେ ଜୟ ନୁହେଁ ବରଂ ପ୍ରକୃତି ସହ ସମ୍ଭ୍ରମତାପୂର୍ଣ୍ଣ ସହାବସ୍ଥାନ ହିଁ ଏକ ଦୀର୍ଘସ୍ଥାୟୀ ଶାନ୍ତିପ୍ରଦ ସଭ୍ୟତାର ମୂଳପାଠ ବୋଲି ହୃଦୟଙ୍ଗମ କଲା। କିନ୍ତୁ ସେତେବେଳକୁ ଯନ୍ତ୍ର-ରୂପୀ ସୁନାର ହରିଣ ମଣିଷର ବିବେକ-ସୀତାଙ୍କୁ ଏକ ଅପ୍ରତ୍ୟାବର୍ତ୍ତୀ ରାସ୍ତାରେ ଅନତିକ୍ରମ୍ୟ ଦୂରତାକୁ ଆକର୍ଷିତ କରି ନେଇଯାଇଥିଲା। ମଣିଷରକ୍ତ ଚାଖି ବାଘ ମଣିଷଖିଆ ହେଲାଭଳି ଯନ୍ତ୍ରାରୂଢ଼ ଅଳ୍ପ ଲୋକ, ଗରିବ ଅନୁନ୍ନତ ବହୁ ଲୋକ ଓ ବହୁ ଦେଶକୁ ଅତ୍ୟାଚାର ଓ ଶୋଷଣ ମାଧ୍ୟମରେ 'ଉନ୍ନତ' ଓ ବିତ୍ତଶାଳୀ ହେବାର ସୂତ୍ର ପାଇ ଯାଇଥିଲେ। ସେ ସୂତ୍ରକୁ ସେମାନେ ହାତଛଡ଼ା କରିବାକୁ ଚାହୁଁ ନଥିଲେ। ଏହି ସାମ୍ରାଜ୍ୟବାଦୀ ଓ ପୁଞ୍ଜିବାଦୀ ବ୍ୟବସ୍ଥାର ମୁଖ୍ୟ ସ୍ୱର ହେଲା ଦୁର୍ବଳ, ଗରିବ ଓ ଅଶିକ୍ଷିତ ଉପରେ ପ୍ରଭୁତ୍ୱ ସଂସ୍ଥାପନର; ସେମାନଙ୍କ ସ୍ୱାଧୀନତାର ବା ସମାନତାର ନୁହେଁ। ଏ ସ୍ୱର ହେଉଛି ମିଥ୍ୟା, ଦୁର୍ନୀତି, ଅପରାଧ, ପାପ ଓ ଧର୍ଷଣର ସ୍ୱର; 'Foul is useful, fair is not'। ସମୟ ଉପରେ ଏ ସ୍ୱର ସମ୍ମୁଖ ବିରୋଧରୁ ବର୍ତ୍ତିବା ପାଇଁ ଧୀରେ ଧୀରେ ପ୍ରକାଶ୍ୟରୁ ପ୍ରଚ୍ଛନ୍ନ ହେଲା ସିନା କିନ୍ତୁ ଛଳନାର ଖୋଳପା ଭିତରେ ସୁଦୃଢ଼ ହେବାରେ ଲାଗିଲା। ଏଠି ରାସ୍ତାର କିଛି ମହତ୍ତ୍ୱ ନଥାଏ, ଥାଏ କେବଳ ଫଳାଫଳର। କାରବାର କେବଳ ବେପାର; ହେଉ ବା ସେ ଅର୍ଥନୀତି, ରାଜନୀତି ବା ସମାଜନୀତିର କ୍ଷେତ୍ର। ତେଣୁ ସବୁ କ୍ଷେତ୍ରରେ ବହୁରୂପୀ 'ଧର୍ଷଣ'ର କୁତ୍ସିତ ବିଜ୍ଞାପନ। ସେଇଥିପାଇଁ ତ ସାମାନ୍ୟ ସ୍କୁଲ-କଲେଜର ପରୀକ୍ଷା ପାଲଟି ଯାଉଛି ଏକ ମହାଯୁଦ୍ଧ, ନିର୍ବାଚନ ହୋଇଛି ପ୍ରବଞ୍ଚନା ଓ ଦୁର୍ନୀତିର ମହାସମାରୋହ ଓ ସାଧାରଣ ଲୋକଟି ପାଇଁ ନ୍ୟାୟପ୍ରାପ୍ତି ଏକ ଯନ୍ତ୍ରଣାଭରା ମହାପ୍ରତୀକ୍ଷା। ପ୍ରତିଟି କ୍ଷେତ୍ରରେ ଡାଆଣୀ ଓ ଗୁଣିଆ କୋଳାକୋଳି ମୁଦ୍ରାରେ ସାଧାରଣ ଜନତାକୁ 'ଧର୍ଷଣ' କରିଚାଲିଛନ୍ତି ଅଭିନବ ଉପାୟରେ। ଧ୍ୱଜା ସତ୍ୟର କିନ୍ତୁ ଧ୍ୱଜାଧାରୀ ଅସତ୍ୟର।

ବ୍ୟକ୍ତି ସ୍ୱାଧୀନତା ବା ମର୍ଯ୍ୟାଦାର ଧର୍ଷଣ ଘଟଣାଗୁଡ଼ିକ ଗଣମାଧ୍ୟମରେ ଶିରୋନାମା ବହନ କରିବା ସହ ବହୁ ସମୟ ଧରି ସମାଜର ଆତ୍ମାକୁ ଆନ୍ଦୋଳିତ କରେ ସତ କିନ୍ତୁ ସେ ସବୁ ଗୋଟିଏ ଗୋଟିଏ ରୋଗ ନୁହଁନ୍ତି ବରଂ କେବଳ ରୁଗ୍‌ଣ ସାମାଜିକ ମନସ୍ତତ୍ତ୍ୱ ରୋଗର ଉପସର୍ଗଗୁଡ଼ିକ ମାତ୍ର। ଯେତେବେଳେ ସମାଜନୀତି, ଅର୍ଥନୀତି ଓ ରାଜନୀତି

ଧର୍ଷଣ-ପ୍ରଧାନ ମାନସିକତା ଭରା ସେତେବେଳେ ବ୍ୟକ୍ତି ସ୍ୱାଧୀନ ଓ ସୁରକ୍ଷିତ ରହିବ କିପରି ? 'ଧର୍ଷଣ'-ମାନସିକତାଗ୍ରସ୍ତ ନେତା, ବ୍ୟବସାୟୀ ଓ 'ଜନସେବକ'ଙ୍କ ତ୍ରିବେଣୀ-ସଙ୍ଗମରୁ କଳୁଷିତ ଧାରା ତ ବହି ଚାଲିଛି ତଳକୁ ତଳକୁ ସାରା ସମାଜକୁ ପୂତିଗନ୍ଧମୟ କରି 'ଟ୍ରିକଲ୍ ଡାଉନ୍ ଏଫେକ୍ଟ' ପରି ! ପୁଣି ସେହି ଦୁରାତ୍ମାମାନଙ୍କ ପାଖରେ ଯେତେବେଳେ ପୋଥିଗତ ସାର୍ବଭୌମତ୍ୱର ଅଧିକାରୀ ସାଧାରଣ ଜନତା ନ୍ୟାୟ ପାଇଁ ଆର୍ତ୍ତଚିତ୍କାର କରେ ସେମାନେ କେତେ ଖଣ୍ଡରେ ଭୂତେଇ ଦିଅନ୍ତି। ଖଳନାୟକମାନେ କରିବେ ସ୍ଖଳନର ପ୍ରତିକାର; କି ବିଡ଼ମ୍ବନା ସତେ।

ସ୍ୱାଧୀନତାର ୬-୭ ଦଶନ୍ଧି ଭିତରେ ଆମ ଦେଶରେ ନିୟମ କିପରି ଓ କେତେଦୂର ନିଜ ବାଟରେ ଯାଏ ସେକଥା ସାଧାରଣ ଭାବେ ଶିକ୍ଷିତ ବା ସଚେତନ ଲୋକକୁ ଅଜଣା ନ ଥିବ। ନିୟମକୁ ଆଖି ମିଟିକା ମାରିବାର କାମକୁ ସହଜ ସୁଗମ କରିବା ପାଇଁ ତ ନେତାମାନେ ଉନ୍ନତି ଓ ଅଭିବୃଦ୍ଧିର ମନ ଭୁଲାଣିଆ ଗୀତ ଗାଇ, ଗପ ଶୁଣେଇ ସାଧାରଣ ଜନତାକୁ ଅଶିକ୍ଷା ଓ ଅଭାବର ନିଶାରେ ଅଚେତନ କରିବାର ସୁଚିନ୍ତିତ ଯୋଜନାର ଜାଲ ବୁଣି ଚାଲିଛନ୍ତି। ଏହି ଜାଲରୁ ମୁକୁଳିବାର ଉପାୟ ଭାବରେ ମଣିଷ ତା'ର ବ୍ୟକ୍ତିଗତ ତଥା ନିଜ ବସତିର କ୍ଷୁଦ୍ର ପରିସର ମଧ୍ୟରେ ହିଁ ଧର୍ଷଣର ପ୍ରତିକାର ଖୋଜିବାକୁ ପଡ଼ିବ ବା ସୃଷ୍ଟି କରିବାକୁ ହେବ। ସେଥିଲାଗି ଆବଶ୍ୟକ ନିଜର ବୁଦ୍ଧି, ସଂସ୍କାର ଓ ସଂଯମର ମିଶ୍ରଣରେ ପ୍ରସ୍ତୁତ ରସାୟନ; କୌଣସି ଧାର୍ମିକ, ନୈତିକ ବା ଆଧ୍ୟାତ୍ମିକ ଚେତନାର ପ୍ରଭାବରେ ନହେଉ ପଛେ କିନ୍ତୁ ପରିବାର ଓ ସମାଜ ଭଳି ତ୍ରିତାପମୋଚନକାରୀ ଅନୁଷ୍ଠାନଗୁଡ଼ିକର ଦୀର୍ଘ ନିରାମୟ ଜୀବନ ଲକ୍ଷ୍ୟରେ ଅନ୍ତତଃ ହେଉ। ସତର୍କତା ଓ ସଂଯମର ବାଟକୁ "ମୋରାଲ ପୁଲିସିଂ" କହି ଫୋପାଡ଼ି ଦେବା ସାମାଜିକ ଚୁକ୍ତିର ହିଁ ଉଲ୍ଲଂଘନ ଓ ବ୍ୟକ୍ତି ତଥା ସମାଜ ପାଇଁ ଏକ ଅସୁରକ୍ଷିତ ଭବିଷ୍ୟତର ନିମନ୍ତ୍ରଣ। ସେଇଥିପାଇଁ ତ କୁହାଯାଇଛି ଯେ ନିରନ୍ତର ସତର୍କତା ହିଁ ସ୍ୱାଧୀନତାର ମୂଲ୍ୟ। ପ୍ରତ୍ୟେକ ମଣିଷ-ପୁରୁଷ ସ୍ତ୍ରୀ ନିର୍ବିଶେଷରେ-ଭୁଲିଯିବା ଉଚିତ ହେବ ନାହିଁ ଯେ ସମ୍ବିଧାନ ପ୍ରଦତ୍ତ କୌଣସି ଅଧିକାର ନିରଙ୍କୁଶ ନୁହେଁ; ଜଣେ ମଣିଷ କେବଳ ସେତିକି ଅଧିକାରର ଅଧିକାରୀ ଯେତିକି ସେ ଦାୟିତ୍ୱର ସୁସମ୍ପାଦନରୁ ସଂଗ୍ରହ କରିଥାଏ। ତେଣୁ ଅତ୍ୟାଧୁନିକତା ଆଳରେ ବ୍ୟକ୍ତିଗତ ବ୍ୟବହାରିକ ଉଦ୍ଦାମତା କାପୁରୁଷମାନଙ୍କର କାୟା-ବିସ୍ତାରକୁ ପ୍ରଶ୍ରୟ ଦେଇ ଅସହ୍ୟ କରିବା ସହ ସାମାଜିକ ବିଧିବ୍ୟବସ୍ଥାର ବିବର୍ତ୍ତନ ବାଟରେ ଆଦିମତାର ଯେ ପୁନରାବିଷ୍କାର ନ କରିବ ଓ ସଭ୍ୟତାର ସମାଧି ନ ଗଢ଼ିବ କିଏ କହିବ ?



# ଚେହେରାର ଭିତରେ, ବାହାରେ

"Face is the index of the man" କଥାଟି କେବେଠାରୁ ତା'ର ସତ୍ୟତା ହରାଇ ସାରିଲାଣି। ତା' ସହିତ ବିଶ୍ୱସନୀୟତା ହରାଇଛନ୍ତି ଶିକ୍ଷାଦୀକ୍ଷା, ପଦପଦବି, ଜାତିଗୋତ୍ର, ଧର୍ମ ସଂପ୍ରଦାୟ ଓ ଲିଖନ-ବଚନ ଭଳି ଅନେକ କିଛି ଯାହାସବୁ ବିଭିନ୍ନ ଭାବରେ ଲୋକଟିର 'ମୁହଁ' ଭଳି ପରିଚୟାତ୍ମକ ଭୂମିକା ନିର୍ବାହ କରିବାର ପ୍ରତିଶ୍ରୁତି ଦେଇ ଆସୁଥିଲେ। ଏଗୁଡ଼ିକ ଆଉ ବ୍ୟକ୍ତି ବା ବ୍ୟକ୍ତିତ୍ୱର ସୂଚୀପତ୍ର ହୋଇ ରହିନାହାନ୍ତି। ବରଂ 'ସୂଚୀପତ୍ର'ଟିର ଆକର୍ଷଣରେ ପଡ଼ି 'ବହି'ଟି ପଢ଼ିବା ଆରମ୍ଭ କଲେ ମାତ୍ର ଅଳ୍ପ କେତୋଟି ପୃଷ୍ଠା ପରେ ହତାଶ ହେବାକୁ ପଡ଼େ। ବାହାରର ବିଜ୍ଞାପନ ଓ ଭିତରର ବାସ୍ତବିକତା ଭିତରେ ଥିବା ସମ୍ପୂର୍ଣ୍ଣ ବିପରୀତଧର୍ମୀ ବିରୋଧାଭାସ ଏକ ପ୍ରହେଳିକା ସୃଷ୍ଟି କରେ। ପ୍ରହେଳିକାଟି ଆହୁରି ରହସ୍ୟମୟ ହୋଇଯାଏ ଯେତେବେଳେ ମଣିଷ ଲକ୍ଷ୍ୟ କରେ ଯେ ସାରା ବିଶ୍ୱକୁ ପଦାର୍ଥ ବିଜ୍ଞାନ ଏକ ହୋଲୋଗ୍ରାମ ଭାବରେ ବୁଝିବାକୁ ଉଦ୍ୟତ ହେଉଥିଲା ବେଳେ, ଗୋଟିଏ ଭୌତିକ ଆଧାରର ସମ୍ପୂର୍ଣ୍ଣ ଆଭ୍ୟନ୍ତରୀଣ ଚରିତ୍ର ପୁରୋଭାଗରେ ପରିସ୍ଫୁଟ ହେଉଥିବାର ଅନୁମାନ କରାଯାଉଥିଲାବେଳେ ବ୍ୟକ୍ତିସତ୍ତା କିପରି ଏହି ଧାରାରୁ କେବଳ ବିଚ୍ୟୁତ ତ ନୁହେଁ ବିପରୀତାଭିମୁଖୀ ହୋଇ ହୋଇ ଚାଲିଛି। ସତେ ଯେପରି 'ମାୟାବାଦ'ର ଏହା ଏକ ବ୍ୟକ୍ତିସ୍ତରୀୟ ଅପଭ୍ରଷ୍ଟ ପ୍ରତିରୂପ! ଯାହା ପ୍ରତୀୟମାନ ତାହା ପ୍ରକୃତ ନୁହେଁ!

ଭିତର ଓ ବାହାରର ଏ ବିସଂଗତି ମଣିଷ ଚରିତ୍ରକୁ ଓ ମଣିଷ ମନସ୍ତତ୍ତ୍ୱକୁ ଅବୋଧ ଜଟିଳତାରେ ଭରି ଦେଇଛି। ବ୍ୟକ୍ତିଠାରୁ ଆରମ୍ଭ କରି ସମାଜ, ଦେଶ ତଥା ଇତିହାସର ଗତି ବଦଳାଇ ଦେବାରେ ମାୟାବୀ ମଣିଷର ମାୟାର ସାମର୍ଥ୍ୟ କଥା ବା କାହାକୁ ଅଜଣା! ଦ୍ୱୈତ-ବ୍ୟକ୍ତିତ୍ୱର ମାୟା ଜାଲରେ ଚିର ବନ୍ଧନମୁକ୍ତ ସମୟ ବି ବାନ୍ଧି ହୋଇଗଲା ଭଳି ଲାଗେ।

---

★ ଦୈନିକ "ସମ୍ବାଦ"; ୧୬ ଅକ୍ଟୋବର ୨୦୧୩

ଭିତର ବାହାରର ଅମେଳ ମିଥ୍ୟା, କପଟ, ଛଳନା ଓ ପ୍ରତାରଣା ଭଳି ବହୁ ରୂପରେ ପ୍ରକଟିତ ହୋଇଥାଏ। ଏହି ଗୁଣଗୁଡ଼ିକ ମାଧ୍ୟମରେ ହିଁ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ମତାନ୍ତର, ମନାନ୍ତର ଓ ଶତ୍ରୁତାର ଉଦ୍ରେକ ହୋଇଥାଏ। ମନସ୍ତତ୍ତ୍ୱର ଏହି ଚକାଭଉଁରୀରେ ସ୍ୱାମୀ-ସ୍ତ୍ରୀ, ବାପା-ମା', ପୁଅ-ଝିଅ, ଭାଇ-ଭାଇ, ବନ୍ଧୁ-ବନ୍ଧୁ, ପ୍ରେମିକ-ପ୍ରେମିକା ଭଳି ସବୁ ପ୍ରକାର ସମ୍ପର୍କ ନିଜ ନିଜର ସତ୍ତା ହରାଇବା ଉଦାହରଣର ଶେଷ ନାହିଁ। ଇତିହାସ ତ ଜୁଡ଼ାସ୍, ବ୍ରୁଟସ୍, ଜୟଚାନ୍ଦ ଓ ମିରଜାଫର ଭଳି ଚରିତ୍ରମାନଙ୍କର ବିଶ୍ୱାସଘାତକତାର ଜୀବନ୍ତ ଆଲେଖ୍ୟ। ଏମାନଙ୍କ ବିଶ୍ୱାସଘାତକତା ଇତିହାସର ମୋଡ଼ ବଦଳାଇ ଦେଇଛି। ଏସବୁ କ୍ଷେତ୍ରରେ ପରିଦୃଷ୍ଟ ମଣିଷକୁ ବିଶ୍ୱାସ କରିବାର ଭୟାବହ ପରିଣତି ସରଳ ବିଶ୍ୱାସର ଅନ୍ତଃସ୍ଥଳକୁ ବିଦୀର୍ଣ୍ଣ କରି ଚାଲିଛି କାଳ କାଳ ଧରି।

ମିଥ୍ୟା ପ୍ରତିଶ୍ରୁତିକୁ ଆଶ୍ରୟ କରି ତେଜୀୟାନ୍ ହୋଇ ଉଠିଛି ଆଧୁନିକ ବିଜ୍ଞାପନର ସାମ୍ରାଜ୍ୟ। ଦିନ କେଇଟାରେ ଅପରୂପ ସୌନ୍ଦର୍ଯ୍ୟପ୍ରାପ୍ତି ବା ସ୍ୱର୍ଗୀୟ ସମ୍ଭୋଗ ସୁଖଠାରୁ ଆରମ୍ଭ କରି ବିଭିନ୍ନ ଦୂରାରୋଗ୍ୟ ରୋଗରୁ ଅକ୍ଲେଶ ମୁକ୍ତି ତଥା ସହଜରେ ଭଗବତ୍ ପ୍ରାପ୍ତି ପର୍ଯ୍ୟନ୍ତ ସବୁ ସ୍ୱପ୍ନ ସାକାର କରିବାର ପ୍ରତିଶ୍ରୁତିର ବିପଣି ଏ ବିଜ୍ଞାପନ। ଲକ୍ଷ ଲକ୍ଷ କୋଟି ଟଙ୍କାର ସାମ୍ରାଜ୍ୟ। ସାନ-ବଡ଼, ଧନୀ-ଦରିଦ୍ର, ପୁରୁଷ-ସ୍ତ୍ରୀ, କଳା-ଗୋରା ସମସ୍ତେ ଏ ସାମ୍ରାଜ୍ୟର ନାଗରିକତ୍ୱ ପାଇଁ ବ୍ୟାକୁଳ। "Castle in the air" ବା ଶୂନ୍ୟରେ ଅଟ୍ଟାଳିକା ଗଢ଼ଣର ଏହା ବୋଧହୁଏ ସର୍ବଶ୍ରେଷ୍ଠ ଉଦାହରଣ। ବର୍ତ୍ତମାନର ଦୁର୍ନୀତିଗ୍ରସ୍ତ ଭାରତୀୟ ଜନଜୀବନ ମଧ୍ୟ ଭିତର-ବାହାର ଅସାମଞ୍ଜସ୍ୟର ଆଉ ଏକ କ୍ଷେତ୍ର। ଭିତରେ ନାକବୁଡ଼ାଣି ଦୁର୍ନୀତିରେ ଲିପ୍ତ ଥିବେ କିନ୍ତୁ ବାହାରେ ନୀତି ନୈତିକତାର ଅମ୍ଳାନ ମୂର୍ତ୍ତିଟିଏ ଭଳି ଅଭିନୟ କରୁଥିବେ, ସମାଜରେ ନୈତିକ ମୂଲ୍ୟବୋଧର ଉତ୍‌ଥାନ ପାଇଁ ଆହ୍ୱାନ ଦେଉଥିବେ। ନିଜେ କିପରି ସବୁ ଶାସ୍ତ୍ରଜ୍ଞାନ ସତ୍ତ୍ୱେ ଦୁଶ୍ଚରିତ୍ର, ଦୁର୍ନୀତିଗ୍ରସ୍ତ ଓ ଦୁଷ୍କର୍ମପ୍ରବଣ ହେଲେ ସେ କଥା ହୁଏତ ଭୁଲି ଯାଆନ୍ତି ବା ଅନ୍ୟମାନଙ୍କୁ ନୈତିକତାର ଶୃଙ୍ଖଳରେ ବାନ୍ଧି ନିଜ ଅନୈତିକ କାର୍ଯ୍ୟକଳାପକୁ ନିଷ୍କଣ୍ଟକ କରିବାର ଗୋପନ ଯୋଜନାରେ ଲିପ୍ତ ଥାଆନ୍ତି କହିବା କଠିନ। ଅସଲ କଥା ଯାହାବି ହୋଇଥାଉ ସାଧାରଣ ଜୀବନ ଏ ପ୍ରବଞ୍ଚନାର ଆଘାତରେ ଧ୍ୱସ୍ତବିଧ୍ୱସ୍ତ ହୋଇଯାଏ।

ଏହି ପ୍ରବଞ୍ଚନା ଅବଲୀଳାକ୍ରମେ ବିସ୍ତାର ଲାଭ କରିଛି ଆଜିର ତଥାକଥିତ ଗଣତାନ୍ତ୍ରିକ ରାଜନୀତିକୁ। ଭାରତ ଭଳି ଅନୁନ୍ନତ ଦେଶମାନଙ୍କ ରାଜନୀତିରେ ସମାଜର ବିଭିନ୍ନ ବିଭାଗର 'ପଛବେଞ୍ଚ୍' ବା 'ବେଞ୍ଚ ନଥିବା' ଲୋକମାନଙ୍କ ଭିଡ଼। ନେତୃତ୍ୱ ନେବାର ସର୍ବଗୁଣ ବିବର୍ଜିତ ଲୋକମାନେ ହିଁ ନେତା। ନୀତି, ନିୟମ ଓ ଶୃଙ୍ଖଳା ପ୍ରତି

ସାମାନ୍ୟତମ ସମ୍ମାନ ନ ଥିବା ଲୋକମାନଙ୍କ ହାତରେ ନିୟମ ପ୍ରଣୟନ ଓ ନିୟମ ସୁରକ୍ଷାର ଦାୟିତ୍ୱ; ମାଙ୍କଡ଼ମାନଙ୍କ ହାତରେ ଶାଳଗ୍ରାମ ଭଳି। ସାମାଜିକ ଓ ନୈତିକ ସ୍ଖଳନର ମୁଖ୍ୟ ସୂତ୍ରଧର ହୋଇ, ଦୁର୍ନୀତି ଓ ଦୁଷ୍କର୍ମର ଅବତାରୀ ପୃଷ୍ଠପୋଷକ ସାଜି ଲୋକମାନଙ୍କ ଜୀବନକୁ ଦୁର୍ବିସହ କରୁଥିଲାବେଳେ ମଧ୍ୟ ଏମାନେ କେବଳ ଜନମଙ୍ଗଳ ଓ ଜନସେବାର ମନ୍ତ୍ର ଉଚ୍ଚାରଣ କରି ଚାଲିଥାଆନ୍ତି। ଲୋକମାନଙ୍କ ଫମ୍ପା ମୁଣ୍ଡ ଓ ଖାଲି ପେଟ ହିଁ ଏମାନଙ୍କର ସର୍ବକାଳୀନ ରାଜନୈତିକ ଅସ୍ତ୍ର। ଏହି 'ପରମ ଦୟାଳୁ' 'ପରୋପକାରୀ' ନେତାମାନଙ୍କର ଭିତର ବାହାର ମଧ୍ୟରେ ସଯତ୍ନେ ଗଢ଼ା ବିଭେଦର କାଉଁରୀ ସ୍ପର୍ଶରେ "ଗଣମାନଙ୍କ ଦ୍ୱାରା, ଗଣମାନଙ୍କର ଓ ଗଣମାନଙ୍କ ପାଇଁ" ଭଳି ସୁସଂଜ୍ଞାପତି ଗୋଟିଏ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା କିପରି ଅନାୟାସରେ ତଳକୁ ଖସି ଏକ ଗଣ-ବିନାଶୀ ବା ଜାତି ବିନାଶକାରୀ ବ୍ୟବସ୍ଥାରେ ରୂପାନ୍ତରିତ ହୋଇଚାଲିଛି ତାହାହିଁ ଆମ ସମୟର ଏକ ବିରାଟ ବିଡ଼ମ୍ବନା।

ଏତିକିରେ ସନ୍ତୁଷ୍ଟ ନ ହୋଇ ମିଥ୍ୟା ଓ ଛଳନା ସେମାନଙ୍କ ପକ୍ଷ ମେଲାଇ ବସ୍ତୁ ଜଗତ ଛାଡ଼ି 'ଆଧାତ୍ମିକ' ଜଗତର ସୁନୀଳ ଆକାଶରେ ମଧ୍ୟ ସ୍ୱଚ୍ଛନ୍ଦରେ ବିଚରଣ କରିବା ଆରମ୍ଭ କରିଛନ୍ତି। ଆଧାତ୍ମିକ କ୍ଷେତ୍ରରେ ମଠ, ମନ୍ଦିର, ମସ୍‌ଜିଦ୍, ଗୀର୍ଜା ବଢ଼ିଚାଲିଛି; ଭଜନ, ପ୍ରବଚନ, ପୂଜାପାଠ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ବଢୁଛି। ଏ ସବୁ ସ୍ଥାନରେ ଭକ୍ତ ଓ ସଂସ୍କୃତି ପ୍ରେମୀଙ୍କ ଗହଳି ମଧ୍ୟ ବଢୁଛି। 'ଆଧାତ୍ମିକ ମାହୋଲ'ର ଏହି କଳ୍ପନାତୀତ ଅଭିବୃଦ୍ଧି ସହ ତାଳ ଦେଇ ହିଂସା, ଦୁର୍ନୀତି, ଦୁଷ୍କର୍ମ, ଲାଞ୍ଛମିଛ ମଧ୍ୟ କ୍ଷିପ୍ର ବେଗରେ ବୃଦ୍ଧି ପାଇ ସାମାଜିକ ସଂସ୍କାର, ଶୃଙ୍ଖଳା ଓ ପ୍ରଗତିକୁ ନିଶ୍ଚିହ୍ନ କରି ଦେବାକୁ ବସିଲାଣି। କେବଳ ଇତର ଲୋକ ନୁହନ୍ତି ସ୍ୱୟଂ ମଣିଷ ଦେହଧାରୀ 'ଭଗବାନ'ମାନେ ମଧ୍ୟ ମଣିଷର ସରଳ ବିଶ୍ୱାସ ଓ ପାପୀ ମନର ଭୟକୁ ଅସ୍ତ୍ର କରି ସେମାନଙ୍କ ପ୍ରଭାବ, ପ୍ରାଚୁର୍ଯ୍ୟ ଓ ସମ୍ଭୋଗର ସାମ୍ରାଜ୍ୟକୁ ସମୃଦ୍ଧ କରି ଚାଲିଛନ୍ତି। ଘରଦ୍ୱାର, ସ୍ତ୍ରୀ ପିଲା, ଜମିବାଡ଼ି ଭଳି ପାର୍ଥିବ ବସ୍ତୁଗୁଡ଼ିକର ଆକର୍ଷଣରୁ ମୁକ୍ତିକାମୀ ତଥା ସରଳ ଜୀବନ ଓ ଉଚ୍ଚ ଚିନ୍ତାକାଂକ୍ଷୀ ସାଧୁ ସନ୍ଥମାନେ ସାଧାରଣ ଜୀବନର ସୁଖ ଦୁଃଖ ମଧ୍ୟରେ ବୁଡ଼ି ରହୁଥିବା ଲୋକମାନଙ୍କ ତୁଳନାରେ ଅଚିନ୍ତନୀୟ ଭୋଗ ବିଳାସରେ ମଜି ରହୁଥିବାର ଦେଖାଯାଉଛି। ତେଣୁ 'ଗୁରୁ'ଙ୍କ ପଦାଙ୍କ ଅନୁସରଣ କରି ମାନବୋଚିତ ଧର୍ମକର୍ମରୁ ବିଚ୍ୟୁତ ହେବା ହିଁ ସାଧାରଣ ଜନଜୀବନର ସାରକଥା ହୋଇଯାଉଛି। ଦେହ କବଳିତ ଆତ୍ମାର ସ୍ୱର ନିରବି ଯାଉଛି।

ଜୀବନର ବିସ୍ତୀର୍ଣ୍ଣ ପ୍ରାନ୍ତରରେ ଭିତର-ବାହାରର ବିରୋଧାଭାସ ସୃଷ୍ଟି କରିଥିବା ଯାଦୁକରୀ କୀର୍ତ୍ତିରାଜି ଦେଖୁ ଦେଖୁ ମନରେ ସ୍ୱତଃ କୌତୂହଳ ସୃଷ୍ଟି ହୋଇଥାଏ ଏହାର ଗୁହ୍ୟ କାରଣଗତ ରହସ୍ୟକୁ ନେଇ। କାହିଁ ଗୋଟିଏ ହେଲେ ନିର୍ଜୀବ ବସ୍ତୁ କ୍ଷେତ୍ରରେ ତ ଏଭଳି ଉଦାହରଣ ଦେଖିବାକୁ ମିଳେ ନାହିଁ। ବୃନ୍ତଚ୍ୟୁତ ଫୁଲ କି ଫଳଟିଏ ବା ଆକାଶରୁ ଖସି ପଡୁଥିବା ବର୍ଷା ବୁନ୍ଦାଟିଏ ତ କାହିଁ ତଳକୁ ଖସି ପଡୁ ପଡୁ ମନ ବଦଳେଇ ଉପରକୁ ଉଠିଯାଏ ନାହିଁ; ସୂର୍ଯ୍ୟ ଘେରିପଟେ ଗ୍ରହଗୁଡ଼ିକ ତ କାହିଁ କେବେ ବିପରୀତ ଦିଗରେ ବୁଲିବାକୁ ମନ ବଳାନ୍ତି ନାହିଁ କି ନଦୀର ପ୍ରବାହ ଉଚ୍ଚରୁ ନୀଚକୁ ଗଡ଼ି ଆସିଲା ବେଳେ ଉଜାଣି ବୋହିବାର ନିଷ୍ପତ୍ତି ନିଏ ନାହିଁ। ଅପେକ୍ଷିତକୁ ଉପେକ୍ଷିତ କରିବାର ସାମର୍ଥ୍ୟ ନିର୍ଜୀବର ନ ଥାଏ। ଭିତର-ବାହାରର ବିଭେଦର ପ୍ରହେଳିକା ତେଣୁ ସଜୀବର ହିଁ ଏକ ରହସ୍ୟମୟ ଅର୍ନ୍ତପାଠ। ତାହା ପୁଣି ବିବର୍ତ୍ତନର ବିକାଶରେ ଯେଉଁ ଜୀବ ଯେତେ ଆଗରେ ଭିତର-ବାହାରର ବିଭେଦ ସୃଷ୍ଟିକାରୀ କୁଟିଳ ପ୍ରାଚୀର ନିର୍ମାଣରେ ସେ ସେତେ କୁଶଳୀ। ତେଣୁ କଥାଟା ବୋଧହୁଏ ମଣିଷର ମୁକ୍ତ-ଇଚ୍ଛା ବା 'ଫ୍ରି ୱିଲ୍' ସହିତ ସଂଶ୍ଳିଷ୍ଟ; ସମ୍ପୂର୍ଣ୍ଣ ଭାବରେ ନ ହେଲେ ମଧ୍ୟ କିଛି ମାତ୍ରାରେ। ମୁକ୍ତ-ଇଚ୍ଛାକୁ ନେଇ ଚାଲିଥିବା ଯୁଗଯୁଗର ସୁଗଭୀର ବିଚାର ଓ ବିତର୍କ ଭିତରକୁ ଯିବାର ଅଭିପ୍ରାୟ ନ ଥିଲେ ମଧ୍ୟ ଭିତରେ ଭେଲ ଓ ବାହାରେ ଭଲ, "ଜିହ୍ୱାଗ୍ରେ ମଧୁ ତିଷ୍ଠତି, ହୃଦୟେତୁ ହଳାହଳଂ" ଭଳି ଜଟିଳ ମନସ୍ତତ୍ତ୍ୱର ଅନ୍ତଃସ୍ଥଳରେ ମୁକ୍ତ-ଇଚ୍ଛାର ଭୂମିକାକୁ ଅସ୍ୱୀକାର କରାଯାଇ ନ ପାରେ।

ଆଜି ଯେତେବେଳେ ଜୀବନକୁ ଭୌତିକ ବିଜ୍ଞାନର ନିୟମ ଦ୍ୱାରା ପରିଚାଳିତ ଏକ ଜୈବିକ-ଯନ୍ତ୍ର ଭାବରେ ବୁଝିବାକୁ ବିଜ୍ଞାନୀ କେବଳ ଉଦ୍ୟତ ନୁହେଁ ବରଂ ସେହି ପଥରେ ଅନେକ ସାଫଲ୍ୟର ଅଧିକାରୀ, ମୁକ୍ତ-ଇଚ୍ଛାର ରହସ୍ୟଭେଦ ହୁଏତ ବହୁ ସମୟସାପେକ୍ଷ କିନ୍ତୁ ଅଭେଦ୍ୟ ନୁହେଁ କାରଣ ସମସ୍ୟାଟି ଜଟିଳତାରେ ମାତ୍ରାଧିକ ସିନା ପ୍ରକାରଭେଦରେ ନୁହେଁ। ସେ ପର୍ଯ୍ୟନ୍ତ ତେଣୁ ଭିତର-ବାହାରର ପ୍ରହେଳିକାରୁ ବୋଧହୁଏ ମୁକ୍ତି ନାହିଁ। ଆଉ ସେ ପର୍ଯ୍ୟନ୍ତ ଭରସା କେବଳ ମଣିଷର ମନୁଷ୍ୟତ୍ୱ ଓ ଭଗବାନଙ୍କ ଭୟ।

□□□

# ନବକଳେବର - କଥା ଓ ବ୍ୟଥା

ଯୁଗଯୁଗ ଧରି କୁହାଯାଉଛି ଯେ ଓଡ଼ିଆ ଆସ୍ଥା ଓ ଅସ୍ତିତ୍ୱର ସର୍ବୋଚ୍ଚ ଓ ସର୍ବୋତ୍ତମ ପ୍ରତୀକ ସେ; ମହାପ୍ରଭୁ ଶ୍ରୀଜଗନ୍ନାଥ। କୁହାଯାଏ ମଧ୍ୟ ଯେ ଓଡ଼ିଆ ମନସ୍ତତ୍ତ୍ୱର ଭୌତିକ, ଅଧିଭୌତିକ ଓ ଆଧ୍ୟାତ୍ମିକ ଭଳି ସମସ୍ତ ସ୍ତରର ସର୍ବଶେଷ ଅକ୍ଷୟ ଆଧାର ଶିଳା ସେ; ମହାପ୍ରଭୁ ଶ୍ରୀଜଗନ୍ନାଥ। ଆଜି କିନ୍ତୁ ପ୍ରଶ୍ନ ଉଠୁଛି ଯେ କଥାଟା ସତରେ କ'ଣ ସେୟା। ଆମ ଆଚରଣ, ବ୍ୟବହାର ଓ ଭାବନାରେ କ'ଣ ସତରେ ମହାପ୍ରଭୁଙ୍କର ସେଭଳି ଏକ ଅତୁଳନୀୟ ଅବର୍ଣ୍ଣନୀୟ ଦିବ୍ୟ ଉପସ୍ଥିତିର ଚିତ୍ର ଫୁଟି ଉଠୁଛି। ନା' ଆମେ ଏଭଳି ଏକ ନିଚ୍ଛକ ଛଳନାପ୍ରବଣ, ପ୍ରତାରଣାପ୍ରବଣ ଜାତି ଯେ ଠାକୁରଙ୍କୁ ଭଣ୍ଡାଇବାରେ ଆମ ମନରେ ତିଳେ ମାତ୍ର ଦ୍ୱିଧା ନାହିଁ; ଓଡ଼ିଆ ଜାତିର ସ୍ୱୟମ୍ଭୁଙ୍କୁ ଭୂଲୁଣ୍ଠିତ କରିବାରେ ମଧ୍ୟ ଆମର କୁଣ୍ଠା ନାହିଁ।

ଆସନ୍ତୁ ମହାପ୍ରଭୁଙ୍କର ୨୦୧୫ରେ ଅନୁଷ୍ଠିତ ହେଉଥିବା ନବକଳେବର ଆୟୋଜନକୁ ଏକ ଉଦାହରଣ ଭାବେ ନେବା। ମହାପ୍ରଭୁଙ୍କର ନବକଳେବର ହେବ, ପୁରୁଣା ବିଗ୍ରହ ସ୍ଥାନରେ ନୂତନ ବିଗ୍ରହ ରତ୍ନ ସିଂହାସନରେ ବିରାଜିତ ହେବେ ଓ ପୂଜା ପାଇବେ। ଏହା ଏକ ଲୌକିକ ପ୍ରଥା; ହୁଏତ ଇହ ଜଗତରେ ଦିନ ପ୍ରତିଦିନ ସଂଘଟିତ ହେଉଥିବା ଜନ୍ମ-ମୃତ୍ୟୁର ଲୀଳା ସହ ଆରାଧ୍ୟ ଦେବତାଙ୍କୁ ସଂଶ୍ଳିଷ୍ଟ କରିବାର ପ୍ରୟାସ ଏ। ବିଗ୍ରହ ପରିବର୍ତ୍ତନ ହେବେ କିନ୍ତୁ ପିଣ୍ଡ ନୁହଁନ୍ତି। ଏହା ମଧ୍ୟ ହିନ୍ଦୁ ଦର୍ଶନର ଗୂଢ଼ତତ୍ତ୍ୱ "ଶରୀର ମର, ଆତ୍ମା ଅମର"ର ଏକ ଲୌକିକ ପ୍ରଦର୍ଶନ। ଅନ୍ୟଥା ନିରାକାରର ଆକାର କ'ଣ, ଅରୂପର ରୂପ କ'ଣ, ସର୍ବନାମର ନାମ କ'ଣ ! ସେ ରୂପ ଚିନ୍ତନରେ ଖୋଦ୍ ଦେବଶିଳ୍ପୀ ବିଶ୍ୱକର୍ମାଙ୍କ ପରାଭୂତ କଳ୍ପନା ହିଁ ତ ଦେଇଛି ଠାକୁରଙ୍କୁ ଏକ ଦରଗଢ଼ା ରୂପ, ତେଣୁ ମହାପ୍ରଭୁଙ୍କର କଳେବର କଳ୍ପନା ସଚରାଚର ପରିବ୍ୟାପ୍ତ ପରମବ୍ରହ୍ମଙ୍କର 'ବାସସ୍ଥାନ' ଭାବରେ ମନ୍ଦିରର କଳ୍ପନା

★ ଦୈନିକ "ସମ୍ବାଦ"; ୨ ଜୁଲାଇ ୨୦୧୫

ଭଳି କଥା। ଅସୀମର ଅନୁଭବ ପାଇଁ ବହୁଧା ସୀମିତ ମଣିଷର ଏସବୁ ଗୋଟିଏ ଗୋଟିଏ ଆକୁଳ ପ୍ରଚେଷ୍ଟା।

କିନ୍ତୁ ଲୌକିକ ପରମ୍ପରାରେ ତ ଲୋକସମାଜ ବନ୍ଧା। ସାତ୍ତ୍ୱିକ ମନ ନେଇ ଶୁଦ୍ଧ ଆଚରଣରେ ପରମ ଆରାଧ୍ୟ ଦେବତାର ପୂଜାର୍ଚ୍ଚନାରୁ ହିଁ ମିଳିଥାଏ ଅଦ୍ଭୁତ ଜୀବନୀଶକ୍ତି ଯାହା ମଣିଷକୁ ଦୁର୍ବିସହ ସାଂସାରିକ ଦୁଃଖ, ଦୁର୍ଦ୍ଦିନ ଓ ଦୁର୍ଦ୍ଦଶାର ଯନ୍ତ୍ରଣାଦାୟକ ବନ୍ଧନରୁ ଦେଇଥାଏ ମୁକ୍ତି ଓ ଉତ୍ତରଣର ପ୍ରେରଣା। ତେଣୁ ସ୍ୱାଭାବିକ ଭାବରେ ମହାପ୍ରଭୁଙ୍କର ନବକଳେବରକୁ ନେଇ ଥିଲା ବ୍ୟକ୍ତି ମନରେ ଶିହରଣ, ଜାତିର ଚୈତନ୍ୟରେ ଆଲୋଡ଼ନ, ଗଣମାଧ୍ୟମରେ ଚଞ୍ଚଳତା ଓ ସରକାରୀ ସ୍ତରରେ ହୁଏତ କିଛି କାର୍ଯ୍ୟଭିତ୍ତିକ ବ୍ୟଗ୍ରତା। ଆଜି କିନ୍ତୁ ସବୁ ନିଷ୍ଫଳ, ନିର୍ବାକ; ବିବର୍ଣ୍ଣ, ବିଷର୍ଣ୍ଣ।

ଠାକୁର ଓ ମନ୍ଦିରଠାରୁ ବହୁ ଦୂରରେ ଗଣମାଧ୍ୟମରେ ପରିବେଷିତ ଖବରରୁ ଜଣେ ସାଧାରଣ ଲୋକ ହୁଏତ ଏତିକି ବୁଝୁଛି ଯେ ନବକଳେବର ବିଧିବିଧାନରେ ହୋଇଛି ବିଭିନ୍ନ ବିଚ୍ୟୁତି, ବିସଙ୍ଗତି ପ୍ରଥମ ଦିନରୁ ଓ କ୍ରମବର୍ଦ୍ଧିଷ୍ଣୁ ନ୍ୟାୟରେ ବିସ୍ଫୋରକ ରୂପ ନେଇଛି ବ୍ରହ୍ମ ପରିବର୍ତ୍ତନ ବିଧିରେ। ଦାରୁ ସଂଗ୍ରହ ଅଭିଯାନରେ ଯାଇଥିବା ଦଇତାପତି ଓ ପୂଜକମାନେ ନୂଆ ବାତାନୁକୂଳିତ କାର୍‌ରେ ଯିବା, ବଳଭଦ୍ର, ଜଗନ୍ନାଥ ଓ ସୁଭଦ୍ରା ତିନି ଠାକୁରଙ୍କ ଦାରୁ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରୁ ମିଳିବା ଓ ଜାତୀୟ ରାଜପଥ ଭଳି ଯାନବାହାନବହୁଳ ରାସ୍ତାକୁ ଦାରୁ ଶଗଡ଼ିର ଯାତ୍ରା ଆଳରେ ଘଣ୍ଟା ଘଣ୍ଟା ଧରି ବନ୍ଦ ରଖି ଯାତ୍ରୀ ତଥା ରୋଗୀବୈରାଗୀମାନଙ୍କୁ ହସ୍ତସନ୍ତ କରିବା ଇତ୍ୟାଦି କ'ଣ ବୈଦିକ ବିଧିବିଧାନ ଅନ୍ତର୍ଭୁକ୍ତ ? ଯଦି ଦାରୁ ଅନ୍ୱେଷଣକାରୀ ଦଳ ଆଧୁନିକ ସଭ୍ୟତାର ଅବଦାନ ପେଟ୍ରୋଲ୍ ବା ଡିଜେଲ୍ ଚାଳିତ ଯାନରେ ଯାଇପାରିଲେ, ତା'ହେଲେ ଦାରୁ ଚିହ୍ନଟ ଓ ଶାସ୍ତ୍ରାନୁମୋଦିତ ପୂଜାର୍ଚ୍ଚନା ପରେ ଦାରୁଟିକୁ ଆଧୁନିକ ବିଦ୍ୟୁତଚାଳିତ କରତରେ ସୁନ୍ଦର ଭାବରେ କାଟିବାରେ ଓ ଠାକୁରଙ୍କ ଦାରୁଗୁଡ଼ିକୁ ସୁନ୍ଦର ଭାବେ ସୁସଜ୍ଜିତ ଯାନରେ ଅଣାଯାଇ ପୁରୀରେ ୨-୩ ଘଣ୍ଟା ମଧ୍ୟରେ ପହଞ୍ଚାଇବାରେ ଅସୁବିଧା କ'ଣ ? ଦାରୁଶଗଡ଼ି ନାଁରେ ଦିନଦିନର ଯାତ୍ରା ମାଧ୍ୟମରେ ଲୋକମାନଙ୍କ ସରଳ ଭାବାବେଗକୁ ଉତ୍ତେଜିତ କରିବାରେ କି ଯଥାର୍ଥତା ଅଛି ? ଆଶ୍ଚର୍ଯ୍ୟର କଥା ଏହିଭଳି ଲୋକ ଦେଖାଣିଆ କାର୍ଯ୍ୟକ୍ରମରେ ରାଜନେତା, ମନ୍ତ୍ରୀ ତଥା ପୁଲିସ ବିଭାଗର ସର୍ବୋଚ୍ଚ କର୍ମଚାରୀମାନେ ମଧ୍ୟ ସାମିଲ୍। ଏମାନେ ଶୃଙ୍ଖଳା ରକ୍ଷା କରିବା ପରିବର୍ତ୍ତେ ସାମାଜିକ ଓ ଧାର୍ମିକ ବିଶୃଙ୍ଖଳାକୁ ହିଁ ପ୍ରଶ୍ରୟ ଦେଉଛନ୍ତି। ମଜାର କଥା ହେଉଛି ଓଡ଼ିଶା ଭଳି ଏକ

ଜଙ୍ଗଲପୂର୍ଣ୍ଣ ରାଜ୍ୟରେ ଠାକୁରଙ୍କ ଦାରୁ କୌଣସି ଜଙ୍ଗଲରୁ ନ ମିଳି ଉପକୂଳ ଅଞ୍ଚଳରୁ ମିଳିଯାଉଛି। ପୁଣି ଯେଉଁ ଲୋକଙ୍କ ବାଡ଼ିରୁ ଦାରୁ ମିଳୁଛି ତାଙ୍କୁ ସରକାର ଲକ୍ଷାଧିକ ଟଙ୍କା ପୁରସ୍କାର ଦେଉଛନ୍ତି। ଏଇଥିପାଇଁ ହୁଏତ ନବକଳେବର ପ୍ରସ୍ତୁତିର ପ୍ରତ୍ୟେକ କାର୍ଯ୍ୟକ୍ରମରେ ଉଙ୍କିମାରିଛି 'କାରବାର'ର ସନ୍ଦିଗ୍ଧ ରୂପ। ନିଆଁ ନଥିଲେ ଧୂଆଁ କାହିଁକି ଉଠିବ ? ମା'ଙ୍କର ସ୍ୱପ୍ନାଦେଶ ତ ଥିଲା ଦାରୁ ଲକ୍ଷଣ ଠିକ୍ ଥିଲା ବୋଲି, ତେବେ ପୁଣି ଦାରୁ ମାରା ଥିଲା ବା ଦାରୁ ପୋଲା ଥିଲା ଭଳି ଅଭିଯୋଗ ଆସୁଛି କିଭଳି ?

ସନ୍ଦେହ କିନ୍ତୁ ସାଧାରଣ ଲୋକଟି ମନରେ ସତ୍ୟତାର ନିକଟବର୍ତ୍ତୀ ହୋଇଛି ବ୍ରହ୍ମ ପରିବର୍ତ୍ତନ ଦିନର କଳ୍ପନାତୀତ ବିଭ୍ରାଟରେ। ଘଟଣାଟି ଯେ ପ୍ରତ୍ୟେକ ସ୍ୱାଭିମାନୀ ଓଡ଼ିଆ ମନରେ ଗଭୀର ବ୍ୟଥା ଓ ବେଦନାର କାରଣ ହୋଇଥିବ ଏହା ନିଃସନ୍ଦେହ। ଘଟଣାଟି ଯେ ଓଡ଼ିଆ ଜାତିର ଅସ୍ମିତାର ଧ୍ୱଜାକୁ ଅବନମିତ କରିଛି ଓ ଓଡ଼ିଆ ଜାତିର ପ୍ରାଣ ମହାପ୍ରଭୁ ଜଗନ୍ନାଥଙ୍କ ପ୍ରତି ଓଡ଼ିଆର ଅତୁଟ ନିଷ୍ଠା ପ୍ରତି କୁଠାରାଘାତ କରିଛି ଏହା ଅନସ୍ୱୀକାର୍ଯ୍ୟ।

ଏସବୁ ଘଟଣାକ୍ରମ ନିର୍ଦ୍ଦିଷ୍ଟ ଭାବେ ଅଙ୍ଗୁଳି ନିର୍ଦ୍ଦେଶ କରନ୍ତି ଶ୍ରୀମନ୍ଦିର ପରିଚାଳନା ଦିଗ ପ୍ରତି। ଶ୍ରୀମନ୍ଦିର ପରିଚାଳନା ବର୍ତ୍ତମାନ ଓଡ଼ିଶା ସରକାରଙ୍କ ହାତରେ। ସେବକ, ସେବାୟତ, ଦଇତାପତି ଓ ପୂଜକ ଇତ୍ୟାଦିଙ୍କୁ ନେଇ ଯେଉଁ ଛୋଟ ସମାଜଟି ତିନି ଠାକୁରଙ୍କ ସେବାରେ ନିୟୋଜିତ ସେମାନଙ୍କ କାର୍ଯ୍ୟାବଳୀର ତତ୍ତ୍ୱାବଧାରକ ବର୍ତ୍ତମାନ ଓଡ଼ିଶା ସରକାର। ଓଡ଼ିଶା ସରକାରଙ୍କ ଜଣେ ଉଚ୍ଚ ପଦାଧିକାରୀ ଶ୍ରୀମନ୍ଦିରର ମୁଖ୍ୟ ପ୍ରଶାସକ ଭାବରେ ନିଯୁକ୍ତ। ନବକଳେବରକୁ ନେଇ ବିଶେଷ କାର୍ଯ୍ୟକ୍ରମଗୁଡ଼ିକର ତତ୍ତ୍ୱାବଧାନ ପାଇଁ ମଧ୍ୟ ଗୋଟିଏ ସ୍ୱତନ୍ତ୍ର କମିଟି ସରକାର ଗଠନ କରିଛନ୍ତି। ଏହାର ମୁଖ୍ୟ ଅଛନ୍ତି ଜଣେ ସରକାରୀ ଦଳର ବରିଷ୍ଠ ରାଜନେତା। ଏସବୁ ବ୍ୟବସ୍ଥା ସତ୍ତ୍ୱେ ସାଧାରଣ ଭାବରେ ଠାକୁରମାନଙ୍କ ନୀତିନିର୍ଘଣ୍ଟରେ ବିଳମ୍ବର କଥା କ୍ରମବର୍ଦ୍ଧିଷ୍ଣୁ ଭାବରେ ଘଟିବାରେ ଲାଗିଛି। ମନ୍ଦିର ଗର୍ଭଗୃହରେ ଦର୍ଶନାର୍ଥୀମାନଙ୍କୁ ମାଡ଼ ମାରି ସେବାୟତମାନେ ରକ୍ତାକ୍ତ କରିବା ଭଳି ଲଜ୍ଜ୍ୟାକର ଘଟଣା ମଧ୍ୟ ଘଟୁଛି। ନବକଳେବର ଆୟୋଜନର ବିଭିନ୍ନ ତ୍ରୁଟି ବିଚ୍ୟୁତି କଥା ତ ବର୍ତ୍ତମାନ ଗଣମାଧ୍ୟମକୁ ଆଚ୍ଛାଦିତ କରି ରଖିଛି। ତେଣୁ ସରକାରୀ ପ୍ରଶାସନ ଯେ ଶ୍ରୀମନ୍ଦିର ପରିଚାଳନାରେ ବ୍ୟର୍ଥ ଏହା ସୁସ୍ପଷ୍ଟ।

କେବଳ ଶ୍ରୀମନ୍ଦିର ପରିଚାଳନା ନୁହେଁ, ହିନ୍ଦୁଧର୍ମର ଜଣେ ଶ୍ରେଷ୍ଠ ମାର୍ଗଦର୍ଶକ ଜଗତ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କର ପ୍ରତିଷ୍ଠା ସରକାରୀ ପ୍ରଶାସନ କ୍ଷୁଣ୍ଣ କରିବାର ଦୁଃସାହସର ଉଦାହରଣ ମଧ୍ୟ ଦେଖିବାକୁ ମିଳୁଛି। ଗତବର୍ଷ ଜଗତ୍‌ଗୁରୁଙ୍କର ରଥ ଉପରେ

ଯାତ୍ରୀମାନଙ୍କର ଚଢ଼ିବା ଓ ଦିଅଁଙ୍କୁ ସ୍ପର୍ଶ କରିବାର ବାରଣରେ ପରୋକ୍ଷ ପ୍ରତିବାଦରେ ଶ୍ରୀମନ୍ଦିର ପ୍ରଶାସନ ଶୃଙ୍ଖଳା ନାଁରେ ଜଗତ୍‌ଗୁରୁ ତାଙ୍କର କେବଳ ଜଣେ ଶିଷ୍ୟଙ୍କ ସହ ରଥ ଉପରକୁ ଯାଇ ଠାକୁରଙ୍କ ପୂଜାର୍ଚ୍ଚନା କରିପାରିବେ ବୋଲି ସର୍ତ୍ତ ରଖିବାର ଆସ୍ପର୍ଦ୍ଧା କଲେ। ପ୍ରତିବାଦରେ ଜଗତ୍‌ଗୁରୁ ଆଦୌ ରଥକୁ ଆସି ନ ଥିଲେ। ଏହା ମଧ୍ୟ ଥିଲା ପ୍ରଶାସନ ପ୍ରରୋଚିତ ଧାର୍ମିକ ବିଧିବିଧାନରେ ଏକ ଅଜ୍ଞ ଅହେତୁକ ହସ୍ତକ୍ଷେପ।

ସୌଭାଗ୍ୟବଶତଃ ଶ୍ରୀମନ୍ଦିର ପରିଚାଳନାର ବିକଳ୍ପ ମାର୍ଗଟିର ସଂକେତ ବ୍ରହ୍ମ ପରିବର୍ତ୍ତନରେ ଅକ୍ଷମଣୀୟ ବିଭ୍ରାଟର ପ୍ରତିକ୍ରିୟାରେ ଜଗତ୍‌ଗୁରୁ ଶଙ୍କରାଚାର୍ଯ୍ୟ ଶ୍ରୀ ନିଶ୍ଚଳାନନ୍ଦ ସରସ୍ୱତୀଙ୍କ ବକ୍ତବ୍ୟ ଓ ଓଡ଼ିଶାର ଘରେଘରେ ଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ଭାବେ ବରିତ ଗଜପତି ମହାରାଜ ଦିବ୍ୟସିଂହ ଦେବଙ୍କ ଏକ ଟେଲିଭିଜନ ସାକ୍ଷାତକାରରୁ ହିଁ ମିଳୁଛି। ଗଜପତି ମହାରାଜଙ୍କ ସାକ୍ଷାତକାରରୁ ସ୍ପଷ୍ଟ ଯେ ବର୍ତ୍ତମାନର ବିଭ୍ରାଟ ବହୁଦିନ ଧରି ରହିଆସିଥିବା ବିଶୃଙ୍ଖଳା ରୋଗର ବିସ୍ଫୋରକ ପରିପ୍ରକାଶ। ଆଉ ଏହି ରୋଗ ସୃଷ୍ଟିକାରୀ 'ଜୀବାଣୁ'ଗୁଡ଼ିକ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ନ ହେବା ମୂଳରେ ରାଜନୈତିକ ହସ୍ତକ୍ଷେପର ସନ୍ଦେହ। ତେଣୁ ସରଳରେ କହିଲେ ସବୁ ବିଭ୍ରାଟ ମୂଳରେ ସରକାରୀ ଦଳର ନେତା ଓ ରାଜନୀତି। ଖବର କାଗଜରୁ ମିଳୁଥିବା ସୂଚନା-ଜଣେ ଦଇତାପତି ପୁରୀ ନଗର ବିଜେଡ଼ି ଦଳର ମୁଖ୍ୟ ଓ ଆଉ ଜଣେ କତା ଶିଳ୍ପ ନିଗମର ଅଧ୍ୟକ୍ଷ ଭାବେ ଓଡ଼ିଶା ସରକାରଙ୍କ ଦ୍ୱାରା ଅବସ୍ଥାପିତ-ଉପରୋକ୍ତ ସନ୍ଦେହକୁ ଦୃଢ଼ୀଭୂତ କରୁଛି। ରାଜନୀତିଆଙ୍କ ବାଘ-ଛେଳି ଖେଳରେ ଅଳ୍ପ ବ୍ୟତିକ୍ରମ ବ୍ୟତୀତ ପ୍ରଶାସକମାନେ ଛେଳି; ସେମାନେ କି ପ୍ରଶାସନ କରିବେ ? ପୂର୍ବତନ ଡ଼ି.ଜି. ପ୍ରକାଶ ମିଶ୍ରଙ୍କ କେସ୍‌ରେ ମାନ୍ୟବର ଉଚ୍ଚନ୍ୟାୟାଳୟଙ୍କ ରାୟ ଏହାର ସଦ୍ୟତମ ଉଦାହରଣ। ତେଣୁ ଜଗତ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ ପରାମର୍ଶ ଅନୁସାରେ ଶ୍ରୀମନ୍ଦିର ପରିଚାଳନାରୁ ସରକାର ନିଜକୁ ସମ୍ପୂର୍ଣ୍ଣ ଭାବେ ଦୂରେଇ ରଖିବା ହିଁ ଶ୍ରେୟସ୍କର। ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ଭଳି ଆଧୁନିକ ସମାଜର ଗୁରୁତ୍ୱପୂର୍ଣ୍ଣ ବିଭାଗଗୁଡ଼ିକ ଯେଭଳି ମନ୍ତ୍ରୀ-ସଚିବ-ସର୍ବସ୍ୱ ସରକାରୀ କରସ୍ପର୍ଶରେ ନିଶ୍ଚିତ ମୃତ୍ୟୁ ଅପେକ୍ଷାରେ ଅଛନ୍ତି, ଶ୍ରୀମନ୍ଦିର ପ୍ରଶାସନ କଥା ମଧ୍ୟ ଠିକ୍ ସେୟା। ଯେତେ ଶୀଘ୍ର ସରକାର ଅପସରିଯିବେ ସେତେ ମଙ୍ଗଳ। ଉତ୍କଳମଣିଙ୍କ ପଂକ୍ତି "ଉତ୍କଳେ ନେତାର ନାହିଁ ପ୍ରୟୋଜନ, ଉତ୍କଳର ନେତା ସ୍ୱୟଂ ନାରାୟଣ" ଆଜି ବି ପ୍ରାସଙ୍ଗିକ ମନେହୁଏ। ଇତିହାସର ନିର୍ଦ୍ଦେଶ ମଧ୍ୟ ତାହା। ଦିନେ ଯେତେବେଳେ ବ୍ରିଟିଶ ସରକାର ଶ୍ରୀମନ୍ଦିର ପ୍ରଶାସନ ନିଜ ହାତକୁ ନେବାର

ଅପଚେଷ୍ଟା କରିଥିଲା ସେତେବେଳେ ଗଜପତିଙ୍କ ତରଫରୁ କେସ୍ ଲଢ଼ି ମଧୁବାବୁ ଶ୍ରୀମନ୍ଦିରର ପ୍ରଶାସନ ଗଜପତିଙ୍କ ହାତକୁ ଫେରାଇ ଆଣିଥିଲେ। ଆଜି ମଧ୍ୟ ସେହି ନୀତି ଶ୍ରେୟସ୍କର। ଇତିହାସର ଇଙ୍ଗିତକୁ ସରକାର ବୁଝିବା ଦରକାର। ରାଜନୈତିକ ପ୍ରତିନିଧିତ୍ୱ କ'ଣ ଆଧ୍ୟାତ୍ମିକ ପ୍ରତିନିଧିତ୍ୱ ଦେଇପାରେ ! ଶ୍ରୀମନ୍ଦିରର ପରିଚାଳନା ଓ ଶ୍ରୀଠାକୁରମାନଙ୍କ ସେବାପୂଜା ରୀତିନୀତି ଜଗତ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ ମାର୍ଗଦର୍ଶନ ଓ ଗଜପତି ମହାରାଜାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପରିଚାଳିତ ହେବାହିଁ ବୋଧହୁଏ ପ୍ରକୃଷ୍ଟ ପନ୍ଥା ଓ ସମୟର ନିର୍ଦ୍ଦେଶ।

ପରିଶେଷରେ, ବଡ଼ ଠାକୁର ତାଙ୍କ ବଡ଼ ପଣରେ ଆମଭଳି ଅର୍ବାଚୀନମାନଙ୍କର ଅକ୍ଷମଣୀୟ ଅପରାଧ ମାର୍ଜନା କରି ଓଡ଼ିଆ ଜାତିକୁ ସଦ୍‌ବୁଦ୍ଧି ଦିଅନ୍ତୁ ଓ ସତ୍‌ମାର୍ଗରେ ଚାଲିବାର ଶକ୍ତି ପ୍ରଦାନ କରନ୍ତୁ; ଏତିକି ପ୍ରାର୍ଥନା। ଅନ୍ତତଃପକ୍ଷେ ଜଗତର ନାଥଙ୍କ ତ୍ରୁଟିଶୂନ୍ୟ ସେବାପୂଜାର ଆମେ ଯୋଗ୍ୟ ହେଉ; ତାଙ୍କ ଶ୍ରୀଚରଣରେ ଆମର ସାମାନ୍ୟ ଜୀବନ ସମର୍ପିତ ରହୁ।

□□□

# ଦୁନିଆ ଆମ ଓଲଟ - ପାଲଟ !

ସମୟର ପ୍ରବାହ ଅପ୍ରତିହତ। ସେହି ପ୍ରବାହ ସହ ଯୋଡ଼ି ହୋଇ ଗଢ଼ିଉଠେ ସଭ୍ୟତା। ମଣିଷର ତତ୍କାଳୀନ ଆଚାର, ବ୍ୟବହାର ଓ ବିଚାରକୁ ନେଇ ସଭ୍ୟତା ଲାଭ କରେ ରୂପ, ରସ ଓ ଗନ୍ଧ। ସମୟ ଗଡ଼ିବା ସହ ସେଗୁଡ଼ିକ ହୋଇଯାଏ ଭବିଷ୍ୟତ ପାଇଁ ପରମ୍ପରା, କିନ୍ତୁ ଇତିହାସ ଏ କଥାର ମୂକସାକ୍ଷୀ ଯେ, ଏହି ପରିବର୍ତ୍ତନଶୀଳ ପରମ୍ପରା ସବୁବେଳେ ଗତି କରି ନ ଥାଏ ମନ୍ଦରୁ ଭଲ ଆଡ଼କୁ, କଦର୍ଯ୍ୟରୁ ସୌନ୍ଦର୍ଯ୍ୟ ଆଡ଼କୁ ବା ଅନ୍ଧାରରୁ ଆଲୋକ ଆଡ଼କୁ। ଭଲ-ମନ୍ଦ, ସୁନ୍ଦର-ଅସୁନ୍ଦର ଓ ଆଲୋକ-ଅନ୍ଧାରର ଏହି ଜାଗତିକ ମହାକ୍ରୀଡ଼ାରେ ଆମ ବର୍ତ୍ତମାନର ଦୁନିଆ ଯେପରି ମନ୍ଦ, ଅସୁନ୍ଦର ଓ ଅନ୍ଧକାରର ଗଭୀର ଗହ୍ୱର ମଧ୍ୟକୁ ନିକ୍ଷେପିତ ହେଲାଭଳି ପ୍ରତୀୟମାନ ହେଉଛି। ମନସ୍ତାତ୍ତ୍ୱିକ ଶଠତାପୂର୍ଣ୍ଣ ପ୍ରସ୍ରବଣର ଫୁତ୍କାରରେ ସବୁ ବିଶ୍ୱାସ, ପ୍ରତ୍ୟୟ ଓ ଆସ୍ଥାର ଆଧାରଶିଳା ଯେପରି ଓଲଟ-ପାଲଟ ହୋଇଯାଉଛି। ଏଇ ବେଳାରେ ମାନବୀୟ ଓ ସାଂସ୍କୃତିକ ସତ୍ତା ହରାଇବାର ଭୟ ଓ ଦୁଃଖର ଅଭିବ୍ୟକ୍ତିକୁ ନେଇ ସୁଖ-ଦୁଃଖର କଥା ପଦେ।

ସାମ୍ପ୍ରତିକ ଦୁନିଆରେ ଜନଜୀବନର ମୁଖ୍ୟ ଅଙ୍ଗ ପାଲଟିଛି ରାଜନୀତି। ବ୍ୟକ୍ତିଗତ ଓ ସାମାଜିକ ଜୀବନ ରାଜନୀତିର ଚାରିତ୍ରିକ ପ୍ରକ୍ଷେପଣ ଦ୍ୱାରା ବହୁଳ ଭାବରେ ପ୍ରଭାବିତ ହେଉଛି, କିନ୍ତୁ କ୍ଷୋଭର ବିଷୟ ଯେ, ଦେଶରେ "ସର୍ବଜନ ହିତାୟ" ପ୍ରଣୋଦିତ ଗଣତାନ୍ତ୍ରିକ ଶାସନ ପଦ୍ଧତି ପ୍ରଚଳିତ ହେବା ସତ୍ତ୍ୱେ ବି ଗୋଟିଏ ପରେ ଗୋଟିଏ ଦଶନ୍ଧି ବିତିବା ସହ ଗଣତନ୍ତ୍ର ଧନତନ୍ତ୍ର, ବାହୁବଳ-ତନ୍ତ୍ରରେ ପରିଣତ ହେବା ଦିଗରେ ଗୋଟିଏ ପରେ ଗୋଟିଏ ପାହାଚ ଦ୍ରୁତଗତିରେ ଅତିକ୍ରମ କରି ଚାଲିଛି। ରାଜନୀତି ପାଲଟି ଯାଇଛି ପ୍ରତାରଣା ଓ ପ୍ରବଞ୍ଚନାର ମହାଶକ୍ତିଶାଳୀ ଶୋଭାଯାତ୍ରା। ସରକାରଗୁଡ଼ିକ ଜନକଲ୍ୟାଣ ନାଁରେ ଲୋକମାନଙ୍କୁ ଗୋଟିଏ ମାଗଣା ଜୀବନ ମନ୍ତ୍ରରେ ବଶୀଭୂତ କରି ସେମାନଙ୍କୁ ଚିରଦିନ ପାଇଁ ଅଯୋଗ୍ୟ ଓ ଅକ୍ଷମ ରଖିବାର

---

★ ଦୈନିକ "ସମ୍ବାଦ"; ୦୯ ଡିସେମ୍ବର ୨୦୧୫

ପ୍ରତିଯୋଗିତାମୂଳକ ଚକ୍ରାନ୍ତରେ ଲିପ୍ତ ଅଛନ୍ତି। ନିର୍ବାଚନ ସର୍ବସ୍ୱ ରାଜନୀତିର ଏହା ଏକ ବିରାଟ ଓ ସର୍ବୋଚ୍ଚ ଆବଶ୍ୟକତା ହୋଇପଡ଼ିଛି। କାରଣ କେବଳ ଅଯୋଗ୍ୟ, ଅକ୍ଷମ ଓ ଦରିଦ୍ର ଲୋକମାନଙ୍କୁ ହିଁ ହାତୀ-ଦେବି, ଘୋଡ଼ା-ଦେବି ଭଳି ମିଥ୍ୟା ପ୍ରତିଶ୍ରୁତିରେ ଭୁତେଇ ହେବ। ମଦ, ମାଂସ, ଟଙ୍କାରେ ଭଣ୍ଡେଇ ନିର୍ବାଚନୀ ବିଜୟ ହାସଲ କରି ହେବ। ଏଣେ, ଏବେ ଦଳ କହିଲେ ଦଳର ମୁଖ୍ୟଙ୍କୁ ହିଁ ବୁଝାଯାଏ; ଦଳ ମୁଖ୍ୟଙ୍କର ସ୍ତୁତିଗାନରେ ହିଁ ଦଳର ଅନ୍ୟ ସଦସ୍ୟମାନଙ୍କର ଅସ୍ତିତ୍ୱ ନିହିତ ଥାଏ। ଏପରି ଏକ ଅପଭ୍ରଷ୍ଟ ଗଣତାନ୍ତ୍ରିକ ପରମ୍ପରାର କନିଷ୍ଠ ସଂସ୍କରଣ ହେଉଛି ଛାତ୍ର-ରାଜନୀତି, ଛାତ୍ରମାନଙ୍କ ଗଣତାନ୍ତ୍ରିକ ଅଧିକାର ନାଁରେ। ତେଣୁ ଦେଖାଯାଉଛି ସାଧାରଣ ଜନତାର ନେତା ଯେପରି ସାଧାରଣ ଲୋକର ସ୍ୱାର୍ଥ ଓ ସ୍ୱପ୍ନର ଅଂଶୀଦାର ନୁହନ୍ତି, ସେଥିପ୍ରତି ଅଙ୍ଗୀକାରବଦ୍ଧ ନୁହଁନ୍ତି ଠିକ୍ ସେହିପରି ଛାତ୍ରନେତାମାନେ ମଧ୍ୟ ଅଧିକାଂଶ କ୍ଷେତ୍ରରେ ସାଧାରଣ ଛାତ୍ରର ସ୍ୱାର୍ଥ ଓ ସ୍ୱପ୍ନର ଅଂଶୀଦାର ନୁହଁନ୍ତି ଓ ସେଥିପ୍ରତି ଅଙ୍ଗୀକାରବଦ୍ଧ ନୁହଁନ୍ତି। ତା'ହୋଇ ନ ଥିଲେ ଛାତ୍ର ସଂସଦ ନିର୍ବାଚନକୁ ନେଇ ଶିକ୍ଷାନୁଷ୍ଠାନଗୁଡ଼ିକର ଶୈକ୍ଷିକ ପରିବେଶ ନଷ୍ଟ ହେଉ ନ ଥାଆନ୍ତା। ନୂତନ ଜ୍ଞାନ ଓ କୌଶଳର ଉନ୍ମେଷରେ ଦ୍ରୁତଗତିରେ ଆଗେଇ ଚାଲିଥିବା ଦୁନିଆ ଆଗରେ ଏକ ଅଯୋଗ୍ୟ ଓ ଅପାରଗ ଯୁବଗୋଷ୍ଠୀ ନେଇ ଆମେ ଯେଉଁ ସୁନେଲି ଭବିଷ୍ୟତର ସ୍ୱପ୍ନ ଦେଖୁଛୁ ତାହା ନିର୍ବୋଧର ସ୍ୱର୍ଗ-ରାଜ୍ୟ ନିର୍ମାଣର ବାହାସ୍ଫୋଟ ସଦୃଶ। ଅନ୍ତତଃପକ୍ଷେ ଆମ ଦେଶର ଆଇ.ଆଇ.ଟି., କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ଭଳି ଉତ୍କୃଷ୍ଟ ଅନୁଷ୍ଠାନଗୁଡ଼ିକରେ ଅନୁସୃତ ନୀତି ଆମ ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟଗୁଡ଼ିକରେ ଅନୁସୃତ ନ ହେବା ଏକ ବିଡ଼ମ୍ବନା। କିନ୍ତୁ ଯାହା ଦେଖାଯାଉଛି ନୀତିହୀନ ନିର୍ବାଚନ-ସର୍ବସ୍ୱ ରାଜନୀତିରେ "ଯୋ ଜିତା ଓହି ସିକନ୍ଦର" ନ୍ୟାୟରେ ନେତାମାନଙ୍କର ଜୟଯାତ୍ରାର ପଟୁଆରର ପଦପାତରେ ଗଣତନ୍ତ୍ରର କଅଁଳ ପ୍ରତିଶ୍ରୁତିଭରା ସବୁଜିମା ସମ୍ପୂର୍ଣ୍ଣ ଧ୍ୱସ୍ତବିଧ୍ୱସ୍ତ। ଜନକଲ୍ୟାଣର ପରିଭାଷା ସମାଜ-ମାରଣ ଭଳି ବିପରୀତ ଅର୍ଥରେ ହିଁ ରୂପ ପାଉଛି।

ଗୋଟିଏ ଗଣତାନ୍ତ୍ରିକ ସମାଜମଙ୍ଗଳ ରାଷ୍ଟ୍ରରେ ଗଙ୍ଗୋତ୍ରୀ ସଦୃଶ ରାଜନୀତିର କଳୁଷିତ ଅବସ୍ଥା ଗଙ୍ଗା ତୁଲ୍ୟ ସମସ୍ତ ସରକାରୀ କାର୍ଯ୍ୟକ୍ରମ ଓ 'ନୀତି'ଗୁଡ଼ିକୁ କଳୁଷିତ କରିବା ହିଁ ଅବଧାରିତ। ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ପ୍ରଶାସନ ଓ ନ୍ୟାୟପ୍ରଦାନ ଭଳି ସମସ୍ତ ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରରେ ଶଠତାର ଦୃଢ଼ ଭିତ୍ତିଭୂମି ଉପରେ ଦଣ୍ଡାୟମାନ ହୋଇଛି ଦୁର୍ନୀତିର ଅଲଂଘ୍ୟ ହିମାଳୟ। ସେ ଇନ୍ଦିରା-ଆବାସ ହେଉ ବା ଶୌଚାଳୟ ନିର୍ମାଣ ହେଉ ବା ବନୀକରଣ; ପ୍ରତିଟି ତୃଣମୂଳସ୍ତରୀୟ ସର୍ବନିମ୍ନ ଜନକଲ୍ୟାଣ ଉଦ୍ୟମରେ ହାସ୍ୟାସ୍ପଦ

ଭାବରେ ଆମେ ବିରାଟ ବିରାଟ ବିଫଳତା ହିଁ ସାଉଁଟି ଚାଲିଛୁ। ଏହାର କାରଣ ଆମର ଅଦମ୍ୟ ଦୁର୍ନୀତିପ୍ରବଣତା। ଯେଉଁ ଶିକ୍ଷା ବ୍ୟବସ୍ଥାର ଔଜ୍ଜ୍ୱଲ୍ୟକୁ ପାଥେୟ କରି ପଶ୍ଚିମ ଜଗତ ଉନ୍ନତ ଓ ଶକ୍ତିଶାଳୀ ଆମେ ସେହି ସାଧାରଣ ଶିକ୍ଷା ବ୍ୟବସ୍ଥାର ଉପଲବ୍ଧ ଯତ୍‌ସାମାନ୍ୟ ଉତ୍କର୍ଷକୁ ହରେଇ ଚାଲିଛୁ। ନିକଟ ଅତୀତର ହୃଷ୍ଟପୁଷ୍ଟ ଶିକ୍ଷାନୁଷ୍ଠାନ ସବୁ କର୍ପୂର ବିନା କନା ସଦୃଶ ଭୂଲୁଣ୍ଠିତ ହୋଇପଡ଼ିଛନ୍ତି। ଶିକ୍ଷାନୁଷ୍ଠାନଗୁଡ଼ିକ ଭୟଶୂନ୍ୟତା, ଫେଲ୍-ଶୂନ୍ୟତା ଓ ଶିକ୍ଷକ-ଶୂନ୍ୟତାକୁ ନେଇ ସତେ ଯେପରି ଉଦ୍ଭବମୁଖର। ସାର୍ବଜନୀନ ଶିକ୍ଷା ଗୁଣବତ୍ତା ହରାଇବା ସହ ବ୍ୟବସାୟୀକରଣ ମାଧ୍ୟମରେ ଗରିବ ମେଧାବୀ ଛାତ୍ରମାନଙ୍କଠାରୁ ଅପହଞ୍ଚ ଦୂରତାକୁ ଚାଲିଯାଉଛି। ବୌଦ୍ଧିକ ସାମର୍ଥ୍ୟ ନ ଥାଇ ଡିଗ୍ରୀ ହାସଲର କୁହୁକମନ୍ତ୍ର ଆମ ଶିକ୍ଷା-ବ୍ୟବସାୟୀମାନେ ଉଦ୍ଭାବନ କରିପାରିଛନ୍ତି। ବୁଦ୍ଧିବିଦ୍ୟାର ଆବଶ୍ୟକତା ସତେ ଯେପରି କମିକମି ଚାଲିଛି; ମାଟ୍ରିକ୍ ଫେଲ ବା ତତ୍ପର ପାଠ୍ୟକ୍ରମରେ ପାଞ୍ଚ ସାତ ବ୍ୟାକ୍‌ପେପର୍ ଥିବା ଛାତ୍ର ଘରୋଇ କମ୍ପାନିରେ ସୁପ୍ରତିଷ୍ଠିତ ହୋଇପାରୁଥିବାବେଳେ ସେତକ ଅଧ୍ୟୟନ ଓ ଗବେଷଣା ମାର୍ଗରେ ଜଣେ ମେଧାବୀ ଛାତ୍ର ପକ୍ଷରେ ସମ୍ଭବ ହୋଇପାରୁ ନାହିଁ। ଦେଶରେ ଉପଯୁକ୍ତ ଶୈକ୍ଷିକ ପରିବେଶ ଓ ନିଯୁକ୍ତି ସୁଯୋଗର ଅଭାବ ହିଁ ମେଧା ବହିଷ୍କରଣକୁ (Brain Drain) ସୃଷ୍ଟି କରୁଛି।

କୃଷି କଥା ମଧ୍ୟ ଅଲଗା ନୁହେଁ। ସରକାର ଆସୁଛନ୍ତି, ଯାଉଛନ୍ତି; କୃଷିନୀତିର ଡିଣ୍ଡିମ ବାଜୁଛି, କିନ୍ତୁ ଫଳ ଏୟା ଯେ ଫସଲହାନିର ଦୁଃଖ ଓ ଋଣ ବୋଝରୁ ନିସ୍ତାର ପାଇବା ଲାଗି ଲଗାତାର ଭାବେ କୃଷକ ଆତ୍ମହତ୍ୟା କରି ଚାଲିଛନ୍ତି। ଏହା ସହିତ କେତେବେଳେ ପିଆଜ, କେତେବେଳେ ଡାଲି, କେତେବେଳେ ଆଳୁ ଇତ୍ୟାଦିର ଦର ଆକାଶଛୁଆଁ ହୋଇ ଖାଉଟିଙ୍କୁ ନାକେଦମ୍ କରୁଛି। ଗୋଟେପଟେ ଗାଁ-ଗଣ୍ଡାର ଯୁବଗୋଷ୍ଠୀ କୃଷି ପ୍ରତି ଆକର୍ଷିତ ହେଉନାହାନ୍ତି, ଅନ୍ୟପଟେ ସହରୀକରଣ ମାଧ୍ୟମରେ କୃଷି ଉପଯୋଗୀ ଜମି ଦ୍ରୁତଗତିରେ ହ୍ରାସ ପାଉଛି। ଏହି କାରଣରୁ ଭବିଷ୍ୟତରେ ଖାଦ୍ୟ ସଙ୍କଟର ସମ୍ଭାବନା ସୃଷ୍ଟି ଦ୍ରୁତତର ହେବାରେ ଲାଗିଛି। ଡାଲି, ପିଆଜ ଆଦିର ଆକାଶଛୁଆଁ ଦର ହୁଏତ ଏହାର କେବଳ ଗୋଟିଏ ଗୋଟିଏ ପୂର୍ବ-ସୂଚନା।

ସ୍ୱାସ୍ଥ୍ୟ କ୍ଷେତ୍ରରେ ଅବସ୍ଥା ମଧ୍ୟ ତଦ୍ରୂପ। ଗୋଟିଏ ପଟେ ମ୍ୟାଲେରିଆ, ଡେଙ୍ଗୁ ଭଳି ରୋଗଗୁଡ଼ିକର ପ୍ରାଦୁର୍ଭାବ ବଢ଼ିବା ସହିତ ଉଚ୍ଚରକ୍ତଚାପ, କାନସର ଓ ବହୁମୂତ୍ର ରୋଗୀମାନଙ୍କ ସଂଖ୍ୟାରେ ଭାରତର ସ୍ଥାନ ପୃଥିବୀର ଆଗ ଧାଡ଼ିର ଦେଶ ଭିତରେ ରହିଥିବା ବେଳେ ଅନ୍ୟପଟେ ସରକାରୀ ସ୍ୱାସ୍ଥ୍ୟସେବା ଓ ଭେଷଜବିଜ୍ଞାନ

ଶିକ୍ଷାନୁଷ୍ଠାନଗୁଡ଼ିକର ସଂଖ୍ୟା ବା ଗୁଣରେ ଆବଶ୍ୟକତାନୁଯାୟୀ ଆନୁପାତିକ ଅଭିବୃଦ୍ଧି ହେଉ ନାହିଁ। ସରକାର ନିଜ ଦାୟିତ୍ୱରୁ ଓହରି ଯାଇ ଘରୋଇ ସଂସ୍ଥାଗୁଡ଼ିକର ବାହୁଛାୟା ତଳେ ଆଶ୍ରୟ ନେଉଥିବାରୁ ସ୍ୱାସ୍ଥ୍ୟସେବା ଓ ଭେଷଜ ଶିକ୍ଷା ଅତ୍ୟଧିକ ଭାବରେ ବ୍ୟୟବହୁଳ ହେବା ସହ ସେବାମନୋବୃତ୍ତିରୁ ଦୂରେଇ ଚାଲିଛି। ଉତ୍ତମ ସ୍ୱାସ୍ଥ୍ୟସେବା ଓ ଭେଷଜଶିକ୍ଷା ସାଧାରଣ ବର୍ଗର ଲୋକମାନଙ୍କ ପାଇଁ ଦୁଷ୍ପ୍ରାପ୍ୟ ହୋଇଯାଉଛି। ସେହିଭଳି "ଗରିବୀ ହଟାଓ"ର ଲକ୍ଷ୍ୟ ନେଇ ଯେତେଯେତେ ଅର୍ଥନୈତିକ କୌଶଳ ଓ ଔଦ୍ୟୋଗିକ ପଦକ୍ଷେପମାନ ପ୍ରୟୋଗ କରାଯାଉଛି ସବୁକିଛିର ସାରାଂଶ ହେଉଛି ଯେ ଧନୀ ଓ ଗରିବଙ୍କ ମଧ୍ୟରେ ବୈଷମ୍ୟ ବୃଦ୍ଧି। ଦେଶର ଏକ ଶତାଂଶ ଲୋକ ତେପନ ଶତାଂଶ ସମ୍ପଦର ଓ ଦଶ ଶତାଂଶ ଲୋକ ଛଅସ୍ତରୀ ଶତାଂଶ ସମ୍ପଦର ମାଲିକ। ଏହି ବୈଷମ୍ୟରେ ବିବ୍ରତ ହୋଇ ଏ ବର୍ଷର ଅର୍ଥନୀତି ନୋବେଲ ପୁରସ୍କାର ବିଜେତା ଆଙ୍ଗସ୍ ଡିଟନ୍ ଚେତାବନୀ ଦେଇଛନ୍ତି ଯେ, "ଯଦି ଧନୀ ଲୋକମାନେ ସେମାନଙ୍କର ସମ୍ପଦକୁ ଦାରିଦ୍ର୍ୟରେ ବନ୍ଦୀ ହୋଇ ରହିଥିବା ଲୋକମାନଙ୍କର ଉନ୍ନତିର ମାର୍ଗକୁ ବନ୍ଦ କରିବା ପାଇଁ ବ୍ୟବହାର କରିବେ ତାହାହେଲେ ଏକ ଭୟଙ୍କର ବିପଦର ସୂତ୍ରପାତ ହେବ।"

ଦୁଃଖର କଥା ହେଲା, ସମସ୍ତ ସରକାରୀ କାର୍ଯ୍ୟକ୍ରମଗୁଡ଼ିକ ଶୋଚନୀୟ ଭାବେ ବିଫଳ। ଏହା ମୂଳରେ ରହିଛି ରାଜନୈତିକ ଇଚ୍ଛାଶକ୍ତିର ଅଭାବ ଓ ତତ୍‌ପ୍ରେରିତ ପ୍ରଶାସନିକ ସ୍ଥାଣୁତା। ସାମନ୍ତବାଦୀ ମନୋବୃତ୍ତି ପରିପୁଷ୍ଟ ଆମ ପ୍ରଶାସନିକ ବ୍ୟବସ୍ଥାରେ କର୍ମଚାରୀ ଆପଣା ଦାୟିତ୍ୱକୁ କ୍ଷମତା ଭାବରେ ବ୍ୟବହାର କରୁକରୁ ଅବଲୀଳାକ୍ରମେ ଦୁର୍ନୀତିଗ୍ରସ୍ତ ହୋଇପଡ଼ନ୍ତି। ଏହି ଦୁର୍ନୀତି-ମନସ୍କ ପ୍ରଶାସନ ସମସ୍ତ ଜନକଲ୍ୟାଣ କାର୍ଯ୍ୟକ୍ରମକୁ ବିପଥଗାମୀ କରିବା ସହ ଦେଶର ପ୍ରଗତିରେ ପ୍ରଧାନ ଅନ୍ତରାୟ ଭାବରେ ଉଭା ହୋଇଛି। ଦୁର୍ନୀତିଗ୍ରସ୍ତ ପ୍ରଶାସନିକ କର୍ମଚାରୀମାନେ ମଧ୍ୟ ଜନବିରୋଧୀ କାର୍ଯ୍ୟକ୍ରମରେ ମୁଖ୍ୟ ସହଯୋଗୀ ସାଜିଛନ୍ତି। ଦୁର୍ନୀତିଗ୍ରସ୍ତ ପ୍ରଶାସନିକ ଅଧିକାରୀ, ନେତା ଓ ବ୍ୟବସାୟୀମାନଙ୍କ ମଧୁଚନ୍ଦ୍ରିକା ହେତୁ ଜନଜୀବନ ବିପର୍ଯ୍ୟସ୍ତ ହେଉଥିବାରୁ ସେଥିରୁ ମୁକ୍ତି ପାଇଁ ଲୋକମାନେ ବହୁ ସଂଖ୍ୟାରେ ବିଚାର ବିଭାଗର ଦ୍ୱାରସ୍ଥ ମଧ୍ୟ ହେଉଛନ୍ତି। ପରିସ୍ଥିତିର ଭୟାବହତା ପୂର୍ବତନ ମୁଖ୍ୟ ବିଚାରପତି ଆର୍.ଏମ୍.ଲୋଧାଙ୍କ ବକ୍ତବ୍ୟରୁ ସ୍ପଷ୍ଟ। ତାଙ୍କ ବକ୍ତବ୍ୟର ମର୍ମାର୍ଥ ହେଲା, "ପୃଥିବୀର ବହୁତ କମ୍ ଦେଶ ଭିତରୁ ଭାରତ ଗୋଟିଏ, ଯେଉଁଠି ଅଦାଲତ ଆଗରେ ସରକାର ହେଉଛନ୍ତି ସଂଖ୍ୟା

ଦୃଷ୍ଟିରୁ ସବୁଠାରୁ ଅଧିକ ବିବାଦୀୟ ପକ୍ଷ। ସବୁ ପ୍ରକାର (ମାନବ) ଅଧିକାର ତଥା ନିୟମ ଉଲ୍ଲଂଘନ କାର୍ଯ୍ୟରେ ସରକାର ଜଡ଼ିତ।”

ମାନ୍ୟବର ମୁଖ୍ୟ ବିଚାରପତିମାନଙ୍କ ଉଦ୍‌ବେଗ ସତ୍ତ୍ୱେ ବିଚାର ବିଭାଗ ଯେ ଦୁର୍ନୀତିମୁକ୍ତ ନୁହେଁ ତାହା ମଧ୍ୟ ବହୁବାର ବିଭିନ୍ନ ମାଧ୍ୟମରେ ଆଲୋଚିତ ହୋଇ ଆସିଛି। ଏହାଛଡ଼ା ବିଳମ୍ବିତ ନ୍ୟାୟ ପ୍ରକ୍ରିୟା ମଧ୍ୟ ବିଚାର ବିଭାଗକୁ ଜନସାଧାରଣଙ୍କର ଆସ୍ଥାଭାଜନ ହେବାରେ ଅନ୍ତରାୟ ସୃଷ୍ଟି କରୁଛି। ଏକ ସର୍ବେକ୍ଷଣ ଅନୁସାରେ ବର୍ତ୍ତମାନ ଦେଶର କୋର୍ଟକଚେରୀରେ ୩ କୋଟିରୁ ଊର୍ଦ୍ଧ୍ୱ କେସ୍ ପଡ଼ିରହିଛି। ତା'ମଧ୍ୟରୁ ପ୍ରାୟ ୨୧ ଲକ୍ଷ କେସ୍ ୧୦ ବର୍ଷରୁ ବେଶୀ ସମୟ ଧରି ବିଚାର ଅପେକ୍ଷାରେ ରହିଛି। ଏଥିରୁ ସ୍ଥିତିର ଗମ୍ଭୀରତା ସମ୍ପର୍କରେ ଅନୁମାନ କରାଯାଇପାରେ।

ଜନଜୀବନକୁ ଆଚ୍ଛାଦିତ କରି ରଖିଥିବା ବିଚାରଶୂନ୍ୟ ଧୂମାୟିତ ବାୟୁମଣ୍ଡଳ ଆକ୍ରାନ୍ତ କରୁଛି ବ୍ୟକ୍ତି ଓ ସମାଜର ମୂଲ୍ୟବୋଧକୁ, ମୂଲ୍ୟବୋଧର ଅବକ୍ଷୟ ପ୍ରକଟିତ ହେଉଛି ଅସହିଷ୍ଣୁତା, ହିଂସା, ଶୋଷଣ ଓ ଧର୍ଷଣ ଇତ୍ୟାଦି ରୂପରେ, ଯାହା ସାମାଜିକ ଓ ମାନବୀୟ ମୂଲ୍ୟବୋଧର ଶାଶ୍ୱତ ପିଣ୍ଡଟିକୁ କ୍ଷତାକ୍ତ କରୁଛି। ଏକ ଶୃଙ୍ଖଳାମୁକ୍ତ ସଂସ୍କାରମୁକ୍ତ ଅବାଧ ଜୀବନ ଆଡ଼କୁ ଯେପରି ମଣିଷ ଆକର୍ଷିତ ହୋଇଚାଲିଛି। ଜୀବନର ପ୍ରତିଟି କ୍ଷେତ୍ରରେ ଲାସେଫେୟାର୍ (Laisse-faire) ଆକର୍ଷଣର କେନ୍ଦ୍ରବିନ୍ଦୁ ପାଲଟିଛି, କିନ୍ତୁ ସମାଜ ତ ଶୃଙ୍ଖଳା ଓ ସଂସ୍କାର ଆଦିକୁ ନେଇ ଏକ ଅଲିଖିତ ଚୁକ୍ତି। ସୀମାହୀନ ବ୍ୟକ୍ତିକୈନ୍ଦ୍ରିକ ଲାସେଫେୟାର ଓ ସମାଜର ସହାବସ୍ଥାନ ଏକ ଅବାସ୍ତବ ପରିକଳ୍ପନା; ଗୋଟିକର ଉନ୍ମୂଳନରେ ଅନ୍ୟଟିର ଉନ୍ମୀଳନ। ତେଣୁ ମୂଲ୍ୟବୋଧସ୍ତରୀୟ ଉଦ୍‌ବେଳନକୁ ପ୍ରଶମିତ କରି ବ୍ୟକ୍ତିଗତ ତଥା ଜାତୀୟ ଜୀବନରେ ଭାରସାମ୍ୟର ପୁନଃପ୍ରତିଷ୍ଠା ବୋଧହୁଏ ଆମ ସମୟର କଠିନତମ ଆହ୍ୱାନ। ଏହି ଆହ୍ୱାନର ଉତ୍ତର ହିଁ ନିର୍ଣ୍ଣୟ କରିବ ଆମ ଜୀବନର ଓ ଆମ ସଭ୍ୟତାର ଭବିଷ୍ୟତ।



# ଟଙ୍କେ, ଦି'ଟଙ୍କା ଓ ତିନି ଟଙ୍କାର ସ୍ୱାଭିମାନ

ବର୍ତ୍ତମାନ ନିର୍ବାଚନ ବେଳା ରାଜନୈତିକ ଦଳମାନଙ୍କର ଖେଳର ବେଳ। ଲୋକଙ୍କୁ ଭୁଡେଇବାର ବେଳ। ଅର୍ଥବଳ, ବାହୁବଳ, ସରକାରୀ ବଳ, ଛଳବଳ ଇତ୍ୟାଦି ଲଗେଇ କଳେବଳେ କୌଶଳେ ନିର୍ବାଚନ ବୈତରଣୀ ପାରି ହେବାର ବେଳ। ତା'ପରେ ଲୋକେ ସମସ୍ୟାର ବୈତରଣୀର ଗୋଟେ ପଟେ ତ ତାଙ୍କ 'ପ୍ରତିନିଧି'ମାନେ ଆରପଟେ। ଦୂରରେ ଥାଇ ପାଟି ଆଁ କରି, ଆଖି ମେଲା କରି 'ମାରି ନେଲେ ମାହାପାତ୍ରେ' ରିୟଲିଟି ସୋ ଦେଖି ଚାଲିବେ ଲୋକେ ଆଉ ୫ ବର୍ଷ ଧରି। ସେଇ 'ମାରିନେବାର' ସୁବିଧା ଟିକକ ପାଇଁ ୧୦-୧୫ ଦିନ ଦହଗଞ୍ଜ ଟିକେ ନ ସହିଲେ ହବ କେମିତି ? ସେଥିପାଇଁ ଖରାଦିନର ଟାଣଖରାରେ ବୁଲି ବୁଲି କିଏ କହୁଛି ଟଙ୍କାକେରେ ତ, କିଏ ଦି'ଟଙ୍କାରେ ଓ କିଏ ୩ ଟଙ୍କାରେ ଚାଉଳ ଦବ। ଓଡ଼ିଶାରେ ଇଏ ଏକ ବିରାଟ ନିର୍ବାଚନ ପ୍ରତିଶ୍ରୁତି।

ଚାଉଳ ଏତେ ଶସ୍ତାରେ କାହିଁକି ? ନେତାଙ୍କ ଉତ୍ତର 'ଲୋକଙ୍କ ଖାଦ୍ୟ ପାଇବା ଅଧିକାର ଅଛି। ଗରିବ ଲୋକେ ସେଥିରୁ ବଞ୍ଚିତ। ତାଙ୍କରି ପାଇଁ ଏ ଯୋଜନା ଓଡ଼ିଶାରେ'। ତେଣୁ ବିପୁଳ ସଂଖ୍ୟାରେ ଗରିବ ଲୋକ ରହିବା ଜରୁରୀ। ନଚେତ୍ ନିର୍ବାଚନ ସ୍ଲୋଗାନ୍ କ'ଣ ହେବ ? 'ଶସ୍ତା ଚାଉଳ', 'ଗରିବୀ ହଟାଅ', 'ଋଣ ଛାଡ଼' ଭଳି 'ସ୍ୱାଭିମାନୀ' ସ୍ଲୋଗାନ୍‌ଗୁଡ଼ିକ ଅକାମୀ ହୋଇଯିବେ। ତେଣୁ କିଏ ୪୦ ବର୍ଷ ଶାସନ କରୁ ଅବା କିଏ ଦଶ ବର୍ଷ; ସମସ୍ତଙ୍କ ମୂଳ ଲକ୍ଷ୍ୟ ଗରିବ ଲୋକଙ୍କୁ ଶିକ୍ଷାରୁ ବଞ୍ଚିତ କର, ଗରିବଙ୍କୁ ଗରିବ କରି ରଖ। ତା'ହେଲେ ତାଙ୍କ ଭୋଟ୍ ସହଜରେ କିଣି ହେବ; ତାଙ୍କରି ଦମ୍‌ରେ ନେତାଙ୍କ ପେଁକାଳୀ ବାଜିବ। ତାଙ୍କରି ବଳରେ ନେତାଙ୍କ ଢୋଲ ପିଟାଯିବ ! ସବୁ କିଛି ହୋଇ ଚାଲିବ ସେମାନଙ୍କ ଅଜାଣତରେ ! ଗରିବ ଲୋକେ ତା'ହେଲେ କ'ଣ ଖାଦ୍ୟରୁ ବଞ୍ଚିତ ହେବେ ? ଆଦୌ ନୁହେଁ। ଜଣେ ଲୋକ ଖାଦ୍ୟ ପାଇ ପାରିବ ଦୁଇଟି ବାଟରେ; ଖାଦ୍ୟଶସ୍ୟ ଉତ୍ପାଦନ କରିବ ନଚେତ୍ କିଣିବ।

---

★ ଦୈନିକ "ସମ୍ବାଦ"; ୨୨ ଏପ୍ରିଲ ୨୦୦୯

ପ୍ରଥମେ ପ୍ରଥମ ବାଟ କଥା। ଖାଦ୍ୟ କହିଲେ, 'ଭାତ, ଡାଲି, ତରକାରୀ ଏ ସବୁ ପାଇଁ ଚାଷୀ ଖାଦ୍ୟଶସ୍ୟ ଓ ପରିବା ଉତ୍ପାଦନ କରିବ। କିନ୍ତୁ ଚାଷ ପାଇଁ ତ' କାହାରି ଆଗ୍ରହ ନାହିଁ। ଏକାଧିକ 'କୃଷି ନୀତି' ଘୋଷଣା ଚାଲିଛି ସଚିବାଳୟରେ। ବିଲଯାଏ ଗଲାବେଳକୁ କୃଷିନୀତିର ପାଣି ଶୁଖିଗଲାଣି। ଚାଷ ପାଇଁ ପାଣି ନାହିଁ, ସାର ନାହିଁ, ବିହନ ଗଜା ହେଉନି, ଉତ୍ପାଦନ ବିକି ଋଣ ଶୁଝି ବର୍ଷକ ଚଳିବା ସମ୍ଭବ ହେଉ ନାହିଁ ଇତ୍ୟାଦି ଇତ୍ୟାଦି। ଏହି ସବୁ ନାହିଁ ନାହିଁ ଭିତରେ କିଏ ବା ଚାଷ କରିବାକୁ ସାହସ କରିବ? ଚାଷୀ ଆତ୍ମହତ୍ୟା ବଢୁଛି। କୃଷି ଉତ୍ପାଦନ କମୁଛି। ଦାରିଦ୍ର୍ୟ ବଢୁଛି। ଶସ୍ତା ଚାଉଳ ଦେଇ ଦାରିଦ୍ର୍ୟର ସ୍ଥାୟୀ ସମାଧାନ ହେବ ନାହିଁ। ବିଲବାଡ଼ିରେ କାମ କରିବା ଲୋକେ କର୍ମବିମୁଖ ହେବେ। କୃଷକ ଚାଷ ପାଇଁ ସହଯୋଗୀ କର୍ମୀ ପାଇବ ନାହିଁ। କୃଷି-ସର୍ବସ୍ୱ ଗ୍ରାମ୍ୟ ଅର୍ଥନୀତି ବିପର୍ଯ୍ୟସ୍ତ ହେବ।

ଖାଦ୍ୟ ସଂଗ୍ରହର ଦ୍ୱିତୀୟ ଉପାୟ ହେଲା କିଣି ଖାଇବା। ସେଥିପାଇଁ ଲୋକ ରୋଜଗାରକ୍ଷମ ହେବା ଦରକାର। ପକେଟ୍‌ରେ ପଇସା ଦରକାର। ସରକାର ସମସ୍ତ ସରକାରୀ ବିଭାଗଗୁଡ଼ିକରେ ନିଯୁକ୍ତି ବନ୍ଦ କରିଦେଲେ। ସରକାରୀ ଶିଳ୍ପସଂସ୍ଥା ସବୁ କ୍ଷତିରେ ଚାଲି ଚାଲି ବନ୍ଦ ହୋଇଗଲେ, ସେଠି ନିଯୁକ୍ତି ବନ୍ଦ। ସରକାରୀ ତତ୍ତ୍ୱାବଧାନରେ ଓଡ଼ିଶାର ଶିକ୍ଷା ବ୍ୟବସ୍ଥା ଏପରି ଭାବରେ ନଷ୍ଟଭ୍ରଷ୍ଟ ହୋଇଯାଇଛି ଓ ପ୍ରାଥମିକ ବିଦ୍ୟାଳୟଠାରୁ ବିଶ୍ୱବିଦ୍ୟାଳୟ ଯାଏ ସମସ୍ତ ଶିକ୍ଷାନୁଷ୍ଠାନ ଏପରି ଭାବରେ ରୋଗଗ୍ରସ୍ତ ଯେ ଗାଁ-ଗହଳର ପିଲାମାନେ ପ୍ରତିଯୋଗିତାରେ ଉତ୍ତୀର୍ଣ୍ଣ ହୋଇ ଚାକିରି ପାଇବା ଦୁରୂହ ବ୍ୟାପାର। ଯେଉଁ ଶିକ୍ଷା ରୋଜଗାରର ମୂଳ ଆଧାର ଥିଲା, ତାହା ବର୍ତ୍ତମାନ ସାଧାରଣ ଓଡ଼ିଆଙ୍କ ହାତ ପାଆନ୍ତାରେ ନାହିଁ। ଓଡ଼ିଆ ପିଲେ ରୋଜଗାର କରିବେ କିପରି? ଆଉ ଯଦିବା କେହି ରୋଜଗାର କରେ ସେ ମାସକୁ ୨-୩ ହଜାରରୁ ଯେପରି ଅଧିକ ନ ହୁଏ ତାହାର ମଧ୍ୟ ସୁବନ୍ଦୋବସ୍ତ କରିଚାଲିଛନ୍ତି ସରକାର।

ଶିକ୍ଷାଦୀକ୍ଷା ବିବର୍ଜିତ ଦାରିଦ୍ର୍ୟର ପରିବେଶରେ ହିଁ 'ଶସ୍ତାରେ ଚାଉଳ' ଧ୍ୱନିର ପ୍ରତିଧ୍ୱନି ଶୁଭିବ ଓଡ଼ିଶାର କୋଣେ ଅନୁକୋଣେ। ଗାଁ-ଗଣ୍ଡାର ଓଡ଼ିଆ ଭିକାରୀ ସାଜି ରହିଥିବେ; ଚାହିଁ ରହିଥିବେ କାହାରି ନା କାହାରି ହାତଟେକା ଦାନକୁ।

ଏସବୁ ସ୍ଲୋଗାନ୍ ଅନ୍ତରାଳରେ ନେତାମାନଙ୍କର ଆହୁରି ଏକ ଚଲାକି ଲୁଚି ରହିଛି। ଗଣମାଧ୍ୟମରେ ହୁରି ପଡ଼ିଛି ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ବା ପ୍ରଧାନମନ୍ତ୍ରୀ ଇତ୍ୟାଦି ନେତାମାନେ ଶସ୍ତା ଯୁଗର ଯୁଗାବତାର। ସତେ ଯେପରି ନେତାମାନେ ନିଜ ନିଜ ରୋଜଗାରରୁ ବା ପୈତୃକ ସମ୍ପତ୍ତିରୁ ବାଣ୍ଟି ଚାଲିଛନ୍ତି ଗରିବ ଲୋକମାନଙ୍କୁ। କିନ୍ତୁ

ପ୍ରକୃତ କଥା ହେଲା ଲୋକମାନଙ୍କ ପଇସାରେ ଲୋକମାନଙ୍କୁ ନିକୃଷ୍ଟ ଉପାୟରେ 'ସାହାଯ୍ୟ' କରାଯାଉଛି। ନେତାମାନେ କେବଳ ଦୃଶ୍ୟମାନ ମଧ୍ୟସ୍ଥି। ସବୁ ବ୍ୟବସାୟରେ ମଧ୍ୟସ୍ଥି ମାଲେମାଲ ହେଲାଭଳି ଏଠି ବି ମଧ୍ୟସ୍ଥି ନେତା ସବୁ ଶ୍ରେୟ ନେଇ ଶାସନ ଡୋରି ହାତଉଛନ୍ତି। ଗରିବ ଅଶିକ୍ଷିତ ଲୋକ ବଡ଼ ଘର ବଡ଼ ଗୁମର କଥା ବୁଝିବେ କେମିତି!

ଚେଷ୍ଟା କଲେ କିନ୍ତୁ ବୁଝିପାରିବେ। ରାମାୟଣ, ମହାଭାରତ ଭଳି ମହାନ୍ ଗ୍ରନ୍ଥକୁ ବୁଝିପାରୁଥିବା ଲୋକେ ଏ ଛୋଟ କଥାଟି ବୁଝିପାରିବେ ନାହିଁ କିପରି? ନିଜକୁ ଟିକେ ପଚାରନ୍ତୁ ତ; ଗରିବଙ୍କ ପାଇଁ ଦରଦ ଥିବା ନେତାମାନେ ସ୍ୱାଧୀନତାର ୬୦ ବର୍ଷ ଭିତରେ ଗରିବ ପିଲାମାନେ କିପରି ସୁଶିକ୍ଷା ପାଇ ରୋଜଗାରକ୍ଷମ ହେବେ, କିପରି ସବୁ ଲୋକଙ୍କୁ ସାଧାରଣ ବ୍ୟୟରେ ଉଚ୍ଚମାନର ସ୍ୱାସ୍ଥ୍ୟସେବା ମିଳିବ, ଅନ୍ୟ ପ୍ରଦେଶରେ ଦାଦନ ଶ୍ରମିକ ନ ହୋଇ କିପରି ନିଜ ଭିଟାମାଟିରେ ଲାଭଜନକ ବୃତ୍ତି କରି ସୁଖରେ ରହିବେ, କିପରି ବନ୍ୟା, ବାତ୍ୟା ଓ ମରୁଡ଼ି ପରି ପ୍ରାକୃତିକ ବିପର୍ଯ୍ୟୟଗୁଡ଼ିକର ଦୀର୍ଘସ୍ଥାୟୀ ପ୍ରତିକାର ହେବ; ସେଆଡ଼େ ମନ ଦେଲେ ନାହିଁ କାହିଁକି? ଗରିବ ଅଧିକ ଗରିବ ହେଲା। ଉତ୍ତମ ଶିକ୍ଷା ଓ ସ୍ୱାସ୍ଥ୍ୟକୁ ନେଇ ଏକ ସୁନ୍ଦର ଜୀବନ ତା'ଠାରୁ ଦୂରେଇ ଗଲା। ଅନ୍ୟପକ୍ଷରେ ଦୁର୍ନୀତି ଆଶ୍ରୟରେ ସବୁ ନେତା ଲକ୍ଷପତି, କୋଟିପତି ହେଲେ। ଆବଶ୍ୟକ ପଡ଼ିଲେ ଲୋକଲୋକଙ୍କ ମଧ୍ୟରେ ଧର୍ମ ଧର୍ମ ଭିତରେ ହିଂସା ସୃଷ୍ଟି କଲେ, କୃତ୍ରିମ 'ପ୍ରାକୃତିକ ବିପତ୍ତି' ସୃଷ୍ଟି କରି ଲୋକଙ୍କ ଅସହାୟତାର ଫାଇଦା ନେଲେ, ପୋଲିସ୍‌କୁ ନିଜ କାମରେ ଲଗାଇ ସମାଜରେ ଆଇନ୍ ଶୃଙ୍ଖଳା ନଷ୍ଟ କଲେ ଇତ୍ୟାଦି ଇତ୍ୟାଦି। ଏ ସବୁ ଖବରକୁ ନେଇ ପ୍ରତିଦିନର ଖବରକାଗଜ ହୃଷ୍ଟପୃଷ୍ଟ। ଏତକ ବୁଝିବାରେ କଷ୍ଟ କେଉଁଠି?

ଶେଷରେ କଥା ଉଠୁଛି ସ୍ୱାଭିମାନର। ଆଧୁନିକ ଓଡ଼ିଶା ରାଜନୀତି କ୍ଷେତ୍ରରେ ସ୍ୱାଭିମାନର ତୁଙ୍ଗ ପ୍ରତୀକ ହେଉଛନ୍ତି ଉତ୍କଳ ଗୌରବ ମଧୁସୂଦନ ଦାସ। ବର୍ତ୍ତମାନ ସେହି ମଧୁବାବୁଙ୍କ ଓଡ଼ିଶାରେ ପ୍ରଶାସନ ଏପରି ସ୍ତରରେ ପହଞ୍ଚିଛି ଯେ ଲାଞ୍ଚ ବିନା କୌଣସି କାର୍ଯ୍ୟ ସମ୍ଭବ ନୁହେଁ। ଲାଞ୍ଚ ଦେବା ନେବାରେ ଜଡ଼ିତ ବ୍ୟକ୍ତିମାନଙ୍କର ସ୍ୱାଭିମାନ ଆସିବ କେଉଁଠୁ? ଯେଉଁମାନେ ଲୋକଙ୍କ ବିଶ୍ୱାସର ଅପବ୍ୟବହାର କରି, ଗୋପନ ଯୋଜନା କରି ଓଡ଼ିଆଙ୍କୁ ଭିକାରୀ କରି ଟଙ୍କେ, ଦି ଟଙ୍କା, ତିନି ଟଙ୍କା ଚାଉଳର ଲୋଭ ଦେଖାଇ ଶାସନରେ ବସିବାର ଲାଳସା ରଖିବେ, ନା ସେମାନେ ନିଜେ ସ୍ୱାଭିମାନୀ ନା କାହାକୁ ସ୍ୱାଭିମାନୀ କରିବାର ଯୋଗ୍ୟତା ତାଙ୍କର ଅଛି।

ଓଡ଼ିଶାର ଜନସାଧାରଣ ନେତାମାନଙ୍କର ଅସଲ ଉଦ୍ଦେଶ୍ୟ ବୁଝି ବର୍ତ୍ତମାନର ଅନନ୍ୟୋପାୟ ପରିସ୍ଥିତିରେ ଅପେକ୍ଷାକୃତ ଭଲ ଦଳ ଓ ଭଲ ପ୍ରାର୍ଥୀଙ୍କୁ ଭୋଟ ଦେଇ ନିଜର ନାଗରିକ ଦାୟିତ୍ୱ ସମ୍ପାଦନ କରନ୍ତୁ। ନିଜ ବିବେକର କଥା ଶୁଣନ୍ତୁ। ଓଡ଼ିଆ ଜାତିର ଗୌରବମୟ ସ୍ୱାଭିମାନକୁ 'ଟଙ୍କେ, ଦି ଟଙ୍କା, ତିନି ଟଙ୍କା'ରେ ନିଲାମ କରି ରାସ୍ତାରେ ଫୋପାଡ଼ି ଦିଅନ୍ତୁ ନାହିଁ। ଜନସାଧାରଣ ଓ ଜଗନ୍ନାଥଙ୍କ ନିକଟରେ ଏତିକି ପ୍ରାର୍ଥନା।



# ନିର୍ବାଚନର କିଛି ସଙ୍କେତ

୨୦୦୯ ଲୋକସଭା ଓ ବିଧାନସଭା ନିର୍ବାଚନ ସରିଲା । ଟଙ୍କାର ସୁଅ ଛୁଟିଲା । ୧୦ ହଜାର କୋଟି ଟଙ୍କାର ଆକଳନ ହୁଏତ କମ୍ ହୋଇପାରେ । ଗାଁ-ଗଣ୍ଡାରେ ଭୋଜି ଭାତର ପର୍ବ ଚାଲିଲା ଦିନଦିନ ଧରି । ଲୋକ ଭୋଟ୍ ଦେଲେ । କେନ୍ଦ୍ର, ଓଡ଼ିଶା ଓ ଆନ୍ଧ୍ରରେ ପୁରୁଣା ଦଳର ସରକାର ରହିଲେ । ନୂଆର ମୋହର ବାଜିଲା । ଇତିହାସରେ ଲିଭି ଯାଉଯାଉ ନ' ନିର୍ବାଚନ କିନ୍ତୁ କେତୋଟି କଥା କହିଗଲା ।

ନିର୍ବାଚନ ପ୍ରକ୍ରିୟା ଆରମ୍ଭ ହୁଏ ପ୍ରାର୍ଥୀ ଚୟନରୁ । ଏଥରର ପ୍ରାର୍ଥୀ ଚୟନ ପ୍ରକ୍ରିୟା ଥିଲା ଯେତିକି ରହସ୍ୟପୂର୍ଣ୍ଣ ସେତିକି ଉଦ୍ଭଟ । ଆଜି ସଞ୍ଜବେଳେ ଥିବା ଗୋଟିଏ ଦଳର ନେତା କାଲି ସକାଳେ ଆଉ ଗୋଟିଏ ଦଳର ପ୍ରାର୍ଥୀ । କେତେବେଳେ ବ୍ୟକ୍ତି ବିଶେଷ ସୁନେଲି ଭବିଷ୍ୟତ ଆଶାରେ ଏ-ଦଳ ସେ-ଦଳ ହେଲେ ତ, ଆଉ କେତେବେଳେ ଦଳର ସୁପ୍ରିମୋମାନେ ଜଣକୁ ଫୋପାଡ଼ି ଅନ୍ୟ ଜଣକୁ କୋଳେଇଲେ । ଘଟଣା ପ୍ରବାହ ଏତେ କ୍ଷିପ୍ର ଓ ଅପ୍ରତ୍ୟାଶିତ ଥିଲା ଯେ, ଲୋକମାନଙ୍କୁ ନାଟକର ଶେଷ ଦୃଶ୍ୟ ପର୍ଯ୍ୟନ୍ତ ଉତ୍କଣ୍ଠାର ସହ ଅପେକ୍ଷା କରିବାକୁ ପଡ଼ିଲା ପ୍ରକୃତ ପରିସ୍ଥିତି ଜାଣିବା ପାଇଁ । ଏଥିରୁ ଏତିକି ସ୍ପଷ୍ଟ ହେଲା ଯେ, ବିଭିନ୍ନ ଦଳର ନେତୃସ୍ଥାନୀୟ ଲୋକମାନଙ୍କର ନା ନିଜ ନିଜ ଦଳ ପ୍ରତି ଆନୁଗତ୍ୟ ଅଛି ନା ଦଳର ସୁପ୍ରିମୋମାନଙ୍କର ଦଳ ପାଇଁ କାର୍ଯ୍ୟରତ କର୍ମୀମାନଙ୍କ ପ୍ରତି ସମ୍ମାନବୋଧ ବା କୃତଜ୍ଞତା ଅଛି । ସ୍ୱ-ଚିନ୍ତା ଚମତ୍କାର; ଏହା ହିଁ ସନ୍ଦେଶ । ଦଳ ନିଜ ନିଜ ସ୍ୱାର୍ଥ ଚରିତାର୍ଥ କରିବାର ମାଧ୍ୟମ ମାତ୍ର । ବ୍ୟକ୍ତିତ୍ୱ କିଛି ନୁହେଁ; ଆନୁଗତ୍ୟ ସବୁକିଛି ।

ଭୋଟ ପ୍ରଚାର ଆରମ୍ଭ ହେଲା । ବିଭିନ୍ନ ଦଳ ଓ ସରକାରମାନଙ୍କ ଦ୍ୱାରା ସମ୍ପାଦିତ ଜନକଲ୍ୟାଣ କାର୍ଯ୍ୟ ଓ ଭବିଷ୍ୟତ ପାଇଁ ପ୍ରତିଶ୍ରୁତିକୁ ନେଇ ଭାଷଣ ଓ ସଙ୍ଗୀତର ରାଗରାଗିଣୀରେ ଗଗନ ପବନ ମୁଖରିତ ହେଲା । ଗଣମାଧ୍ୟମଗୁଡ଼ିକ ମଧ୍ୟ ନିର୍ବାଚନକୁ ମହାସମର ବୋଲି ଉପସ୍ଥାପନ କରି ବିଜ୍ଞାପନ, ଫଳାଫଳ ଆକଳନ, ସମୀକ୍ଷା,

---

★ ଦୈନିକ "ସମ୍ବାଦ"; ୧୭ ଜୁନ୍ ୨୦୦୯

ନିରୀକ୍ଷା ତଥା ଦାବି-ପ୍ରତିଦାବି ଇତ୍ୟାଦିକୁ ନେଇ ଜନସାଧରଣଙ୍କୁ ଉତ୍ତେଜିତ କରି ରଖିଲେ। କିଛି ପ୍ରାର୍ଥୀ ମୋବାଇଲକୁ ପ୍ରଚାର ମାଧ୍ୟମ କଲେ ତ, ଆଉ କିଛି ଇଣ୍ଟରନେଟ୍‌କୁ। ଗାଁ-ଗହଳରେ ଖିଆପିଆର ଧୁମ୍ ଚାଲିଲା। ପୁଣି କେଉଁଠି ଚିଠି ମାଧ୍ୟମରେ ପ୍ରଚାର ଚାଲିଲା ତ କେଉଁଠି ଟଙ୍କା ବଣ୍ଟା ହେଲା। ଗଣ ସମ୍ପର୍କର ସମସ୍ତ ମାଧ୍ୟମ ନିୟୋଜିତ ହେଲେ। ଟଙ୍କା ସୁଅ ଭଳି ବୋହି ଚାଲିଲା। ସିଆଡ଼େ ସବୁ ସରକାର କେନ୍ଦ୍ର ହେଉ ବା ପ୍ରାଦେଶିକ ସବୁବେଳେ କହି ଆସୁଛନ୍ତି ଦେଶରେ ଶିକ୍ଷିତଙ୍କ ସଂଖ୍ୟା ବଢୁଛି, ଗରିବଙ୍କ ସଂଖ୍ୟା କମୁଛି; ଲୋକମାନେ ସେମାନଙ୍କ ଗଣତାନ୍ତ୍ରିକ ଦାୟିତ୍ୱ ବିଷୟରେ ଅଧିକ ସଚେତନ ହେଉଛନ୍ତି। ଯଦି ପ୍ରକୃତରେ ସେହି କଥା ସତ, ତେବେ ନିର୍ବାଚନ ଖର୍ଚ୍ଚ ବର୍ଷକୁ ବର୍ଷ ବଢ଼ିଚାଲିବା ଏକ ବିଡ଼ମ୍ବନା ନୁହେଁ କି ? କଥା ତ ନିହାତି ସରଳ; ଅମୁକ ଦଳର ସମୁକ ପ୍ରାର୍ଥୀ। ଲୋକେ ତ ଦଳକୁ ଜାଣିଛନ୍ତି, ପ୍ରାର୍ଥୀଙ୍କୁ ବି। ନିର୍ବାଚନ ବ୍ୟୟ ବଢ଼ିବ କାହିଁକି ? ବରଂ ଧୀରେ ଧୀରେ କମିବା କଥା। ଲୋକମାନେ ଏତେ ସଚେତନ ଯେ ନୋଟ୍ ନେଇ ଭୋଟ୍ ଦେଉନାହାନ୍ତି ଜାଣି ସୁଦ୍ଧା ଦଳ ବା ପ୍ରାର୍ଥୀମାନେ ନିର୍ଲିପ୍ତ ଭାବରେ ଟଙ୍କା ବାଣ୍ଟି ଚାଲିଛନ୍ତି। ପ୍ରକୃତ କଥା ହେଲା, ଯେଉଁମାନଙ୍କର ଦେଶ ବା ପ୍ରଦେଶ ଆଗରେ ଥିବା ସମସ୍ୟାଗୁଡ଼ିକ ତଥା ନିର୍ବାଚନ ଆଭିମୁଖ୍ୟ ବିଷୟରେ ଧାରଣା ଅଛି, ସେମାନଙ୍କ ସଂଖ୍ୟା ବହୁତ କମ୍। ପୁଣି ସେମାନଙ୍କ ମଧ୍ୟରୁ ବହୁତ କମ୍ ସଂଖ୍ୟକ ଲୋକ ଭୋଟ୍ ଦେଉଛନ୍ତି, ତେଣୁ ଭୋଟ୍‌ଦାତାମାନଙ୍କ ମଧ୍ୟରୁ ସିଂହ ଭାଗ ଗରିବ ଓ ଅଶିକ୍ଷିତ ଲୋକ। ଦେଶ ବା ପ୍ରଦେଶର ସମସ୍ୟା ବା ପ୍ରଶାସନ ବିଷୟରେ ସେମାନେ ଅବଗତ ନୁହଁନ୍ତି। ସେମାନେ କେବଳ ଶସ୍ତା ଧାନ ଚାଉଳ, ଗଣଛାଡ଼, ସଂରକ୍ଷଣ ଓ ବିନା ପରିଶ୍ରମରେ ଟଙ୍କା ପାଇବା କଥା ହିଁ ବୁଝନ୍ତି। ଏ ଦଳ ନୁହେଁ ସେ ଦଳ ବା ଏ ପ୍ରାର୍ଥୀ ନୁହେଁ ସେ ପ୍ରାର୍ଥୀଙ୍କୁ ଭୋଟ୍ ଦେଲେ ସମାଜର କି ଲାଭ ବା କ୍ଷତି ହେବ, ସେମାନେ ଜାଣିବାର ସୁଯୋଗ ନାହିଁ। ପାଣି ତୋରାଣି ପିଇ ଦିନ ପରେ ଦିନ ବଞ୍ଚୁଥିବା ଜୀବନ ଭିତରେ ପାଞ୍ଚଶହ ବା ହଜାରର ରୋଜଗାର ଗୋଟେ ବଡ଼ ରୋଜଗାର। ସେତିକି ମିଳିଲେ ମହାଆନନ୍ଦ। ସେମାନଙ୍କର ସେହି ଆନନ୍ଦ ଓ ଅଜ୍ଞତାକୁ ହିଁ ରାଜନୈତିକ ଦଳମାନେ ଅସ୍ତ୍ର ଭାବରେ ବ୍ୟବହାର କରୁଛନ୍ତି, ତେଣୁ କ୍ରମବର୍ଦ୍ଧିଷ୍ଣୁ ନିର୍ବାଚନ ଖର୍ଚ୍ଚ ଗଣତନ୍ତ୍ରକୁ ଗ୍ରାସ କରିଥିବା ରୋଗର ଦୁରାରୋଗ୍ୟ ଅବସ୍ଥାର ନିଶ୍ଚିତ ଲକ୍ଷଣ।

ଯା'ହେଉ, ପ୍ରଚାର ସରିଲା, ଭୋଟ୍ ହେଲା, ଲୋକ ଭୋଟ୍ ଦେବାକୁ ଯାଇ ଦେଖିଲେ କ'ଣ ଗୋଟେ ମେସିନ୍ ଥୁଆ ହୋଇଛି। ଭୋଟ୍‌ରେ ପୁଣି ମେସିନ୍ କ'ଣ ?

ସରକାର ତ ତାଙ୍କୁ କିଛି ଟ୍ରେନିଂ ଦେଇନାହାନ୍ତି; ଠିକ୍ ଯେମିତି 'ଗଣତନ୍ତ୍ର'କୁ ବାହାରୁ କେଉଁଠୁ ନେଇଆସି ଭାରତରେ ଥୋଇଦେଲେ କାହାକୁ କହିଲେନି ସେଇଟା କ'ଣ ? ଲୋକମାନେ ବାବୁଙ୍କୁ ପଚାରିଲେ, 'କ'ଣ କରିବୁ।' ବାବୁ ବୁଝେଇଲେ, 'ଯାହାକୁ ଭୋଟ୍ ଦେବ, ସେହି ଚିହ୍ନ ପାଖରେ ଚିପ।' ତଥାପି ଡର। ସରକାରୀ ଯନ୍ତ୍ର; ଖରାପ ଖୁରୁପି ହୋଇଯିବ। 'ପୁଣି ଖରାପ କରିଦେଲ' ବୋଲି କହି ବାନ୍ଧି ପକେଇବେ। ତା'ପରେ କ'ଣ ହେଲା ନ କହିଲେ ବି ବୁଝିହେବ। ବେଶ୍ କିଛି ଲୋକଙ୍କ ପାଇଁ ଭୋଟ୍ ଦେବାର ମସ୍ତବଡ଼ ପରୀକ୍ଷା ବାବୁମାନେ ଥିଲେ ବୋଲି ଚଳିଗଲା। ଯେଉଁ ଦେଶରେ ଗଣତନ୍ତ୍ରର ପ୍ରକୃତ ଅର୍ଥ ଅର୍ଦ୍ଧାଧିକ ଲୋକ ବୁଝନ୍ତିନି, ଯେଉଁ ଦେଶରେ କେଉଁ କେଉଁ କଥାକୁ ନେଇ ନିର୍ବାଚନ କରାଯାଉଛି ତା'ର ଅର୍ଥ ପ୍ରାୟ ଲୋକ ବୁଝନ୍ତିନି, ଯେଉଁ ଦେଶରେ ଶତକଡ଼ା ପଇଁତିରିଶ ଛତିଶ ଭାଗ ଲୋକ ଶ୍ରୀ-ଅକ୍ଷର ବିବର୍ଜିତ, ସେଠି 'ଇଲେକ୍ଟ୍ରୋନିକ୍ ମେସିନ୍' ଜରିଆରେ ଭୋଟ୍ ଦେବା 'ଅଣ୍ଟା ତଳ ଲଙ୍ଗଳା, ମୁଣ୍ଡରେ ଟୋପି' ଭଳି ବିକାରର କଥା ନୁହେଁ କି ? ସେଥିରେ ପୁଣି ଓଡ଼ିଶା ଭଳି ପ୍ରଦେଶରେ ଦିଦି'ଦିଟା ଭୋଟ୍; ଲୋକସଭା, ବିଧାନସଭା। ଗୋଟିକର ମେସିନ୍ ଖରାପ ହେଲାଣି ତ ଆରଟିରେ ନ'ଟା ଯାଏ ଭୋଟ୍ ଦିଆଯାଉଛି। ଏହାଛଡ଼ା ଇ.ଭି.ଏମ୍.ର ବିଶ୍ୱସନୀୟତା ଉପରେ ଅନେକ ପ୍ରଶ୍ନବାଚୀ। କମ୍ପ୍ୟୁଟର ବିଜ୍ଞାନୀଙ୍କ ମତରେ ଉଭୟ ସଫ୍ଟୱେୟାର ଓ ହାର୍ଡ୍‌ୱେୟାର ସ୍ତରରେ ଇ.ଭି.ଏମ୍.ରେ ଜାଲିଆତି କରିହେବ। ଏହା ଯଦି ସମ୍ଭବ, ସରକାରରେ ଥିବା ଦଳମାନେ ଏହି ସୁଯୋଗ ହାତଛଡ଼ା କରିବେ କାହିଁକି ? ସେଥିଲାଗି ବୋଧହୁଏ କୌଣସି ଉନ୍ନତ ଦେଶରେ ଇ.ଭି.ଏମ୍.ର ବ୍ୟବହାର କରାଯାଉନାହିଁ।

ଯାହାହେଉ, ଭୋଟ୍ ହେଲା। ଫଳାଫଳ ଘୋଷିତ ହେଲା। ମୋଟାମୋଟି ଭାବରେ ସରକାରରେ ଥିବା ଦଳଗୁଡ଼ିକ ଭୋଟ୍‌ରେ ଜିତି ନୂଆ ସରକାର ଗଢ଼ିଲେ। ବଡ଼ ସମୀକ୍ଷକ ନ ହୋଇ ମଧ୍ୟ ନିର୍ବାଚନ ଫଳାଫଳରୁ ଜଣେ ସାଧାରଣ ଲୋକ କେତେଟା କଥାର ସୂଚନା ପାଇପାରିବ। ପ୍ରଥମ କଥାଟି ହେଲା ଭାରତବର୍ଷରେ ଧୀରେ ଧୀରେ ପରିବାର ପରମ୍ପରା ଦୃଢ଼ତର ହେଉଛି। ଯଥା; ପ୍ରଧାନମନ୍ତ୍ରୀ ପରିବାର, ମୁଖ୍ୟମନ୍ତ୍ରୀ ବା ଏମ୍.ଏଲ୍.ଏ ବା ଏମ୍.ପି ପରିବାର। ପ୍ରତ୍ୟେକ ନେତା ନିଜ ନିଜକୁ ନିଜ ନିଜର ସୀମା ମଧ୍ୟରେ ରଖିବାକୁ ବାଧ୍ୟ ହେଉଛନ୍ତି। ହୁଏତ ନିରୋଳା ବେଳେ 'ମୋର ଏତେ ଯୋଗ୍ୟତା, ଦକ୍ଷତା, ଭାବମୂର୍ତ୍ତି ଇତ୍ୟାଦି ଥାଇ ମୁଖ୍ୟମନ୍ତ୍ରୀ କି ପ୍ରଧାନମନ୍ତ୍ରୀ ହୋଇପାରିଲିନି' ଭାବି ଲୁହ ଗଡ଼ାଉଥିବେ, କିନ୍ତୁ ପର ମୁହୂର୍ତ୍ତରେ ଯାହା ପାଉଥିବେ

ବାନ୍ଧୁଥିବେ। କାରଣ 'ରାଜାପୁଅ ରାଜା' କଥାଟି ଲୋକମାନଙ୍କ ପାଖରେ ଅଧିକରୁ ଅଧିକ ଗ୍ରହଣୀୟ ହେବାର ସୂଚନା ମିଳୁଛି। ଆମେ ହୁଏତ ଏକ ଗଣତାନ୍ତ୍ରିକ ରାଜତନ୍ତ୍ର ଆଡ଼କୁ ମୁହାଁଉଛୁ। ସଂଖ୍ୟାଧିକ ଲୋକଙ୍କୁ ନିରକ୍ଷର ବା ନିସ୍ୱ ରଖୁଥିବା ଗଣତନ୍ତ୍ର ପାଇଁ ଏହା ହିଁ ସୁନିଶ୍ଚିତ ଶେଷାବସ୍ଥା। ନିଜ ନିଜ କ୍ଷେତ୍ରରେ ଜନସେବାକୁ ପୁଞ୍ଜି କରି ଦଳ ବା ସରକାରର ମୁଖ୍ୟ ହେବା ଅସମ୍ଭବ ପ୍ରାୟ। ଜନସେବାର ନଭଶ୍ଚୁମ୍ବୀ ମହତ୍ତ୍ୱ ଆଜି ଭୂଲୁଣ୍ଠିତ। ଆଜି ଓଡ଼ିଶାର ଅଧିକାଂଶ ଏମ୍.ପି.ଙ୍କ ପରମ ସୌଭାଗ୍ୟର କଥା; ସେମାନେ ଏବେ ନା ସରକାରୀ ଦଳର ନା ବିରୋଧୀ ଦଳର। ବିନା ଦାୟିତ୍ୱରେ କେବଳ ସ୍ୱାଧିକାର ଓ ରୋଜଗାର! ସର୍ବୋପରି ଆଞ୍ଚଳିକ ଦଳ ଦ୍ୱାରା ଗଠିତ ପ୍ରାଦେଶିକ ସରକାରମାନେ କେନ୍ଦ୍ର ସରକାରଙ୍କ ଯୋଜନାଗୁଡ଼ିକର ଶ୍ରେୟ ନେଇ ଯେପରି ନିର୍ବାଚନି ଫାଇଦା ଉଠାଇଛନ୍ତି, ତାହାର ଫଳସ୍ୱରୂପ କେନ୍ଦ୍ର ସରକାର ଏଭଳି ସରକାରଙ୍କୁ ଅଣଦେଖା କରିବା ନିଶ୍ଚିତ ପ୍ରାୟ। ଏଥିରେ ବିଚରା ଏମ୍.ପି. ବା କ'ଣ କରିପାରିବେ ?

୨୦୦୯ ନିର୍ବାଚନ ସହ ପ୍ରତ୍ୟେକ୍ଷ ଭାବରେ ସମ୍ପୃକ୍ତ ନ ହେଲେ ମଧ୍ୟ ଆମ ଦେଶରେ ନିର୍ବାଚନ ଓ ଗଣତାନ୍ତ୍ରିକ ପରମ୍ପରାର ପ୍ରତିଷ୍ଠା ସହ ସମ୍ପୃକ୍ତ କେତୋଟି କଥା ଉଲ୍ଲେଖ ଯୋଗ୍ୟ। ୨୦୦୯ ନିର୍ବାଚନ ପରିଚାଳନାର ସର୍ବୋଚ୍ଚ ସଂସ୍ଥାର ମୁଖ୍ୟ ତାଙ୍କର ଜଣେ ସହକର୍ମୀଙ୍କର କୌଣସି ଏକ ରାଜନୈତିକ ଦଳ ପ୍ରତି ଅନୁକମ୍ପା ବିଷୟ ଉଲ୍ଲେଖ କରି ରାଷ୍ଟ୍ରପତିଙ୍କୁ ଚିଠି ଲେଖିଥିବା କଥା ଗଣମାଧ୍ୟମରେ ପ୍ରକାଶ ପାଇଲା। ସେ ଲେଖାର ଫଳାଫଳ ବିଷୟରେ କେହି କିଛି ଜାଣିଲେ ନାହିଁ। ବରଂ ଯାହାଙ୍କର ନିରପେକ୍ଷତା ଉପରେ ପ୍ରଶ୍ନ ଉଠିଥିଲା, ତାଙ୍କରି ତତ୍ତ୍ୱାବଧାନରେ ୨୦୦୯ ନିର୍ବାଚନ ଅନୁଷ୍ଠିତ ହେଲା। ସେହିପରି ଓଡିଶା କ୍ଷେତ୍ରରେ ସରକାରରୁ ବିଜେପିର ସମର୍ଥନ ପ୍ରତ୍ୟାହାର ପରେ ସରକାରଙ୍କ ସଂଖ୍ୟା ଗରିଷ୍ଠତା ଥିବା ନଥିବା ରହସ୍ୟ ହୋଇରହିଗଲା।

ଏହିସବୁ ଦୃଷ୍ଟିରୁ ଭାରତୀୟ ଗଣତନ୍ତ୍ର ପୃଥିବୀର ସଫଳ ପଚାଶଟି ଗଣତନ୍ତ୍ର ମଧ୍ୟରେ ସ୍ଥାନ ନ ପାଇବା ଆକସ୍ମିକ ନୁହେଁ, ବରଂ ଏହା ଆମ ସମସ୍ତଙ୍କ ଦ୍ୱାରା ନିର୍ମିତ ଏକ ନିକୃଷ୍ଟମାନର ହସ୍ତଶିଳ୍ପ। ୨୦୦୯ ନିର୍ବାଚନ ଓ ତତ୍ ସମ୍ପୃକ୍ତ ଘଟଣାବଳୀ ଇତିହାସର କଥା ହେବା ବାଟରେ ଏହିଭଳି କିଛି ଉଦ୍‌ବେଗ ସମ୍ବଳିତ ସାଙ୍କେତିକ ପ୍ରସଙ୍ଗର ଉତ୍‌ଥାପନ କରିଛି। ନିର୍ଲିପ୍ତ ସମୟ ଏ ସବୁର ହୁଏତ ଏକ ନିରପେକ୍ଷ ବୃହତ୍ତର ନିଷ୍କର୍ଷ ପ୍ରଦାନ କରିବ, ଦିନେ ନା ଦିନେ।

□□□

# ଗଣତନ୍ତ୍ରର ଗତି

କୁହାଯାଏ ସ୍ଥିତି ବଡ଼ କଥା ନୁହେଁ, ବଡ଼ କଥା ଗତି। କାରଣ ତାହା ଭବିଷ୍ୟତର ବାର୍ତ୍ତାବହ। ତେଣୁ ଆସନ୍ତୁ ଆଖି ପକାଇବା ଆମ ଦେଶରେ ଗଣତନ୍ତ୍ରର ଗତି ଆଡ଼େ।

ଗଣତନ୍ତ୍ର ଏକ ସ୍ୱପ୍ନଭରା ଦେଶ ପରିଚାଳନା ବ୍ୟବସ୍ଥା। ପ୍ରତ୍ୟେକ ନାଗରିକ ଦେଶ ପରିଚାଳନାରେ ଅଂଶୀଦାର ହେବାର ଏକ ବିରାଟ ସ୍ୱପ୍ନକୁ ନେଇ ଗଣତନ୍ତ୍ରର ପ୍ରତିଷ୍ଠା। ସେହି ସ୍ୱପ୍ନରେ ବିଭୋର ହୋଇଛନ୍ତି ମହାମାନବମାନେ ଯୁଗ ଯୁଗ ଧରି; ପ୍ଲାଟୋ, ଆରିଷ୍ଟୋଟଲ୍‌ଙ୍କଠାରୁ ତିଲକ, ଗାନ୍ଧୀଙ୍କ ପର୍ଯ୍ୟନ୍ତ। ସମସ୍ତଙ୍କର ଆଶା ଯେ ଗଣତାନ୍ତ୍ରିକ ପରିଚାଳନା ଭିତରେ ମଣିଷ ମୁକ୍ତ ହେବ, ଭୟ ଶୂନ୍ୟ ହେବ, ବିକଶିତ ହେବ। ଆଜିର ବାସ୍ତବତା କିନ୍ତୁ ଏ ସ୍ୱପ୍ନକୁ ପରିହାସ କରିବାକୁ ଆରମ୍ଭ କରିଛି। ଗଣତନ୍ତ୍ର, ମାଫିଆମାନଙ୍କ ବ୍ୟବସାୟର ଚକ୍ରବ୍ୟୂହ ଭିତରେ ନିସ୍ତେଜ, ନିଷ୍ପ୍ରାଣ ହୋଇଯାଉଛି। ଆନ୍ତର୍ଜାତିକସ୍ତର ଠାରୁ ଗ୍ରାମ ଯାଏ ପ୍ରତି କ୍ଷେତ୍ରରେ ଗୋଟିଏ ନାଟକର ବିଭିନ୍ନ ସଂସ୍କରଣ ହିଁ ଅଭିନୀତି ହେଉଛି।

ଗଣତାନ୍ତ୍ରିକ ଦେଶ ପରିଚାଳନା ପଦ୍ଧତିର ବ୍ୟବସ୍ଥାପକ, କାର୍ଯ୍ୟନିର୍ବାହୀ ଓ ନ୍ୟାୟପାଳିକା ତିନିଟି ପ୍ରମୁଖ ଅଙ୍ଗ। କେବଳ ବ୍ୟବସ୍ଥାପକ ସଭାଗୁଡ଼ିକର ସଭ୍ୟମାନଙ୍କୁ ଛାଡ଼ି ଅନ୍ୟ ଅଙ୍ଗଗୁଡ଼ିକର ସଦସ୍ୟମାନେ ବେତନଧାରୀ କର୍ମଚାରୀ। ଅଳ୍ପ କେତେ ସଂଖ୍ୟକଙ୍କୁ ଛାଡ଼ି ସମସ୍ତ ବ୍ୟବସ୍ଥାପକ ସଭାର ସଭ୍ୟମାନେ ମଧ୍ୟ ପରୋକ୍ଷ ବା ପ୍ରତ୍ୟକ୍ଷ ଭାବରେ ନିର୍ବାଚିତ। ନିର୍ବାଚିତର ମହତ୍ତ୍ୱ ହେଲା ଯେ, ନିର୍ବାଚିତ ବ୍ୟକ୍ତିବିଶେଷ ଲୋକମାନଙ୍କର ବିଶ୍ୱସ୍ତ ପ୍ରତିନିଧି ଭାବରେ କାର୍ଯ୍ୟ ସମ୍ପାଦନ କରିବେ; ଲୋକମାନଙ୍କ ଆଶା ଆକାଂକ୍ଷାର ପ୍ରତିନିଧିତ୍ୱ କରିବା ସହ ଦେଶ ପ୍ରଗତି ତଥା ସ୍ୱାର୍ଥରକ୍ଷାର ଅମୋଘ ଅସ୍ତ୍ର ଭାବରେ ଉଭା ହେବେ। ଗଣତନ୍ତ୍ରର ମହାନ୍ ପ୍ରବକ୍ତା ଓ ପୂଜାରୀମାନଙ୍କର ସ୍ୱପ୍ନ ଠିକ୍ ଏହି ଜାଗାରେ ହିଁ ଧୂଳିସାତ୍ ହୋଇଯାଉଛି। ନିର୍ବାଚିତ ପ୍ରତିନିଧିମାନେ

---

★ ଦୈନିକ "ସମ୍ବାଦ"; ୨୦ ଜୁଲାଇ ୨୦୧୧

ଲୋକମାନଙ୍କର ବା ଦେଶ ସ୍ୱାର୍ଥର ପ୍ରତିନିଧିତ୍ୱ ନ କରି କେବଳ ନିଜର ଓ ନିଜ ନିଜ ଦଳ ସୁପ୍ରିମୋମାନଙ୍କ ସ୍ୱାର୍ଥର ପ୍ରତିନିଧିତ୍ୱ କରୁଛନ୍ତି। କେବଳ ମାତ୍ର ଛଅ ହଜାର ପ୍ରାୟ ଲୋକପ୍ରତିନିଧି ଶହେ କୋଡ଼ିଏ କୋଟି ଲୋକଙ୍କର ଓ ଦେଶର ଉନ୍ନତିର ରାସ୍ତାକୁ ବନ୍ଦ କରିଦେଉଛନ୍ତି। ପ୍ରତିନିଧିମାନଙ୍କର ଏହି ଖେଳରେ କାର୍ଯ୍ୟନିର୍ବାହୀ ଅଧିକାରୀ, ଘରୋଇ କମ୍ପାନୀ ଓ ସଂସ୍ଥାଗୁଡ଼ିକର ମାଲିକମାନେ ପରମ ସହଯୋଗୀ ପାଲଟି ଯାଇଛନ୍ତି। ସର୍ବୋଚ୍ଚ ନ୍ୟାୟାଳୟର ନ୍ୟାୟମୂର୍ତ୍ତିଙ୍କ ଭାଷାରେ 'ନିୟମ ପ୍ରଣୟନକାରୀ, ନିୟମ ରକ୍ଷାକାରୀ ଓ ନିୟମ ଭଙ୍ଗକାରୀ'ଙ୍କର ତ୍ରିବେଣୀ ସଙ୍ଗମର 'ପବିତ୍ର' ଜଳଭଉଁରୀ ଭିତରେ ପଡ଼ି ମଣିଷ ଜୀବନର ମର୍ଯ୍ୟାଦା ଟିକକ ହରାଇ ବସୁଛି। ଶ୍ରମିକ ଜଣେ ରକ୍ତକୁ ପାଣି କରି ଦିନକୁ ୫୦-୬୦ ଟଙ୍କା ରୋଜଗାର କରିବାରେ ସକ୍ଷମ ହେଉଥିବାବେଳେ ତା'ରି ଭୋଟ୍‌ରେ ବଳିୟାନ୍ 'ପ୍ରତିନିଧି' ଜଣକ ଶହ ଶହ କୋଟି ଟଙ୍କାର ମାଲିକ ହୋଇଯାଉଛି, ଗୋଟିଏ ଗୋଟିଏ ପ୍ରତିନିଧିତ୍ୱ କାଳରେ। ଗଣତନ୍ତ୍ର କାହିଁ? ପ୍ରତିନିଧିତ୍ୱ କାହିଁ?

ଲୋକ ଓ ଲୋକ-ପ୍ରତିନିଧିମାନଙ୍କ ମଧ୍ୟରେ ଦୂରତ୍ୱ ବଢ଼ି ବଢ଼ି ଆସି କେଉଁ ସ୍ତରରେ ପହଞ୍ଚିଛି, ତାହା ନିକଟ ଅତୀତର ବହୁଚର୍ଚ୍ଚିତ କିଛି ଜାତୀୟ ତଥା ପ୍ରାଦେଶିକ ଘଟଣାବଳୀରୁ ଜାଣିହେବ। ସ୍ୱାଧୀନ ଭାରତରେ ଦୁର୍ନୀତି ଓ କଳାଟଙ୍କାର ଅସ୍ୱସ୍ତିକର ଅଭିବୃଦ୍ଧିରେ ଆତଙ୍କିତ ହୋଇ ଲୋକପାଳ ଅନୁଷ୍ଠାନର ଆବଶ୍ୟକତା ଅନୁଭବ କରିବା ପୂର୍ବକ ୧୯୬୮ ମସିହାରୁ ୨୦୧୧ ମଧ୍ୟରେ ଲୋକସଭାରେ ସାତ ଥର ବିଲ୍ ଆଗତ ହୋଇଛି, କିନ୍ତୁ କୌଣସି ସରକାର ଏହାକୁ ନିୟମରେ ପରିଣତ କରିବାରେ ଆଗ୍ରହ ଦେଖାଇନାହାନ୍ତି। ଆଗ୍ରହ ନ ଦେଖାଇବାର କାରଣ ସ୍ପଷ୍ଟ। ସରକାରୀ କଳର ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରୋତ୍ସାହନରେ ଦେଶ ବିରାଟ ବିରାଟ ସ୍କାମ୍ ଓ କଳାଟଙ୍କାର ସମାନ୍ତରାଳ ଅର୍ଥନୀତି ଭିତରକୁ ଠେଲି ହୋଇଯାଇଛି। ଆଦର୍ଶ ଗୃହନିର୍ମାଣ, ରାଜ୍ୟଗୋଷ୍ଠୀ କ୍ରୀଡ଼ା, ଟୁ-ଜି ଟେଲିଫୋନ୍ ସ୍କାମ୍ ପ୍ରଭୃତି ନିର୍ଦ୍ଦିଷ୍ଟ ଜାତୀୟ ଗଣମାଧ୍ୟମଗୁଡ଼ିକର ନିଷ୍ଠାପର ଉଦ୍ୟମ ଦ୍ୱାରା ସଦ୍ୟ ଆବିଷ୍କୃତ ଦୁର୍ନୀତି-ସମୁଦ୍ର ବେଳାଭୂମିର କେତୋଟି ଦୃଶ୍ୟମାନ ଉପଲଖଣ୍ଡ ମାତ୍ର। ସେହିଭଳି ଭାରତୀୟଙ୍କ କଳାଧନ ଦେଶ ଭିତରେ କାୟାବିସ୍ତାର କରିବା ସହ ବିଦେଶୀ ବ୍ୟାଙ୍କରେ ଗଚ୍ଛିତ ରହି ପୃଥିବୀର ଅନ୍ୟ ସମସ୍ତ ଦେଶର ସମ୍ମିଳିତ କଳାଧନକୁ ମଧ୍ୟ ଟପିଗଲାଣି। ତଥାପି ମଧ୍ୟ ଦୁର୍ନୀତି ଓ କଳାଟଙ୍କା ନିୟନ୍ତ୍ରଣରେ ସମସ୍ତ କେନ୍ଦ୍ର ସରକାର ଉଦାସୀନ। ସେଥିଲାଗି ନାଗରିକ ସମାଜ ଯେତେବେଳେ

ଏକ ବଳିଷ୍ଠ ଲୋକପାଳ ନିୟମ ପ୍ରବର୍ତ୍ତନ କଥା ଉଠାଉଛି ସରକାର ରାତି ଅଧରେ ସଭ୍ୟ ସମାଜର ନିୟମ ଭାଙ୍ଗି ନିରୀହ ସ୍ତ୍ରୀ ଲୋକ ଓ ପିଲାମାନଙ୍କ ଉପରେ କେବଳ ଅତ୍ୟାଚାର କରୁନି ବରଂ ନାଗରିକମାନଙ୍କ ସକାଶେ ଏହା ଏକ ଉପଯୁକ୍ତ ଶିକ୍ଷା ବୋଲି ଆସ୍ଫାଳନ କରୁଛି। ଗଣତନ୍ତ୍ରର ଖୋଳପା ଭିତରେ ଲୋକ ଓ ଲୋକପ୍ରତିନିଧିଙ୍କ ମଧ୍ୟରେ ଦୂରତା ଆଉ କେତେ ଦୂରକୁ ଯାଇପାରିବ? ସରକାରୀ କଳର ଏତାଦୃଶ ଆଚରଣ ଭିତରେ ଆୟୁବ ଖାଁଙ୍କ 'ପିପୁଲ୍ସ ଡେମୋକ୍ରାସି' ବା ଲୋକ ଗଣତନ୍ତ ଓ ମିଆଁମାର ସାମରିକ ଶାସନର 'ଡିସିପ୍ଲିନ୍ଡ୍ ଡେମୋକ୍ରାସି' ବା ଶୃଙ୍ଖଳିତ ଗଣତନ୍ତ୍ରର ଗନ୍ଧ ଯେତେ ସାମାନ୍ୟ ହେଉ ପଛେ ବାରି ହୋଇପଡୁଛି। ଲୋକସଭା ଅଧିବେଶନକୁ ଘୁଞ୍ଚାଇବା, ବିଧାନସଭା ଅଧିବେଶନକୁ ନିର୍ଦ୍ଧାରିତ ସମୟ ପୂର୍ବରୁ ବନ୍ଦ କରିବା ଲୋକପ୍ରତିନିଧିମାନଙ୍କର ଲୋକତନ୍ତ୍ର ପ୍ରତି ବିମୁଖତାର ଛୋଟ ଛୋଟ ଦୃଷ୍ଟାନ୍ତ।

ସ୍ୱାଧୀନୋତ୍ତର କାଳରେ ସମୟ ଗଡ଼ିବା ସହ ଜାତୀୟ ଓ ପ୍ରାଦେଶିକ ସରକାରଗୁଡ଼ିକ ଲୋକସେବାଠାରୁ ଦୂରେଇ ଦୂରେଇ ଯାଇ ଦେଶୀ ବିଦେଶୀ କମ୍ପାନୀ ଓ ଘରୋଇ ସଂସ୍ଥାମାନଙ୍କ ସେବାରେ ବ୍ରତୀ ହୋଇଛନ୍ତି। ମୋଟାମୋଟି ଭାବରେ ସମସ୍ତ ସରକାରୀ ଉଦ୍ୟୋଗ ଦେବାଳିଆ ହୋଇ ବନ୍ଦ ହୋଇଯାଉଛି। ସହରଗୁଡ଼ିକରେ ଏପରିକି ପ୍ରାଦେଶିକ ରାଜଧାନୀଗୁଡ଼ିକରେ ମଧ୍ୟ ଲୋକମାନଙ୍କୁ ରାସ୍ତା, ପାଣି, ବିଦ୍ୟୁତ୍ ଓ ଆବର୍ଜନା ନିଷ୍କାସନ ଭଳି ମୌଳିକ ସୁବିଧା ଯୋଗାଇ ଦିଆଯାଇପାରୁ ନାହିଁ। ଗାଁ-ଗଣ୍ଡାଗୁଡ଼ିକରେ ତୋଟା, ଅନାବାଦୀ, ଗୋଚର, ନାଳବନ୍ଧ, ନଦୀବନ୍ଧ ସବୁ କିଛି ଜବରଦଖଲରେ। ଏକା ସୂତ୍ରରେ ବି ସହରମାନଙ୍କରେ ଗଜୁରି ଉଠୁଛି ଅସଂଖ୍ୟ ବସ୍ତି। କ୍ଷେତ୍ର-କର୍ମଚାରୀମାନେ ଥାଇ ନ ଥିଲା ଭଳି। କର୍ମଚାରୀ ଦୁନିଆରେ ପ୍ରତ୍ୟେକେ ନିଜର ଦି' ପଇସା ଓ ଉପରିସ୍ଥ 'ସାର୍'ଙ୍କୁ ଖୁସି କରିବାରେ ବ୍ୟସ୍ତ। ସମସ୍ତ ଲୋକସେବା ଅଫିସ୍-କୈନ୍ଦ୍ରିକ ହେଉଛି, ସମାଜର ପ୍ରଶସ୍ତ କ୍ଷେତ୍ରକୁ ପ୍ରସାରିତ ହେବା ପରିବର୍ତ୍ତେ। ଚଳତ୍‌ଶକ୍ତିହୀନ କାର୍ଯ୍ୟନିର୍ବାହୀ ପଦ୍ଧତି ଭିତରେ କେଉଁଠି ଭାରତ ସରକାରଙ୍କ ନଥି ଭିତରେ ପାକିସ୍ତାନୀ ସେନାଧ୍ୟକ୍ଷର ଫଟୋ ବାହାରୁଛି, କେଉଁଠି ଅର୍ଥମନ୍ତ୍ରୀଙ୍କ ଦପ୍ତରରେ କିଏ ଚୁଇଙ୍ଗମ୍ ମାରି ଚାଲିଯାଉଛି, କେଉଁଠି ମାତ୍ର ପାଞ୍ଚଜଣ ସନ୍ତ୍ରାସବାଦୀ ଭାରତର ସୁରକ୍ଷାବଳୟ ଭାଙ୍ଗି ମୁମ୍ବାଇ ସହରର ତିନି ତିନି ଜଣ ଉଚ୍ଚପଦସ୍ଥ ପୋଲିସ୍ ଅଫିସରଙ୍କୁ ମାରି ସମଗ୍ର ସହରର ଜୀବନଯାତ୍ରାକୁ ଦୁଇଦିନ କାଳ ନିଷ୍ପ୍ରାଣ କରିଦେଉଛନ୍ତି ତ ଆଉ କେଉଁଠି ଭାରତ ସରକାରଙ୍କ ପ୍ରଦତ୍ତ ପାକିସ୍ତାନୀ ସନ୍ତ୍ରାସବାଦୀ ତାଲିକାରେ ନିଜ ଜେଲ୍‌ର ବନ୍ଦୀଙ୍କ ନାଁ ଉଠିଯାଉଛି ଭଳି ହାସ୍ୟାସ୍ପଦ ଘଟଣା

ଘଟିବାରେ ଲାଗିଛି । ସେପଟେ କିନ୍ତୁ କମ୍ପାନୀମାନଙ୍କର ସ୍ୱାର୍ଥ ପାଇଁ ଲୋକଙ୍କ ଅର୍ଥରେ ପରିଚାଳିତ ସରକାରଗୁଡ଼ିକ କୋର୍ଟ କଚେରିର ଦ୍ୱାରସ୍ଥ ହୋଇ ଜନସାଧାରଣଙ୍କ ଅର୍ଥ ବରବାଦରେ ବ୍ୟସ୍ତ ଥିବାର ଖବର ଦିନ ପରେ ଦିନ ସମ୍ବାଦପତ୍ରଗୁଡ଼ିକର ପୃଷ୍ଠା ମଣ୍ଡନ କରି ଚାଲିଛନ୍ତି । କମ୍ପାନୀ ପ୍ରେମରେ ସରକାରୀ କଳ ଏପରି ମସ୍‌ଗୁଲ୍ ଯେ ଲୋକମାନଙ୍କର ଜୀବନ ଓ ଜୀବିକା ନଷ୍ଟ କରିବା ସହ ବାପା-ମା'ଙ୍କଠାରୁ ପିଲାମାନଙ୍କୁ ଅଲଗା କରିବାକୁ ଚିନ୍ତା କରୁଛନ୍ତି । ଶିକ୍ଷା, କୃଷି, ସ୍ୱାସ୍ଥ୍ୟ, ଦରଦାମ୍ ଓ ବେତନ ନିୟନ୍ତ୍ରଣ ଭଳି ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରରେ ବିଫଳ ହେଉଥିବା ସରକାର କେବଳ କମ୍ପାନୀ ବା ପୁଞ୍ଜି ଲଗାଣ ସଂସ୍ଥାଗୁଡ଼ିକ ନିକଟରେ ଆତ୍ମ ସମର୍ପଣ କରିଦେବା ଗଣତନ୍ତ୍ର ପାଇଁ ଏକ ଅଶୁଭ ସଙ୍କେତ ।

କେବଳ ଲୋକ ଓ ଲୋକ ପ୍ରତିନିଧିଙ୍କ ମଧ୍ୟରେ ଦୂରତା ଯେ ବଢ଼ୁଛି ତାହା ନୁହେଁ, ଲୋକ ପ୍ରତିନିଧି ଓ ସେମାନଙ୍କ ଦଳର ମୁଖ୍ୟ ବା ସୁପ୍ରିମୋଙ୍କ ମଧ୍ୟରେ ଦୂରତା ମଧ୍ୟ ବଢ଼ି ବଢ଼ି ଚାଲିଛି । ଭାରତୀୟ ଜାତୀୟ କଂଗ୍ରେସ୍, ତାମିଲନାଡୁର ଡିଏମ୍‌କେ, ଏଆଇ ଡିଏମ୍‌କେ, ଓଡ଼ିଶାର ବିଜେଡ଼ି, ଉତ୍ତର ପ୍ରଦେଶର ବିଏସ୍‌ପି ଇତ୍ୟାଦି ଏହାର ଉଦାହରଣ । ଏସବୁ ଗଣତନ୍ତ୍ର ପାଇଁ ଏକ ବିଲକ୍ଷଣ । ନିଜ ଦଳ ମଧ୍ୟରେ ଗଣତାନ୍ତ୍ରିକ ବ୍ୟକ୍ତିତ୍ୱ ହରାଇ ଥିବା ପ୍ରତିନିଧି ଲୋକମାନଙ୍କ ସ୍ୱାର୍ଥର ପ୍ରତିନିଧିତ୍ୱ କରିବ କିପରି ? ମୁଷ୍ଟିମେୟ ଲୋକଙ୍କ ହାତରେ ସମସ୍ତ ରାଜନୈତିକ ଶକ୍ତି କେନ୍ଦ୍ରୀଭୂତ ହେବା ଫଳରେ ଅନ୍ତର୍ଜାତୀୟ କମ୍ପାନୀ ଓ ଉନ୍ନତ ଶକ୍ତିଶାଳୀ ରାଷ୍ଟ୍ରଗୁଡ଼ିକ ପକ୍ଷରେ ଆମ ଦେଶର ଆଭ୍ୟନ୍ତରୀଣ ଓ ବୈଦେଶିକନୀତି ନିର୍ଦ୍ଧାରଣରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବା ସହଜ ହେଉଛି । ସେହିଭଳି ଏକ ଉଦାହରଣ ହେଲା ଆମେରିକା ସରକାରଙ୍କ ସହିତ ଆମର ଅଣୁଚୁକ୍ତି ସ୍ୱାକ୍ଷର । ଏହି ଚୁକ୍ତି ଫଳରେ ଉନ୍ନତ ରାଷ୍ଟ୍ରମାନଙ୍କଠାରୁ ପରମାଣୁ ଇନ୍ଧନ ଓ ରିଆକ୍ଟର କିଣିବା ପଥ ପରିଷ୍କାର ହେବା ସହ ଆମ ଦେଶର ରିଆକ୍ଟରଗୁଡ଼ିକ ଆନ୍ତର୍ଜାତିକ ସର୍ବେକ୍ଷଣ ପାଇଁ ଉନ୍ମୁକ୍ତ ହେଲା । ଆମର ପରମାଣୁ ଅସ୍ତ୍ର ପରୀକ୍ଷା ନିଷେଧ ହେଲା ଓ ୧୯୫୦ ମସିହାରୁ ଅନୁସୃତ ଆମ ନିଜସ୍ୱ ପରମାଣୁ ଶକ୍ତି ଯୋଜନା ଗୁରୁତ୍ୱର ଭାବେ ବାଧାପ୍ରାପ୍ତ ହେଲା ବୋଲି ତଥ୍ୟାଭିଜ୍ଞ ମହଲର ଉଦ୍‌ବେଗ ପ୍ରକାଶ ପାଉଛି । ଆଭ୍ୟନ୍ତରୀଣ ଦୁର୍ବଳତା ଯୋଗୁଁ ଚୀନ୍, ପାକିସ୍ତାନ, ଶ୍ରୀଲଙ୍କା, ମିଆଁମାର ଓ ବାଂଲାଦେଶ ଭଳି ପଡ଼ୋଶୀମାନଙ୍କ ସହ ଆମ ଦେଶ ନୀତିନିଷ୍ଠ ବିଶ୍ୱାସର ସମ୍ପର୍କ ଯୋଡ଼ି ପାରୁନାହିଁ । ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ ଗଣମାଧ୍ୟମ, ସ୍ୱଚ୍ଛ ବ୍ୟତିକ୍ରମ ବ୍ୟତୀତ ପ୍ରଥମ ଓ ଦ୍ୱିତୀୟ ସହ ମିଶି ଜନମାନସରେ ଏକ ମିଥ୍ୟା ଭାବରାଜ୍ୟର ସଂରଚନା

କରୁଛି । ଏମାନଙ୍କ ସମ୍ମିଳିତ ପ୍ରଚେଷ୍ଟାରେ ମିଥ୍ୟାର ମାୟାବୀ ଶକ୍ତି ଦ୍ୱାରା ସତ୍ୟ ଅପହୃତ ହେଉଛି ।

ଗଣତନ୍ତ୍ରର ଦ୍ରୁତ ସ୍ଖଳନ ପଛରେ ରହିଛି ନିର୍ବାଚନ ପ୍ରକ୍ରିୟାରେ କ୍ରମବର୍ଦ୍ଧିଷ୍ଣୁ ତ୍ରୁଟି ବିଚ୍ୟୁତି; ଯଥା, କଳାଧନ ପ୍ରଭାବରେ ବ୍ୟୟ ବହୁଳତା, ରାଜନୈତିକ ଦଳମାନଙ୍କର ଅପରାଧ ପ୍ରବଣତା ଓ ଅପରାଧ ପ୍ରୀତି, ଅନଟନ ଓ ଅଶିକ୍ଷା ପ୍ରପୀଡ଼ିତ ଜନସାଧାରଣଙ୍କର ଗଣତାନ୍ତ୍ରିକ ପ୍ରକ୍ରିୟା ତଥା ସମାଜ ଓ ଦେଶ ଆଗରେ ଥିବା ସମସ୍ୟାଗୁଡ଼ିକ ବିଷୟରେ ସଚେତନତାର ଅଭାବ । କେବଳ ଅର୍ଥବଳୀ ଓ ବାହୁବଳୀମାନେ ହିଁ ନିର୍ବାଚନରେ ଭାଗ ନେଇପାରିବେ ଅବସ୍ଥା ସୃଷ୍ଟି ହୋଇଛି । ସେହିମାନେ ହିଁ ଦେଶ ପରିଚାଳନାର ନୀତି ନିର୍ଦ୍ଧାରଣ କରିବେ ଓ ଦେଶ ଚଳାଇବେ । କୌଣସି ରାଜନୈତିକ ଦଳ ସାଧୁ, ସଚ୍ଚୋଟ ଓ ଉଚ୍ଚଶିକ୍ଷିତ ଲୋକଙ୍କୁ ପ୍ରାର୍ଥୀ କରାଇବ ନାହିଁ କି ସ୍ୱାଧୀନ ଭାବରେ ଠିଆ ହେଲେ ସେ ଜନ ସମର୍ଥନ ଲାଭ କରିବ ନାହିଁ, ଏହା ହିଁ ପ୍ରଚଳିତ ଗଣତନ୍ତ୍ରର ବିଡ଼ମ୍ବନା ।

ଗଣତନ୍ତ୍ରକୁ ରୋଗମୁକ୍ତ କରିବାର ଏକମାତ୍ର ନିଦାନ ସୁଶିକ୍ଷାର ପ୍ରସାର । କାରଣ କେବଳ ଶିକ୍ଷା ହିଁ ସୃଷ୍ଟି କରେ ନାଗରିକ ସଚେତନତା ଓ ନାଗରିକ ସଚେତନତା ସୃଷ୍ଟି କରେ ସୁସ୍ଥ ଗଣତନ୍ତ୍ର । କିନ୍ତୁ ଅବଶୋଷର କଥା ଯେ ଅବହେଳା ଓ ଉଦ୍ଭଟ ପରୀକ୍ଷା ନିରୀକ୍ଷାରେ ଜର୍ଜ୍ଜରିତ ହୋଇ ଆଜି ଶିକ୍ଷା ହିଁ ସବୁଠାରୁ ଅଧିକ ବିପର୍ଯ୍ୟସ୍ତ । ଆଇ.ଆଇ.ଟି, ଆଇ.ଆଇ.ଏମ୍ ଓ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ଭଳି ଉତ୍ତମ ଶିକ୍ଷାନୁଷ୍ଠାନଗୁଡ଼ିକର ମଧ୍ୟ ନିମ୍ନଗତି । ପ୍ରାଥମିକ ଓ ମାଧ୍ୟମିକସ୍ତରର ଶିକ୍ଷା ନିମ୍ନଗାମୀ ହୋଇ ବିପର୍ଯ୍ୟସ୍ତ ସ୍ତରକୁ ଆସିଥିଲାବେଳେ ଉଚ୍ଚସ୍ତରରେ ମାନ ବୃଦ୍ଧିର ପ୍ରଶ୍ନ ଉଠିବ ବା କିପରି । ବିଭିନ୍ନ ପରୀକ୍ଷା ଉଚ୍ଛେଦ, ସମସ୍ତେ ପାସ୍, ବୈଷୟିକଶିକ୍ଷା କ୍ଷେତ୍ରରେ ଅସରନ୍ତି ବ୍ୟାକ୍ ପେପର୍, ଘରୋଇ ସଂସ୍ଥାମାନଙ୍କରେ ଟଙ୍କା ବଦଳରେ ଡିଗ୍ରୀ ପ୍ରଦାନ ଇତ୍ୟାଦି ଭଳି ଅନେକ ସରକାରୀ ନୀତି ଶିକ୍ଷାକୁ ମୃତ୍ୟୁ ମୁହଁକୁ ଠେଲି ଦେଉଛି । ଭାରତରେ ଶିକ୍ଷକ-ଛାତ୍ର ଅନୁପାତ ପୃଥିବୀର ଅନ୍ୟାନ୍ୟ ଦେଶ ତୁଳନାରେ ସର୍ବନିମ୍ନ ପାଖାପାଖି ଥିଲାବେଳେ ସାମ୍ ପିତ୍ରୋଡ଼ାଙ୍କ ଭଳି ବ୍ୟକ୍ତି ବିଶେଷଙ୍କର "ହଜାରେ ଛାତ୍ରକୁ ଜଣେ ଶିକ୍ଷକକ ଆମର ଲକ୍ଷ୍ୟ" ଭଳି ମତାମତ ଶିକ୍ଷାକୁ ଦୁର୍ବଳ କରିବାରେ ହିଁ ସହାୟକ ହେବ । ଏ ସ୍ଥିତିରେ ନିରାଟ ସତ୍ୟଟି ହେଲା ଯେ ଏକବିଂଶ ଶତାବ୍ଦୀର ପ୍ରଥମ ଦଶକରେ ବି ଆମ ଦେଶର ଚାଳିଶ ପଚାଶ ପ୍ରତିଶତ ଲୋକ ସମ୍ପୂର୍ଣ୍ଣ ନିରକ୍ଷର । ସେମାନେ କିପରି ବୁଝିବେ ନାଗରିକ

ସଚେତନତା ଉପରେ ପ୍ରବଳ ନିର୍ଭରଶୀଳ ଗଣତାନ୍ତ୍ରିକ ପଦ୍ଧତିରେ ଦେଶ ଚଳାଇବାର ଭିତିରି କଥା ?

ଏଚ୍.ଜି.ୱେଲ୍‌ସଙ୍କ କହିବା ଅନୁସାରେ ମଣିଷର ଭାଗ୍ୟ ଶିକ୍ଷା ଓ ବିନାଶ ମଧ୍ୟରେ ସଂଘଟିତ ପ୍ରତିଦ୍ୱନ୍ଦ୍ୱିତାର ଫଳାଫଳ ଦ୍ୱାରା ହିଁ ନିର୍ଦ୍ଧାରିତ ହେବ। ଦିନକୁ ଦିନ ଏହି ପ୍ରତିଦ୍ୱନ୍ଦ୍ୱିତା ଆମ ଦେଶରେ ଅଧିକରୁ ଅଧିକ ମାରାତ୍ମକ ହେବା ହିଁ ଆଶଙ୍କାର କଥା। ଏଭଳି ଘଡ଼ିସନ୍ଧି ମୁହୂର୍ତ୍ତରେ ସଚେତନ ଲୋକାଭିମୁଖୀ ଦେଶପ୍ରେମୀ ନାଗରିକ ସମାଜ ଓ ଗଣମାଧମ ଓ ସମ୍ବିଧାନ ପ୍ରତି ପ୍ରତିବଦ୍ଧ ନ୍ୟାୟପାଳିକା ହିଁ ଗଣତନ୍ତ୍ର ଓ ଦେଶର ଏକମାତ୍ର ଭରସା।



# ଏଗାରର ଯାତ୍ରା ଲକ୍ଷ୍ୟ ଆଡ଼କୁ...

ଦେଖୁ ଦେଖୁ ୨୦୧୧ ଇତିହାସରେ ମିଶିଗଲା। ୨୦୧୨ ମସିହାରୁ ବି କେତେଦିନ ଖସିଗଲାଣି। ସମୟର ଅନନ୍ତ ପ୍ରବାହରେ ମଣିଷ ଚିହ୍ନିତ ଏଭଳି ଛୋଟ ଛୋଟ କାଳଖଣ୍ଡ ବିଶେଷ କିଛି ଗୁରୁତ୍ୱ ରଖନ୍ତି ନାହିଁ। କିନ୍ତୁ ମଣିଷର ସ୍ୱଳ୍ପ ଜୀବନ କାଳ ବା ମଣିଷ ସଭ୍ୟତାର ସୀମିତ ଅବଧି ମଧ୍ୟରେ ବର୍ଷ ବର୍ଷକର ଘଟଣା ଖୁବ୍ ଅର୍ଥପୂର୍ଣ୍ଣ ମନେହୁଏ; କେତେବେଳେ ଭୁଲ୍‌ରେ ତ କେତେବେଳେ ଠିକ୍‌ରେ। ଏଭଳି ଏକ ନିସ୍ପୃହ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କଲେ ୨୦୧୧ ଏକ ଆଶାର ବର୍ଷ ଭାବରେ ଉତୁରି ଆସେ।

ଆଶାର ବର୍ଷ ଏଇଥିପାଇଁ ଯେ ୨୦୧୧ ମାତ୍ର ୩୬୫ ଦିନ ମଧ୍ୟରେ ହତାଶା ଓ ନିରାଶା ଉଭେଇ ଯାଇଛି ବୋଲି ନୁହେଁ ବରଂ ହତାଶା ଓ ନିରାଶାର ନିଗଡ଼ ନିରନ୍ଧ୍ର ଗମ୍ଭୀରା ଭିତରେ ଆଶାର ସାମାନ୍ୟ ସୂଚନା ମିଳୁଛି ବୋଲି। ପୃଥିବୀର ବହୁ ଭାଗରେ ଗଣତନ୍ତ୍ରର ଗଣ୍ଡି ଭିତରେ ରାଜନୈତିକ ଶଠତା ଓ ସମସ୍ତଙ୍କ ସମୃଦ୍ଧି ଆଳରେ ପୁଞ୍ଜି-ପ୍ରବଣ ଅର୍ଥନୈତିକ ବ୍ୟାବସାୟିକତାର ଯମ ଯନ୍ତ୍ରଣାରୁ ମଣିଷର ମୁକ୍ତି ମାର୍ଗ ଉନ୍ମୁକ୍ତ ହେବାର ଆଭାସ ମିଳୁଛି।

ଗଣତାନ୍ତ୍ରିକ ପଦ୍ଧତିରେ ନିର୍ବାଚନ ମାଧ୍ୟମରେ ଗୋଟିଏ ସମାଜ-ମଙ୍ଗଳ ରାଷ୍ଟ୍ର ହିଁ ସାର୍ବଜନୀନ ସୁଖ ସମୃଦ୍ଧିର ସର୍ବୋତ୍ତମ ଅସ୍ତ୍ର ବୋଲି ସର୍ବଜନ ସ୍ୱୀକୃତ। କିନ୍ତୁ ଏ ପୋଥି ବାଇଗଣ ବାଡ଼ିକୁ ଆସିଲା ବେଳକୁ ରୋଗା, ପୋକରା ଓ ଅଖାଦ୍ୟ ହୋଇଯାଉଛି; ବିଶେଷ କରି ଅନୁନ୍ନତ ଦରିଦ୍ର ଦେଶଗୁଡ଼ିକରେ। ନିର୍ବାଚନ ହେଉଛି କିନ୍ତୁ ଲୋକପ୍ରତିନିଧି ବଛା ହେବା ପରିବର୍ତ୍ତେ ଦଳ ପ୍ରତିନିଧି ବଛା ଯାଉଛନ୍ତି। ସେ ପ୍ରକ୍ରିୟା ମଧ୍ୟ ସ୍ୱଚ୍ଛ, ନିର୍ମଳ ହେବା ପରିବର୍ତ୍ତେ ଦିନକୁ ଦିନ ଅଧିକରୁ ଅଧିକ ଅସ୍ୱଚ୍ଛ ଓ ଦୂଷିତ ହେବାରେ ଲାଗିଛି। ନିର୍ବାଚନକୁ କୁଆଡ଼େ ସ୍ୱଚ୍ଛ ଓ ନିର୍ମଳ କରିବାକୁ ବହୁ ପ୍ରଚେଷ୍ଟା କରାଯାଉଛି କିନ୍ତୁ ସବୁ ପ୍ରଚେଷ୍ଟାର ଶେଷଫଳ ହେଲା, 'ବାପ-ପୁଅ ରାତ୍ରି ସାରା ଅନିଦ୍ରା, ମୁଗୁରା

---

★ ଦୈନିକ "ସମ୍ବାଦ"; ୧୦ ଜାନୁଆରି ୨୦୧୨

ପଛ ମେଳା’। ଠିକ୍ ଯେପରି ମଠ, ମନ୍ଦିର, ମସ୍‌ଜିଦ୍ ଓ ଗୀର୍ଜାଗୁଡ଼ିକର ସଂଖ୍ୟା ବଢ଼ିବା ସହିତ ସମାଜରେ ହିଂସା, ଉଗ୍ରବାଦ ଓ ଦୁର୍ନୀତି ମଧ୍ୟ ବଢ଼ି ବଢ଼ି ଚାଲିଛି। ଫଳତଃ ଦଳ ପ୍ରତିନିଧିମାନଙ୍କର ଆନୁଗତ୍ୟ ଦଳର ସର୍ଦ୍ଦାରଙ୍କ ପ୍ରତି ରହୁଛି ସିନା ଲୋକମାନଙ୍କ ଆଶା, ଆକାଂକ୍ଷା ଓ ଆବେଗ ପ୍ରତି ରହୁ ନାହିଁ। ବିଭିନ୍ନ ଦଳରେ ଦଳ ସର୍ଦ୍ଦାରମାନଙ୍କ ପରିବାର ମଧ୍ୟ ସୃଷ୍ଟି ହୋଇଗଲେଣି; ସେହି ପରିବାରର ସଦସ୍ୟମାନେ ହିଁ ସର୍ଦ୍ଦାର ହେବେ, ଅନ୍ୟ କେହି ନୁହେଁ। ଦଳ ବା ଦଳ ସର୍ଦ୍ଦାରମାନଙ୍କ ପ୍ରଭୁତ୍ୱ ଅଖଣ୍ଡ ରଖିବା ପାଇଁ ଦେଶ ଲୋକସଂଖ୍ୟାର ବହୁ ଅଂଶ ଅଶିକ୍ଷିତ ଓ ଅଭାବୀ ରହିବା ଓ ସହରାଞ୍ଚଳରେ ଅଧିକରୁ ଅଧିକ ବସ୍ତି ସୃଷ୍ଟି ହେବା ଏକ ରାଜନୈତିକ ଆବଶ୍ୟକତା ହୋଇପଡ଼ିଛି।

ଦଳ ପ୍ରତିନିଧିମାନେ ଯେ ଅଧିକାଂଶ କ୍ଷେତ୍ରରେ ଲୋକପ୍ରତିନିଧି ନୁହଁନ୍ତି ଏହା ଗୋଟିଏ ଦୁଇଟି ଉଦାହରଣରୁ ସ୍ପଷ୍ଟ ହୋଇଯିବ। ପଞ୍ଚାୟତ ସ୍ତରଠାରୁ ଲୋକସଭା ଯାଏ ବିଭିନ୍ନ ସ୍ତରୀୟ ପ୍ରତିନିଧିମାନେ ରହିଥିବା ସତ୍ତ୍ୱେ କେନ୍ଦ୍ର ତଥା ରାଜ୍ୟ ସରକାରଗୁଡିକର ବିଭିନ୍ନ ତଥାକଥିତ ପ୍ରଗତିମୂଳକ ନିଷ୍ପତ୍ତି ଲୋକମାନଙ୍କ ଅବିଶ୍ୱାସ ଓ ବିରୋଧର ସମ୍ମୁଖୀନ ହେଉଛି। କେନ୍ଦ୍ର ସରକାରଙ୍କର କୁଡ଼ନକୁଲମ ଶକ୍ତି କେନ୍ଦ୍ର ପ୍ରତିଷ୍ଠା, ପଶ୍ଚିମବଙ୍ଗ ସରକାରଙ୍କର ସିଙ୍ଗୁରରେ ଟାଟା ନାନୋ କାର୍ ନିର୍ମାଣ ପ୍ରକଳ୍ପ ଓ ଓଡ଼ିଶା ସରକାରଙ୍କର ପୋସ୍କୋ, ବେଦାନ୍ତ ପ୍ରକଳ୍ପ ଇତ୍ୟାଦିକୁ ଉଦାହରଣ ଭାବେ ନିଆଯାଇପାରେ। ଏହି ଉଦାହରଣଗୁଡ଼ିକର ନ୍ୟୂନତମ ନିଷ୍କର୍ଷ ହେଲା ଯେ ପ୍ରତିନିଧିମାନେ ପ୍ରକୃତରେ ଲୋକମାନଙ୍କ ସ୍ୱାର୍ଥର ପ୍ରତିନିଧିତ୍ୱ ନ କରି ନିଜ ନିଜ ଦଳ ବା ଦେଶୀ ବିଦେଶୀ କର୍ପୋରେଟ୍‌ମାନଙ୍କର ସ୍ୱାର୍ଥସାଧନ ପାଇଁ ବ୍ୟାକୁଳ ହେଉଛନ୍ତି। ପୁଞ୍ଜିବାଦ ଉପରେ ପ୍ରତିଷ୍ଠିତ ବିଦେଶୀ ସରକାରଗୁଡ଼ିକର ପ୍ରତ୍ୟକ୍ଷ ଓ ପରୋକ୍ଷ ଧମକ ଆଗରେ କେନ୍ଦ୍ର ଓ ରାଜ୍ୟ ସରକାରଗୁଡ଼ିକ ମୁଣ୍ଡ ନୁଆଁଇବା ପ୍ରକ୍ରିୟା ମଧ୍ୟ ୧୯୯୧ର ବହୁଚର୍ଚ୍ଚିତ ଉଦାରୀକରଣ ଓ ଜଗତିକରଣ, ୨୦୦୮ର ଭାରତ, ଆମେରିକା ଆଣବିକ ଚୁକ୍ତି ସମ୍ପାଦନ ଓ ଏବେ ଚର୍ଚ୍ଚାରେ ଥିବା ଖୁଚୁରା ବ୍ୟବସାୟରେ ବିଦେଶୀ ପୁଞ୍ଜିନିବେଶ ଇତ୍ୟାଦି କ୍ଷେତ୍ରରେ ସ୍ପଷ୍ଟ ପ୍ରତୀୟମାନ। ଉଦାରୀକରଣ ଓ ଜଗତିକରଣର ଫଳସ୍ୱରୂପ ବିଗତ ଦୁଇ ଦଶନ୍ଧି ମଧ୍ୟରେ ବଡ଼ ବଡ଼ ବ୍ୟବସାୟୀ ତଥା ପ୍ରଭାବଶାଳୀ ବ୍ୟକ୍ତିବିଶେଷ ମାଲାମାଲ୍ ହେବା ସହିତ ଦରିଦ୍ର ଲୋକମାନେ ଯଥା "ପୂର୍ବଂ ତଥା ପରଂ" ଅବସ୍ଥାରେ ହିଁ ରହିଛନ୍ତି। ଅଳ୍ପସଂଖ୍ୟକ ଧନୀ ଓ ବିପୁଳ ସଂଖ୍ୟକ ଗରିବଙ୍କ ମଧ୍ୟରେ ବିଭେଦ ବହୁଗୁଣିତ ହୋଇଛି। ଏ ସବୁ କଥାରୁ ଲୋକମାନଙ୍କ ଧ୍ୟାନ ଦୂରେଇବା ଅଭିପ୍ରାୟରେ

ବିଭିନ୍ନ ପ୍ରକାର ମାଗଣା ସ୍କିମ୍, କ୍ରିକେଟ୍ ଓ ସିନେମାର ବହୁଳ ପ୍ରଚାର, ଚାକିରିଆମାନଙ୍କର ଅହେତୁକ ଦରମା ବୃଦ୍ଧି ତଥା ବିଭିନ୍ନ ପ୍ରକାର ସଂରକ୍ଷଣ, ଦୁର୍ନୀତିକୁ ପ୍ରଶ୍ରୟ ପ୍ରଦାନ ଆଦି ନିଶ୍ଚେତକଗୁଡ଼ିକର ନିରନ୍ତର ପ୍ରୟୋଗ କରିଚାଲିଛନ୍ତି ରାଜ୍ୟ ଓ କେନ୍ଦ୍ର ସରକାରଗୁଡ଼ିକ।

ଲୋକପ୍ରତିନିଧିମାନେ ଲୋକମାନଙ୍କଠାରୁ ଦୂରେଇ ଯିବାର ଆଉ ଏକ ଉଜ୍ଜ୍ୱଳ ଉଦାହରଣ ହେଉଛି ଲୋକପାଳକୁ ନେଇ ଘଟିଯାଇଥିବା ରାଜନୈତିକ ହଟ୍ଟଚମଟ। ରାଜନୈତିକ କ୍ଷେତ୍ରରେ ନିଆଯାଇଥିବା ପ୍ରତିଟି ପଦକ୍ଷେପ ପଛରେ ଥିଲା ଆନ୍ନାହଜାରେଙ୍କ ଆନ୍ଦୋଳନକୁ ମିଳିଥିବା ବିପୁଳ ଜନସମର୍ଥନ ତଥା ତା'ମାଧ୍ୟମରେ ହାତରୁ ଭୋଟ୍ ଓ ଗାଦି ଖସିଯିବାର ଭୟ। ସରକାର ବହୁ ବଳ ପ୍ରୟୋଗ କରିଛନ୍ତି ଆନ୍ଦୋଳନକୁ ଦବେଇ ଦେବାପାଇଁ ଓ ବୁଦ୍ଧି ଖଟେଇଛନ୍ତି ଲୋକପାଳ ଅନୁଷ୍ଠାନକୁ ଦୁର୍ବଳ କରିବା ପାଇଁ। କିଛି କିଛି ବରିଷ୍ଠ ସାଂସଦ କହିଲେ ଜନ ଆନ୍ଦୋଳନ ଡେମୋକ୍ରାସି ନୁହେଁ ମୋବୋକ୍ରେସି। ଆଉ କିଏ କହିଲେ ପାର୍ଲାମେଣ୍ଟ ହିଁ ସୁପ୍ରିମ୍ ଇତ୍ୟାଦି ଇତ୍ୟାଦି। ସେମାନେ କିନ୍ତୁ ଭୁଲିଗଲେ ଯେ ପ୍ରତିନିଧି ବା ପାର୍ଲାମେଣ୍ଟ ସେତେବେଳେ ଯାଏ ନିଜର ପ୍ରଭୁତ୍ୱ ବା ଅଧିକାର କଥା ଉଠାଇ ପାରିବ ଯେତେବେଳେଯାଏ ସେମାନେ ଦେଶବାସୀଙ୍କ ଇଚ୍ଛାର ବିଶ୍ୱସ୍ତ ପ୍ରତିନିଧିତ୍ୱ କରି ଚାଲିଥିବେ, ସେହି ମର୍ମରେ ମଧ୍ୟ ସେମାନେ ଶପଥବଦ୍ଧ। ସେମାନେ ଭୁଲିଗଲେ ଯେ ଦେଶବାସୀ ଓ ଦେଶବାସୀଙ୍କ ସର୍ବୋତ୍ତମ ଇଚ୍ଛାର ପ୍ରତୀକ ସ୍ୱରୂପ ସମ୍ବିଧାନର ମୌଳିକ ଢାଞ୍ଚା ହିଁ ସୁପ୍ରିମ, ନା ନିର୍ବାଚିତ ପ୍ରତିନିଧିଗଣ ନା ପାର୍ଲାମେଣ୍ଟ। ତା' ନ ହୋଇଥିଲେ ୧୯୭୫ ମସିହାରେ ଇମରଜେନ୍‌ସି ସମୟରେ ସମ୍ବିଧାନ ଉପରେ ହୋଇଥିବା ପାର୍ଲାମେଣ୍ଟର ଆକ୍ରମଣକୁ ସର୍ବୋଚ୍ଚ ନ୍ୟାୟାଳୟ ଅସିଦ୍ଧ ଘୋଷଣା କରି ନ ଥାନ୍ତେ।

ଲୋକମାନଙ୍କୁ ପଦ୍ମତୋଳା ଶୁଣେଇ ଭୁଲେଇ ଭୁତେଇ ଭୋଟ୍ ମାଧ୍ୟମରେ ଶାସନ ଅକ୍ତିଆର କରି ଗଣତନ୍ତ୍ରକୁ ବିପଥଗାମୀ କରାଇବାର ପ୍ରକ୍ରିୟା କେବଳ ଭାରତ ନୁହେଁ ପୃଥିବୀର ବହୁ ଦେଶରେ ଚାଲିଆସୁଛି। ୨୦୧୧ ମସିହା ସ୍ମରଣୀୟ ହୋଇ ରହିବ ଏଇଥିପାଇଁ ଯେ ପୃଥିବୀର ବହୁ ଦେଶରେ ତଥାକଥିତ ଗଣତାନ୍ତ୍ରିକ ଅତ୍ୟାଚାର ବିରୋଧରେ ଜନତାର ସ୍ୱର ତୀବ୍ର ହୋଇଛି। ଆରବୀୟ ବସନ୍ତ, ଚୀନ୍ ଚାଷୀମାନଙ୍କ ତୁଚ୍ଛା ଶିଳ୍ପାୟନକୁ ବିରୋଧ ତଥା ଭାରତରେ ଲୋକପାଳ ଆନ୍ଦୋଳନ ଇତ୍ୟାଦି ବିଭିନ୍ନ ରଙ୍ଗର ରାଜନୈତିକ ଶଠତା, ଅନ୍ୟାୟ, ଅନୀତି ଓ ଅସମତା ବିରୋଧରେ ସାଧାରଣ ଜନତାର ଉତ୍ତରିତ ଆନ୍ତର୍ଜାତିକ ସ୍ୱରର ଛୋଟ ଛୋଟ ପ୍ରତୀକ ମାତ୍ର। ସେହି ସ୍ୱରର

ଝଡ଼ରେ ଟ୍ୟୁନିସିଆର ୨୩ ବର୍ଷ ଧରି ଶାସନ କରୁଥିବା ରାଷ୍ଟ୍ରପତି ଆବେଦିନ୍ ବେନ୍ ଆଲି, ମିଶର୍‌ର ଗତ ୩୦ ବର୍ଷ ରାଷ୍ଟ୍ରପତି ରହିଥିବା ରାଷ୍ଟ୍ରପତି ହୋସ୍‌ନି ମୁବାରକ ଓ ଲିବ୍ୟାର ଶାସକ କର୍ନେଲ୍ ଗଦ୍ଦାଫି ଗାଦିଚ୍ୟୁତ ହେଲେ, ୟେମେନ୍‌ର ରାଷ୍ଟ୍ରପତି ଅଲି ଅବଦୁଲ୍ଲା ସାଲେ ଫେବ୍ରୁଆରି ୨୦୧୧ ସୁଦ୍ଧା ଗାଦି ଛାଡ଼ିବାକୁ ଚୁକ୍ତିବଦ୍ଧ ହେଲେ, ସୁଦାନ୍‌ର ରାଷ୍ଟ୍ରପତି ଓମାର୍ ଆଲ୍ ବସିର୍ ତାଙ୍କର ଚଳିତ ଶାସନ କାଳ ୨୦୧୫ ସରିବା ପରେ ଆଉ ନିର୍ବାଚନ ଲଢ଼ିବେ ନାହିଁ ବୋଲି ପ୍ରତିଶ୍ରୁତି ଦେଲେ ଓ ଜୋର୍ଡ଼ାନର ରାଜା ଅବଦୁଲ୍ଲା ଜନଅସନ୍ତୋଷକୁ ସମ୍ମାନ ଜଣାଇ ଦୁଇ ଦୁଇଟି ସରକାରକୁ ବରଖାସ୍ତ କଲେ । ଏହିସବୁ ଘଟଣାର ପ୍ରଚ୍ଛଦପଟରେ ରାଷ୍ଟ୍ର ଶାସନରେ ଜନତାର ସ୍ୱର ତା'ର ସ୍ୱାଭାବିକ କେନ୍ଦ୍ରସ୍ଥଳକୁ ଫେରି ଆସିବାର ଆଶା ଯେ ଉଦ୍ରେକ ହେଉଛି ଏହା କହିବା ନିଷ୍ପ୍ରୟୋଜନ । ଲକ୍ଷ୍ୟ ହାସଲ ନିଶ୍ଚୟ ବହୁତ ଦୂର କିନ୍ତୁ ଠିକଣା ରାସ୍ତାରେ ଯାତ୍ରା ଆରମ୍ଭ ମଧ୍ୟ ଛୋଟ କଥା ନୁହେଁ ।

କେବଳ ରାଜନୈତିକ ସ୍ତର ନୁହେଁ, ଅର୍ଥନୈତିକ କ୍ଷେତ୍ରକୁ ମଧ୍ୟ ଏହି ପ୍ରତିବାଦ ଓ ପ୍ରତିରୋଧର ସ୍ୱର ବିଚ୍ଛୁରିତ ହୋଇଛି । ଆଜି ଯେହେତୁ ଅର୍ଥନୀତି ହିଁ ରାଜନୈତିକ ଶକ୍ତି ଆହରଣ ଓ ସଂରକ୍ଷଣର ମୁଖ୍ୟ ଆୟୁଧ ହୋଇଛି ଓ ପୃଥିବୀ ସାରା ଶିକ୍ଷାର ପ୍ରସାର ଯୋଗୁଁ ଅଧିକରୁ ଅଧିକ ସାଧାରଣ ଲୋକେ ଏକଥା ହୃଦୟଙ୍ଗମ କରିପାରୁଛନ୍ତି ପୁଞ୍ଜିବାଦୀ ଅର୍ଥନୈତିକ ବ୍ୟବସ୍ଥା ବିରୋଧରେ ସ୍ୱର ଉଠିବା ସ୍ୱାଭାବିକ ଓ ପ୍ରତ୍ୟାଶିତ । ଲୋକମାନେ ଧୀରେ ଧୀରେ ବୁଝି ପାରୁଛନ୍ତି ଯେ ଇତିହାସରେ ରାଜା, ଜମିଦାରମାନେ ପ୍ରଜାମାନଙ୍କୁ ଦାସତ୍ୱ ବନ୍ଧନରେ ବାନ୍ଧିବା ଭଳି ଆଫ୍ରିକା ଓ ଆମେରିକାରେ ଧନୀ ଗୋରା ଲୋକେ କୃଷ୍ଣକାୟମାନଙ୍କୁ କ୍ରୀତଦାସ ଭାବେ ଶୋଷଣ କଲା ଭଳି, ଆଧୁନିକ ସମୟରେ ବହୁ ଗଣତନ୍ତ୍ର-ମାର୍କା ତଥା ସ୍ୱେଚ୍ଛାଚାରୀ ରାଷ୍ଟ୍ରରେ ପଞ୍ଚାୟତ ସ୍ତରଠାରୁ ଆନ୍ତର୍ଜାତିକ ସ୍ତର ଯାଏ ବଡ଼, ପ୍ରଭାବଶାଳୀ ଓ ଧନୀ, ସାନ, ପ୍ରଭାବଶୂନ୍ୟ ଓ ଦରିଦ୍ରକୁ ଶୋଷଣ କରିବାର ଷ୍ଟାଣ୍ଡାର୍ଡ଼ ମଡ଼େଲ୍‌ଟି କ୍ରିୟାଶୀଳ ରହିଛି । ଗଣତନ୍ତ୍ର ଲୋକମାନଙ୍କର, ଲୋକମାନଙ୍କ ଦ୍ୱାରା ଓ ଲୋକମାନଙ୍କ ପାଇଁ ହେବାର ଉଚ୍ଚ ଆଦର୍ଶ ଯେପରି ଭୂପତିତ ହୋଇଛି । ପୁଞ୍ଜିବାଦକୁ ପାଥେୟ କରି ସର୍ବଜନୀନ ସୁଖ ସମୃଦ୍ଧି ସୃଷ୍ଟି କରିବାର ସ୍ୱପ୍ନ ମଧ୍ୟ ଭାଙ୍ଗିଯାଇଛି । ଫଳସ୍ୱରୂପ ପୁଞ୍ଜିବାଦୀ ରାଷ୍ଟ୍ରମାନେ ହିଁ ବିଶେଷ କ୍ଷତିଗ୍ରସ୍ତ ହୋଇଛନ୍ତି । ଆହତ ବାଘ ଭଳି ସେମାନେ ବର୍ତ୍ତମାନ ଏସିଆ, ଆଫ୍ରିକା ଓ ଦକ୍ଷିଣ ଆମେରିକାର ଦରିଦ୍ର ଦେଶଗୁଡ଼ିକୁ ସେମାନଙ୍କ ପୁଞ୍ଜିବାଦୀ ବଜାର ଭିତରକୁ ଟାଣିବା ପାଇଁ ପ୍ରବଳ ଉଦ୍ୟମ ଜାରି କରୁଛନ୍ତି । ଭାରତ ଭଳି ଦୁର୍ବଳ, ଦୁର୍ନୀତିଗ୍ରସ୍ତ ଓ ଦୂରଦୃଷ୍ଟି ବିହୀନ

ଦେଶଗୁଡ଼ିକର ସରକାର ସବୁ ଏ ଚକ୍ରାନ୍ତର ସହଜ ଶିକାର ହୋଇ ଦେଶର ଶିକ୍ଷା, ଅର୍ଥନୀତି, କୃଷି ଭଳି ଗୁରୁତ୍ୱପୂର୍ଣ୍ଣ ଦିଗଗୁଡ଼ିକୁ ଦିଗହରା କରି ଦେଉଛନ୍ତି। ସ୍ୱାବଲମ୍ବନ, ସ୍ୱରାଜ ଓ ସ୍ୱାଭିମାନ ଦେଶ ରାଜନୀତି ଓ ଅର୍ଥନୀତିର ମୁଖ୍ୟ ଧାରା ହୋଇ ରହୁ ନାହିଁ; ବରଂ ଅପାଂକ୍ତେୟ ହୋଇଯାଉଛି।

ପୃଥିବୀର ସର୍ବଶ୍ରେଷ୍ଠ ପୁଞ୍ଜିବାଦୀ ରାଷ୍ଟ୍ର ଯୁକ୍ତରାଷ୍ଟ୍ର ଆମେରିକାରେ ଲୋକମାନେ ମଧ୍ୟ ପାଶ୍ଚାତ୍ୟ ଜଗତର ରାଷ୍ଟ୍ର ପରିଚାଳନାରେ ପୁଞ୍ଜିବାଦ ତଥା ପୁଞ୍ଜିପତିମାନଙ୍କର ସୀମାହୀନ ପ୍ରାଧାନ୍ୟ ବିରୋଧରେ ସ୍ୱର ଉତ୍ତୋଳନ କରିବା ଆରମ୍ଭ କରିଛନ୍ତି। ଆନ୍ତର୍ଜାତିକ ସେୟାର ବଜାରର ସର୍ବଶ୍ରେଷ୍ଠ ପ୍ରତୀକ 'ୱାଲ୍‌ଷ୍ଟ୍ରିଟ୍' ହୋଇଥିବାରୁ ସେମାନଙ୍କ ପ୍ରତିବାଦର ସ୍ଲୋଗାନ୍ ହୋଇଛି 'ଅକୁପାଏ ଦି ୱାଲ୍‌ଷ୍ଟ୍ରିଟ୍' ଅର୍ଥାତ୍ 'ୱାଲ୍‌ଷ୍ଟ୍ରିଟ୍ ଦଖଲ କର'। ସାମ୍ରାଜ୍ୟବାଦ ଯୁଗର ରାଜଧାନୀ ଲଣ୍ଡନରେ ମଧ୍ୟ ଏ ପ୍ରତିବାଦର ସ୍ୱର ପ୍ରତିଧ୍ୱନିତ ହୋଇଛି। 'ସମାଜ ଓ ପୃଥିବୀ ପୁର୍ନଗଠନର ଦାୟିତ୍ୱ ଆମେ ଜନସାଧାରଣ ଆମର ସାର୍ବଭୌମତ୍ୱ ଜାହିର କରି ନିଜ ହାତକୁ ନେଉଛୁ', ଏହାହିଁ ଏହି ଜନଜାଗରଣର ମୌଳିକ ଘୋଷଣାନାମା। ସାଂପ୍ରତିକ ପୃଥିବୀର ଜଣେ ଶ୍ରେଷ୍ଠ ଚିନ୍ତାନାୟକ ନୋଆମ୍ ଚମ୍‌ସ୍କି ମଧ୍ୟ ପୃଥିବୀପୃଷ୍ଠରେ ଗଣତନ୍ତ୍ରର ମହାରକ୍ଷାକାରୀ ଭାବେ ଡିଣ୍ଡିମ ପିଟୁଥିବା ଯୁକ୍ତରାଷ୍ଟ୍ର ଆମେରିକା ନିଜର ପୁଞ୍ଜିବାଦୀ ସ୍ୱାର୍ଥ ଦାୟରେ ପ୍ରକୃତ ଗଣତନ୍ତ୍ରର ସ୍ୱରକୁ କଣ୍ଠରୋଧ କରୁଥିବାର ଅଭିଯୋଗ କରିଛନ୍ତି। ପ୍ରତ୍ୟେକଟି ଘଟଣା ସ୍ୱ ସ୍ୱ କ୍ଷେତ୍ରରେ ଯେତେ କ୍ଷୀଣ ପ୍ରତୀକଧର୍ମୀ ହେଲେ ମଧ୍ୟ ସେମାନଙ୍କ ସମ୍ମିଳିତ ଉଷ୍ମତାରୁ ମଣିଷ ଜାତି ପାଇଁ ଯେ ଗୋଟିଏ ସୁନ୍ଦର ଆସନ୍ତାକାଲି ସୃଷ୍ଟି ନ ହେବ କିଏ କହିବ। ସେହି ଭାବନା ହିଁ ବୋଧହୁଏ 'ପ୍ରତିରୋଧ'କୁ ଦେଇଛି ଗତ ବର୍ଷର 'ଶ୍ରେଷ୍ଠ ବ୍ୟକ୍ତିତ୍ୱ'ର ପରିଚୟ।

ଉଭୟ ଶଠତାପୂର୍ଣ୍ଣ ରାଜନୀତି ଓ ପ୍ରଚାରସର୍ବସ୍ୱ ଅର୍ଥନୀତି ବିରୋଧରେ ଫୁଟି ଉଠୁଥିବା ମୁକ୍ତିକାମୀ ମଣିଷର ସ୍ୱର ହିଁ ଦେଉଛି ୨୦୧୧ ମସିହାକୁ ଏକ ଅସାଧାରଣ ବ୍ୟକ୍ତିତ୍ୱ ଓ ବିଭୂତି; ସୃଷ୍ଟି କରୁଛି ଆଶାର ଝଲକ। ସେହି ଆଶା ବୈତରଣୀର ପ୍ରବହମାନତାରେ ପ୍ରାଣପ୍ରଦାୟିନୀ ଶକ୍ତି ଭରି ଦେବାରେ ହୁଏତ ରହିଛି ଭବିଷ୍ୟତର ବହୁ ଅପେକ୍ଷିତ ସାର୍ଥକତା।

□□□

# ୨୦୧୪ - ମହୋତ୍ସବ ନା ନିର୍ବାଚନ ?

ପାଞ୍ଚ ବର୍ଷ ପରେ ପୁଣି ଥରେ ଲୋକସଭା ନିର୍ବାଚନ ବିଗୁଲ୍ ବାଜିଛି । ତା' ସହିତ ଯୋଡ଼ି ହୋଇଛି ଓଡ଼ିଶା ସମେତ ଆନ୍ଧ୍ର ଓ ସିକିମ୍ ରାଜ୍ୟର ବିଧାନସଭା ନିର୍ବାଚନ । ଦେଶର ପାଖାପାଖି ବୟାଅଶୀ କୋଟି ନାଗରିକ ଲୋକସଭାକୁ ସେମାନଙ୍କ ପ୍ରତିନିଧି ବାଛିବେ; ପନ୍ଦର ହଜାର କୋଟି ପାଖାପାଖି ଟଙ୍କା ଖର୍ଚ୍ଚ ହେବ । ଏହି ପ୍ରତିନିଧିମାନେ ସମ୍ବିଧାନ ଅନୁମୋଦିତ ଉପାୟରେ ଜନକଲ୍ୟାଣ ଲକ୍ଷ୍ୟରେ ଦେଶର ଶାସନ ବ୍ୟବସ୍ଥା ପରିଚାଳନା କରିବେ । ଯେଉଁ ଗଣତାନ୍ତ୍ରିକ ବ୍ୟବସ୍ଥାକୁ ଲିଙ୍କନ୍‌ଙ୍କ ବିଖ୍ୟାତ ଉକ୍ତି-ଲୋକମାନଙ୍କର, ଲୋକମାନଙ୍କ ଦ୍ୱାରା, ଲୋକମାନଙ୍କ ପାଇଁ-ଦ୍ୱାରା ସଂଜ୍ଞାୟିତ କରାଯାଏ ତାହା ଆମ ସାଧାରଣତନ୍ତ୍ର ବ୍ୟବସ୍ଥା ଭିତରେ "ସମ୍ବିଧାନର, ସମ୍ବିଧାନ ଦ୍ୱାରା ଓ ସମ୍ବିଧାନ ପାଇଁ" ରୂପରେ ଆଖ୍ୟାୟିତ ହୋଇଯାଏ । କାରଣ ସମ୍ବିଧାନ ହିଁ ଲୋକମାନଙ୍କର ଅଧିକାର, ଦାୟିତ୍ୱ ଓ ଆଶାଆକାଂକ୍ଷାର ସର୍ବୋଚ୍ଚ ମୌଳିକ ଇସ୍ତାହାର ଭାବେ ଗୃହୀତ । ଦେଶବାସୀଙ୍କ ସାର୍ବଭୌମତ୍ୱର ବିଭୂତିରେ ହିଁ ସମ୍ବିଧାନର ସାର୍ବଭୌମତ୍ୱ ବିଭୂଷିତ । ତାହା ହିଁ ଦେଇଛି ସମ୍ବିଧାନର ମୌଳିକ ଢାଞ୍ଚାକୁ ଅପରିବର୍ତ୍ତନୀୟତାର ମୋହର ।

ରୋମ୍, ଗ୍ରୀସ୍, ଇଂଲଣ୍ଡ, ଫ୍ରାନ୍ସ, ଆମେରିକା ବାଟ ଦେଇ ଓ ପ୍ଲାଟୋ, ଆରିଷ୍ଟୋଟଲ୍‌ଙ୍କଠାରୁ ଆରମ୍ଭ କରି ଜନ୍ ଲକ୍, ମଣ୍ଟେସ୍କ୍ୟୁ, ଜନ୍ ଷ୍ଟୁଆର୍ଟମିଲ୍, ରୁଷୋ, ଭୋଲଟେୟାର, ଜେମ୍‌ସ ମାଡ଼ିସନ୍, ଜନ୍ ଆଡ଼ାମ୍‌ସ, ଜାଫରସନ୍, ଜନ୍ ଡେୱେ ଓ ଲିଙ୍କନ୍ ପ୍ରଭୃତିଙ୍କ ଚିନ୍ତନ ଆଧାରରେ ଗଣତାନ୍ତ୍ରିକ ତଥା ସାଧାରଣତାନ୍ତ୍ରିକ ଶାସନ ବ୍ୟବସ୍ଥା ତାତ୍ତ୍ୱିକ ପରିପକ୍ୱତା ଲାଭ କରିଛି । ପୂର୍ବ ପ୍ରଚଳିତ କ୍ରୀତଦାସ ପ୍ରଥା ତଥା ଶିଳ୍ପ-ବିପ୍ଳବୋତ୍ତର ୟୁରୋପରେ ଶ୍ରମିକ ଶ୍ରେଣୀ ଉପରେ ସଂଘଠିତ ଅମାନବୀୟ ଶୋଷଣ ଓ ଅତ୍ୟାଚାର ଦ୍ୱାରା ବ୍ୟଥିତ ହୋଇ ଏକ ସମତାଭିତ୍ତିକ ସମାଜ ଗଠନ ସ୍ୱପ୍ନ ନେଇ ମାର୍କ୍ସ, ଏଙ୍ଗେଲ୍‌ସ, ଲେନିନ୍, ମାଓ ସେ ତୁଙ୍ଗ୍ ଆଦି ଚିନ୍ତାନାୟକମାନେ

---

★ ଦୈନିକ "ସମ୍ବାଦ"; ୩୧ ମାର୍ଚ୍ଚ ୨୦୧୪

ଶୋଷଣମୁକ୍ତ ଅର୍ଥନୀତି ଆଧାରିତ ସାମାଜିକ ତଥା ପ୍ରାଶାସନିକ ତତ୍ତ୍ୱ ଉପସ୍ଥାପନ କଲେ। ମଣିଷର ଦୀର୍ଘମିଆଦୀ ସୁଖ, ଶାନ୍ତି, ସମୃଦ୍ଧିର ଲକ୍ଷ୍ୟ ନେଇ କେତେ ଦେଶ ଗଣତାନ୍ତ୍ରିକ ରାଜନୀତି ତଥା ପୁଞ୍ଜିବାଦଭିତ୍ତିକ ଶାସନ ବ୍ୟବସ୍ଥାକୁ ଗ୍ରହଣ କରି ନେଲା ବେଳେ ଆଉ କେତେକ ସାମ୍ୟବାଦୀ ଅର୍ଥନୀତିଭିତ୍ତିକ ଶାସନ ବ୍ୟବସ୍ଥା ପ୍ରଚଳନ କଲେ। କିନ୍ତୁ ବିଡ଼ମ୍ବନା ଯେ ସମୟ ଗଡ଼ିବା ସହ ତାତ୍ତ୍ୱିକ ଉତ୍କର୍ଷ ସତ୍ତ୍ୱେ ନେତୃବୃନ୍ଦଙ୍କ ଚାରିତ୍ରିକ ତଥା ଚିନ୍ତାଗତ ଦୁର୍ବଳତା ଯୋଗୁଁ ସାମ୍ୟବାଦୀ ଶାସନ ବ୍ୟବସ୍ଥା ହାତଗଣତି କେତୋଟି ଦେଶ ବ୍ୟତୀତ ଅନ୍ୟ ଦେଶରେ ଭାଙ୍ଗି ପଡ଼ିଲା। ମୋଟାମୋଟି ଭାବରେ ପୃଥିବୀରେ ପୁଞ୍ଜିବାଦ ପ୍ରଣୋଦିତ ବଜାରଭିତ୍ତିକ ଗଣତାନ୍ତ୍ରିକ ଶାସନବ୍ୟବସ୍ଥାର ଏକଛଟିଆ ରାଜୁତି ଆରମ୍ଭ ହୋଇଯାଇଛି ବିଂଶ ଶତାବ୍ଦୀର ଶେଷ ଦଶକଠାରୁ। ଏହାର ନେତୃତ୍ୱ ନେଇଛି ଯୁକ୍ତରାଷ୍ଟ୍ର ଆମେରିକା। ଭାରତ ମଧ୍ୟ ସେହି ସମୟରୁ ଏହି ଗୋଷ୍ଠୀର ସଦସ୍ୟତା ଗ୍ରହଣ କରିନେଇଛି। 'ପୁଞ୍ଜିନିବେଶ' ଓ 'ଅର୍ଥନୈତିକ ଅଭିବୃଦ୍ଧି' ଭଳି ସ୍ଲୋଗାନଗୁଡ଼ିକ ହୋଇଯାଇଛି ରାଜନୈତିକ ବ୍ୟବସ୍ଥାର ଜପାମାଳି, ମୁଖ୍ୟ ବିଜ୍ଞାପନ। ଯଦିଓ ନିରପେକ୍ଷ ଅଧ୍ୟୟନରୁ ଜଣାପଡୁଛି ଯେ ଦେଶର ବାର୍ଷିକ ଆୟର ମାତ୍ର ଶତକଡ଼ା ୧୫ ଭାଗ ବୃହତ୍ ପୁଞ୍ଜିନିବେଶରୁ ଆସୁଥିବାବେଳେ ୪୫ ଭାଗ କ୍ଷୁଦ୍ର ଉଦ୍ୟୋଗରୁ ମିଳୁଛି। ସେହିଭଳି ସେବା କ୍ଷେତ୍ରରେ ଆଇଟି କମ୍ପାନିମାନେ ଦେଶ ଆୟର ମାତ୍ର ଶତକଡ଼ା ପାଞ୍ଚ ଭାଗ ଓ ବିଦେଶୀ ପୁଞ୍ଜିନିବେଶ ମାଧ୍ୟମରେ ୮ ପ୍ରତିଶତ ଆୟ ହେଉଥିବାବେଳେ ପଞ୍ଚାଅଶୀ ଭାଗ ସେବା ସାମାଜିକ-ନିରାପତ୍ତା ବଞ୍ଚିତ ଆତ୍ମ ନିଯୁକ୍ତି କ୍ଷେତ୍ରରୁ ହିଁ ମିଳୁଛି। ଶାସନର ଦୃଷ୍ଟି କିନ୍ତୁ କେବଳ କର୍ପୋରେଟ୍ ସଂସ୍ଥାଗୁଡ଼ିକ ଉପରେ ନିବଦ୍ଧ। ଆବଶ୍ୟକ ସ୍ଥଳେ ନୀତି-ରହିତ ନିୟମ ପ୍ରଣୟନ କରି ସେମାନଙ୍କ ସ୍ୱାର୍ଥର ସୁରକ୍ଷା କରାଯାଉଛି। ଏହି ଉଭଟ ଶାସନ ଓ ଅର୍ଥନୀତି ଉଦ୍ଭବ କରୁଛି ଅଗଣିତ ମହାଦୁର୍ନୀତି, ଅଦମ୍ୟ ମୁଦ୍ରାସ୍ଫୀତି ଓ କୃଷକ ଆତ୍ମହତ୍ୟାର କରୁଣ ପରିସ୍ଥିତି।

ବିଭିନ୍ନ ଦେଶର ଧର୍ମ, ଚଳଣି, ସଂସ୍କୃତି, ପରମ୍ପରା ଓ ପରିବେଶର ଭିନ୍ନତାକୁ ନେଇ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ମଧ୍ୟ ଭିନ୍ନ ଭିନ୍ନ ରୂପ ନେଇଛି। ଉତ୍ତରକୋରିଆ, ଆଲଜେରିଆ, ଇଥିଓପିଆ ଆଦି ଦେଶଗୁଡ଼ିକରେ ଗଣତାନ୍ତ୍ରିକ ବିଧି ବ୍ୟବସ୍ଥାର ନ୍ୟୂନତମ ନିଶାଣ ନ ଥାଇ କେବଳ ଗଣତନ୍ତ୍ରର ମାର୍କା ରହିଛି। 'World forum on Democracy' ଅନୁସାରେ ପୃଥିବୀର ୧୯୨ଟି ଦେଶ ମଧ୍ୟରୁ ୧୨୦ଟି ଦେଶରେ ନିର୍ବାଚନ ଭିତ୍ତିକ ଗଣତନ୍ତ୍ର ପ୍ରଚଳିତ ଅଛି। ଏହି ୧୨୦ଟି ଦେଶ ମଧ୍ୟରୁ ବ୍ୟକ୍ତି ସ୍ୱାଧୀନତା ଓ

ନାଗରିକ ଅଧିକାର ସୁରକ୍ଷା ତଥା ନିୟମର ଶାସନରେ ସ୍ୱଚ୍ଛତା ଆଧାରରେ ମାତ୍ର ପଞ୍ଚାଅଶୀଟି ଦେଶରେ ଉଦାର ଗଣତନ୍ତ୍ର ପଚଳିତ ଥିବାର ଫ୍ରିଡ଼ମ୍ ହାଉସ୍ ସଂସ୍ଥାର ଆକଳନରୁ ଜଣାପଡ଼େ। ପୁଣି ଏହି ପଞ୍ଚାଅଶୀଟି ଦେଶ ମଧ୍ୟରୁ ମାତ୍ର ପଚିଶଟି ଦେଶରେ ପୂର୍ଣ୍ଣ-ଗଣତନ୍ତ୍ର ପ୍ରତିଷ୍ଠିତ ହୋଇଥିବା କଥା ଗଣତନ୍ତ୍ର-ସୂଚନାଙ୍କ (Democracy Index) ଗଣନାରୁ ସୂଚିତ ହୋଇଥାଏ। ଅବଶିଷ୍ଟ ଦେଶଗୁଡ଼ିକରେ ଏକ ନିକୃଷ୍ଟମାନର ଗଣତନ୍ତ୍ର ବା 'Flawed Democracy' ପ୍ରଚଳିତ ଥିବା କୁହାଯାଏ। ଆମ ଦେଶ ଭାରତ ଏହି ଦେଶମାନଙ୍କ ମଧ୍ୟରୁ ଗୋଟିଏ।

ଭାରତର ଗଣତନ୍ତ୍ର ଯେ ନିକୃଷ୍ଟ ମାନର ଏହାର ପ୍ରମାଣ ପାଇଁ ଆମକୁ କୌଣସି ବିଦେଶୀ ସଂସ୍ଥାର ସର୍ବେକ୍ଷଣର ଆଶ୍ରୟ ନେବାର ଆବଶ୍ୟକତା ନାହିଁ; ଏ ତ ପ୍ରତ୍ୟେକ ସଚେତନ ନାଗରିକର ଅଙ୍ଗେନିଭା କଥା। ଏଠି ନିର୍ବାଚନ ହୁଏ ସତ କିନ୍ତୁ ନିର୍ବାଚନ ଜିତିବା ପାଇଁ ପ୍ରାର୍ଥୀମାନଙ୍କର ଶିକ୍ଷା, ଚରିତ୍ର, ସମାଜବଦ୍ଧତା ବା ଦେଶ ଭକ୍ତି ଆଦିର ଦରକାର ପଡ଼େ ନାହିଁ; ବେଶୀ ଦରକାର ପଡ଼େ ପ୍ରଭାବଶାଳୀ ଦଳ ବା ପରିବାରର ସଦସ୍ୟତା, ପଇସା ଦେଇ ଭୋଟ୍ କିଣିବାର ଦକ୍ଷତା ଓ ନିର୍ବାଚନ ପ୍ରକ୍ରିୟାରେ ଦୁର୍ନୀତି ଅବଲମ୍ବନର କୌଶଳ। ତା' ସହିତ ନୂଆ କରି ଯୋଡ଼ି ହୋଇଛି ଇଲେକ୍‌ଟ୍ରୋନିକ୍ସ ଭୋଟିଂ ମେସିନ୍‌ର ପରିବର୍ତ୍ତନୀୟ ସଫ୍‌ଟୱେୟାର, ହାର୍ଡ଼ୱେୟାର ଇତ୍ୟାଦିରେ ଜାଲିଆତିକୁ ନେଇ ଭୟ ଯାହା ଦୀର୍ଘ ସମୟ ଧରି ଚାଲୁଥିବା ନିର୍ବାଚନ ପ୍ରକ୍ରିୟା ମଧ୍ୟରେ ବୃଦ୍ଧି ପାଇବାର ସମ୍ଭାବନା ଅଧିକ। ଅଧିକନ୍ତୁ ଭୋଟଗ୍ରହଣ କେନ୍ଦ୍ରରେ ଗୋଟିଏ ଦୈନନ୍ଦିନ ଚଳଣିରେ ଅପରିଚିତ ମେସିନ୍‌ର ବ୍ୟବହାର ମଧ୍ୟ ଗାଁ-ଗଣ୍ଡାର ବହୁ ସଂଖ୍ୟକ ଭୋଟ୍‌ଦାତାମାନଙ୍କୁ ଅସୁବିଧାରେ ପକାଇଥାଏ। କେବଳ ଏହି ମେସିନ୍ ବ୍ୟବହାରର ଅସୁବିଧା ତଥା ଭୋଟ୍ ଗଣତିରେ ସ୍ୱଚ୍ଛତାର ଅଭାବ ଦୃଷ୍ଟିରୁ ଜର୍ମାନିର ସାମ୍ବିଧାନିକ କୋର୍ଟ ନିର୍ବାଚନରେ ମେସିନ୍ ପ୍ରଚଳନକୁ ମନା କରିଦେଲେ। କିନ୍ତୁ ଜର୍ମାନି ତୁଳନାରେ ଆମ ଲୋକମାନଙ୍କର ସାକ୍ଷରତାହାର ଓ ଯନ୍ତ୍ରପାତି ବ୍ୟବହାରର ଦକ୍ଷତା ଯଥେଷ୍ଟ ମାତ୍ରାରେ କମ୍ ହୋଇଥିଲେ ମଧ୍ୟ ଆମେ ଭୋଟିଂ ମେସିନ୍ ବ୍ୟବହାରକୁ ଆପଣେଇ ନେଇଛୁ। ନିର୍ବାଚନ କମିସନ୍ ମେସିନ୍ ବ୍ୟବହାରର ତ୍ରୁଟିଶୂନ୍ୟତା ଉପରେ ଯେତେ ପ୍ରତିଶ୍ରୁତି ଦେଲେ ମଧ୍ୟ ଭାରତବର୍ଷରେ ବିଭିନ୍ନ ଉଚ୍ଚ ପଦପଦବି ତଥା ସାମ୍ବିଧାନିକ ପଦପଦବିରେ ନିଯୁକ୍ତି ପଛରେ ଥିବା କାରନାମା ଲୋକଲୋଚନକୁ ଆସିବା ପରେ ପ୍ରତ୍ୟେକ ସଂସ୍ଥା ସେମାନଙ୍କ ବିଶ୍ୱସନୀୟତା ଅନ୍ତେ ବହୁତେ ହରାଇଛନ୍ତି। ନିର୍ବାଚନ କମିସନ୍ ମଧ୍ୟ ସେଥିରୁ ବାଦ୍ ପଡ଼ି ନାହାନ୍ତି। କିଛି ବର୍ଷ ତଳେ ଖୋଦ୍ ମୁଖ୍ୟ ନିର୍ବାଚନ

କମିସନ୍‌ର ଅନ୍ୟ ଜଣେ କମିସନ୍‌ରଙ୍କ ନାଁରେ କିଛି ପ୍ରତିକୂଳ ମନ୍ତବ୍ୟ ଦେଇ ରାଷ୍ଟ୍ରପତିଙ୍କୁ ଲେଖିଥିଲେ ମଧ୍ୟ ସେ ମହାଶୟ ମୁଖ୍ୟ ନିର୍ବାଚନ କମିସନର ହେବା ଓ ପରବର୍ତ୍ତୀ ଲୋକସଭା ନିର୍ବାଚନ ପରିଚାଳନା କରିବା ନିର୍ବାଚନ କମିସନ୍ ରାଜନୈତିକ ପ୍ରଭାବମୁକ୍ତ ନ ଥିବାର ଗୋଟିଏ ଜ୍ୱଳନ୍ତ ଉଦାହରଣ। ଏହିଭଳି ଛୋଟବଡ଼ ଅସଂଗତି ଯୋଗୁଁ ଆମ ନିର୍ବାଚନ ପ୍ରକ୍ରିୟା ଏକ ନିର୍ମଳ ପ୍ରକ୍ରିୟା ଭାବରେ ପରିଗଣିତ ହେଉ ନାହିଁ। ଅସାଧୁ ନିର୍ବାଚନ ପ୍ରକ୍ରିୟା ଉପରେ ପ୍ରତିଷ୍ଠିତ ହୋଇଛି ଆମର ଦୁର୍ବଳ ଗଣତନ୍ତ୍ର। ଦୁର୍ବଳ ଗଣତନ୍ତ୍ର, ନିୟମ ପ୍ରଣୟନ ବ୍ୟବସ୍ଥା, ଶାସନ ବ୍ୟବସ୍ଥା, ବିଚାର ବ୍ୟବସ୍ଥା ତଥା ସମ୍ବାଦ ପରିବେଷଣ ବ୍ୟବସ୍ଥାଗୁଡ଼ିକୁ ତୃଣମୂଳ ସ୍ତରରେ ଲୋକମାନଙ୍କଠାରୁ ଦୂରେଇ ଦେବାରେ ଲାଗିଛି। ସମସ୍ତେ ଲୋକମାନଙ୍କ ପାଇଁ କାନ୍ଦିବାର ଅଭିନୟ କରୁଛନ୍ତି କିନ୍ତୁ କାହାରି ମନରେ କୋହ ନାହିଁ କି ଆଖିରେ ଲୁହ ନାହିଁ। ବରଂ ଲୋକମାନଙ୍କୁ ଭୁଆଁ ବୁଲାଇ ପାରୁଥିବାରୁ ମନରେ ଅସମ୍ଭବ ଅବ୍ୟକ୍ତ ଆତ୍ମସନ୍ତୋଷ ଅଛି; 'କୈକେୟୀ-ଶକୁନି'ର ଖୁସି ଅଛି। ସେଇଥିପାଇଁ ତ ଆନ୍ନା ହଜାରେଙ୍କ ଜନଲୋକପାଳ ବିଲ୍ ପାଳନରେ ଥିଲା ଏତେ ସର୍ବଦଳୀୟ କୁଣ୍ଠା। ଛଳନା ଓ ଚକ୍ରାନ୍ତମୟ ରାଜନୀତି ପ୍ରସୂତ ବ୍ୟକ୍ତି ସ୍ୱାର୍ଥ, ଦୁର୍ନୀତି ଓ ବ୍ୟାବସାୟିକ ମନୋଭାବର ବିଷାକ୍ତ ବାତାବରଣ ଆଜି ସମାଜକୁ ବିଷମ ରୁଗ୍ଣତାରେ ଭରି ଦେଇଛି। ପାରିବାରମାନେ ଗୋଳିଆ ପାଣିରୁ ବେଶ୍ ଫାଇଦା ଉଠାଉଥିଲେ ମଧ୍ୟ ବେଳେବେଳେ ନ ପାରିବାର ଲୋକଙ୍କ ଭଳି ଶ୍ୱାସରୁଦ୍ଧ ହେଉଥିବାର ରୋଚକ ଦୃଶ୍ୟ ମଧ୍ୟ ଦେଖିବାକୁ ମିଳୁଛି ମୁଖ୍ୟତଃ ସର୍ବୋଚ୍ଚ ନ୍ୟାୟାଳୟଙ୍କ ଛାଞ୍ଚୁଣି ମାଡ଼ରେ। କିନ୍ତୁ ସେ ପର୍ଯ୍ୟନ୍ତ ଏମାନେ ଲୋକଙ୍କ ରକ୍ତରେ ହୋରି ଖେଳି ଚାଲିଥାଆନ୍ତି।

ଗୋଟିଏ ଶୁଦ୍ଧ ଗଣତାନ୍ତ୍ରିକ ବ୍ୟବସ୍ଥାର ଅଭାବରେ ପ୍ରତିନିଧିମାନଙ୍କର 'ପ୍ରତିନିଧିତ୍ୱ' ମୋଟାମୋଟି ଭାବରେ ହାତ ଟେକି ନିଜନିଜର ଦରମା, ଭତ୍ତା, ପେନ୍‌ସନ୍ ବଢ଼ାଇବାରେ ସୀମିତ ରହୁଥିବାବେଳେ ଲୋକମାନଙ୍କର ଆଶା-ଆକାଂକ୍ଷା ବର୍ଷ ବର୍ଷ ଧରି ଅବହେଳିତ ହୋଇ ପଡ଼ିରହିବା ଫଳରେ ସରକାରମାନଙ୍କ ପ୍ରତି ଲୋକମାନଙ୍କ ମନରେ ବିତୃଷ୍ଣା ଓ ସନ୍ଦେହ ସୃଷ୍ଟି ହେବା ସ୍ୱାଭାବିକ। ଏହି ଶୂନ୍ୟତାକୁ ଭରିଦେବାକୁ ମଝିରେ ମଝିରେ କିଛି ନୂଆ ଲୋକ ବା ଦଳ ସ୍ୱାଗତଯୋଗ୍ୟ ପ୍ରତିଶ୍ରୁତି ଦେଇ ଲୋକମାନଙ୍କ ମନରେ ନୂତନ ଆଶା ଉଦ୍ଦୀପନା ସୃଷ୍ଟି କରୁଛନ୍ତି ସିନା କିନ୍ତୁ ସେଥିରୁ ସୁଫଳ ଅପେକ୍ଷା କୁଫଳ ମିଳିବା ହିଁ ସାର ହେଉଛି ଠିକ୍ ଯେପରି ବାୟୁମଣ୍ଡଳର ବାୟୁ ଗରମ ହୋଇ ଉପରକୁ ଉଠିଗଲେ ସୃଷ୍ଟି ହେଉଥିବା ଲଘୁଚାପ ଆସନ୍ନ ବାତ୍ୟାର ବାର୍ତ୍ତାବହ ହୋଇଥାଏ। ସ୍ୱାଧୀନତୋତ୍ତର ସମୟର ବିଚକ୍ଷଣ ସମାଜବାଦୀମାନଙ୍କ ଅନ୍ତର୍ଦ୍ଧାନ ସହିତ ସମାଜବାଦର

ସ୍ୱର ଲିଭି ଗଲାଣି । ଜୟପ୍ରକାଶଙ୍କ ଆନ୍ଦୋଳନର ସହଯୋଗୀମାନେ ସମ୍ପୂର୍ଣ୍ଣ ବିପ୍ଳବର ସ୍ରୋତକୁ ଉଜାଣି ବୋହିବା କାର୍ଯ୍ୟକ୍ରମର କର୍ଣ୍ଣଧାର ସାଜିଛନ୍ତି, ଯୁବକ ସୁଲଭ ଉନ୍ମାଦନାକୁ ନେଇ ଲୋକଙ୍କ ବିଶ୍ୱାସଭାଜନ ହୋଇଥିବା ଆସାମ ଛାତ୍ର ଆନ୍ଦୋଳନ ଲୋକଙ୍କ ପୁନଃ ସମର୍ଥନ ପାଇବାରେ ବିଫଳ ହୋଇଛି ଓ ଶେଷତଃ ଆନ୍ନା ହଜାରେଙ୍କ ଦୁର୍ନୀତି ବିରୋଧୀ ଆନ୍ଦୋଳନ ପ୍ରେରିତ ଆପ୍ ଦଳ ଦିଲ୍ଲୀରେ ସରକାର ଗଢ଼ି ଶାସନତାନ୍ତ୍ରିକ ଅପାରଗତାର ପ୍ରମାଣ ଦେଇଛନ୍ତି । ଏସବୁ ବିଫଳତା ରାଜନୀତିରେ ନୀତିହୀନମାନଙ୍କର ଓ ନୀତିହୀନତାର ଆସନକୁ ସୁଦୃଢ଼ କରିବାରେ ସହାୟକ ହୋଇଛି । ନିର୍ବାଚନ ଅବ୍ୟବହିତ ପୂର୍ବରୁ ପ୍ରତିଷ୍ଠିତ ଦଳମାନଙ୍କର ଉଚ୍ଚସ୍ତରୀୟ ନେତାମାନଙ୍କର ଦଳବଦଳ ତଥା ବହୁଦିନର ଦଳୀୟ କର୍ମୀଙ୍କୁ ଉପେକ୍ଷା କରି ରାତାରାତି ଖେଳ, ସିନେମା, ଗୀତନାଚ ଜଗତର 'ଅଭିନେତା'ମାନଙ୍କୁ ଦଳରେ ପ୍ରାଧାନ୍ୟ ଦେଇ ସାମିଲ କରିନେବା ମଧ୍ୟ ରାଜନୀତିରେ ବ୍ୟକ୍ତିଗତ ତଥା ଦଳୀୟ ଆଦର୍ଶ ଓ ନୀତି-ହୀନତାର ପ୍ରମାଣ ଦିଏ ।

ଭାରତୀୟ ଗଣତନ୍ତ୍ରର ବିକଳାଙ୍ଗ ରୂପ ପଛରେ ରହିଛି ଭାରତୀୟମାନଙ୍କର ଦାରିଦ୍ର୍ୟ ଓ ଶିକ୍ଷାର ଅଭାବ । ସମସ୍ତ ପରିସଂଖ୍ୟାନରୁ ଗୋଟିଏ କଥା ସ୍ପଷ୍ଟ ଜଣାପଡ଼େ ଯେ ଯେଉଁ ଦେଶରେ ଶିକ୍ଷାର ମାନ ଯେତେ ଅଧିକ ସେ ଦେଶର ମାନବ-ପ୍ରଗତି ସୂଚନାଙ୍କ ସେତେ ଅଧିକ ଓ ସେ ଦେଶର ଗଣତନ୍ତ୍ର ସେତେ ସୁଦୃଢ଼ ଓ ସୁସ୍ଥ । ସେଥିପାଇଁ ଆମେରିକୀୟ ଦାର୍ଶନିକ 'ଜନ୍ ଡେୱେ' ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାକୁ ସର୍ବୋତ୍ତମ ବୋଲି ଅଭିହିତ କରିବା ସହ ଶିକ୍ଷାନୁଷ୍ଠାନଗୁଡ଼ିକୁ 'ଗଣତନ୍ତ୍ରର ଗୀର୍ଜା' ବୋଲି କହିଥିଲେ । କାରଣ କେବଳ ଶିକ୍ଷିତ ତଥା ସଚେତନ ପରିବେଶରେ ହିଁ ଗଣତନ୍ତ୍ରର ପ୍ରତିଷ୍ଠା ଓ ପ୍ରଭାବ ଜନକଲ୍ୟାଣକାରୀ ହୋଇଥାଏ । ବୋଧହୁଏ ଏହି କଥା ଉପଲବ୍ଧି କରି ନେହରୁ, ଆଜାଦ୍, ରାଜଗୋପାଳଚାରୀଙ୍କ ଭଳି ତୁଙ୍ଗ ବ୍ୟକ୍ତିତ୍ୱଙ୍କ ଅବର୍ତ୍ତମାନରେ ନିରୋଳା ପଦଲୋଭୀ ରାଜନେତାମାନେ ଶିକ୍ଷାକୁ କ୍ରମାଗତ ଭାବେ ଅଣଦେଖା କରିବାରେ ଲାଗିଲେ । ବିଗତ କିଛି ବର୍ଷରେ ଶିକ୍ଷା ସଂସ୍କାର ନାଁରେ ଶିକ୍ଷକ ନିଯୁକ୍ତି ବନ୍ଦ କରାଗଲା, ପରୀକ୍ଷାରୁ ପାସ୍-ଫେଲ୍ ଉଠାଇ ଦିଆଗଲା, ବିଦ୍ୟାଳୟଗୁଡ଼ିକୁ ଭୟମୁକ୍ତ ଅଞ୍ଚଳ କରି ଦିଆଗଲା, ବିନା ପରୀକ୍ଷାଗାରରେ ବିଜ୍ଞାନ ପଢ଼ାଗଲା, ନବମ-ଦଶମ ଓ ଯୁକ୍ତ ଦୁଇ ସ୍ତରରେ କେବଳ ଗୋଟିଏ ଗୋଟିଏ ବର୍ଷ ପାଠକୁ ନେଇ ପରୀକ୍ଷା କରାଗଲା, ଭୂତ ଲାଗିଲା ଭଳି ଫେବୃଆରିରେ ବାର୍ଷିକ ପରୀକ୍ଷା କରି ଏପ୍ରିଲ୍‌ରୁ ନୂଆ ଶ୍ରେଣୀ ପାଠ ଆରମ୍ଭ କରାଗଲା, ପରୀକ୍ଷା ପରିଚାଳନାକୁ ଶିକ୍ଷକମାନଙ୍କ ତତ୍ତ୍ୱାବଧାନରୁ ନେଇ

ପୁଲିସ୍ ଓ ପ୍ରଶାସକମାନଙ୍କ ହାତରେ ଟେକି ଦିଆଗଲା, ଉଚ୍ଚଶିକ୍ଷା କ୍ଷେତ୍ରରେ ସରକାର ମୈଦାନ ଛାଡ଼ି ପଳାଇବା ଫଳରେ ବେସରକାରୀ ସଂସ୍ଥାମାନଙ୍କର ବ୍ୟବସାୟ ହୋଇଗଲା ଇତ୍ୟାଦି ଇତ୍ୟାଦି। ଏସବୁ 'ସଂସ୍କାର'ଗୁଡ଼ିକର ଅନୁପସ୍ଥିତିରେ ଯେଉଁ ଶିକ୍ଷାବ୍ୟବସ୍ଥା ସାରା ପୃଥିବୀରେ ଏକ ସର୍ବଜନସୁଲଭ ଓ ଉତ୍କୃଷ୍ଟ ଶିକ୍ଷା ବ୍ୟବସ୍ଥା ଭାବରେ ସୁପରିଚିତ ଥିଲା ତାହା ଆଜି 'ସଂସ୍କାର'ଗୁଡ଼ିକ ଯୋଗୁଁ ବହୁସଂଖ୍ୟକ ଗରିବ ଛାତ୍ରଛାତ୍ରୀଙ୍କୁ ଉଚ୍ଚଶିକ୍ଷାରୁ ବଞ୍ଚିତ କରିବା ସହ ଏପରି ସ୍ତରକୁ ଖସିଛି ଯେ ଆମ ସ୍ନାତକମାନଙ୍କ ମଧ୍ୟରୁ ଶତକଡ଼ା ୫୦ ଭାଗ ନିଯୁକ୍ତି ଯୋଗ୍ୟ ନୁହଁନ୍ତି ବୋଲି ରଡ଼ିଆଡ଼େ ହୁରି ପଡ଼ିଛି; ଅଷ୍ଟମ ଶ୍ରେଣୀ ପିଲାମାନଙ୍କର ଦ୍ୱିତୀୟ-ତୃତୀୟ ଶ୍ରେଣୀ ଜ୍ଞାନ ନ ଥିବାର ଚର୍ଚ୍ଚା ହେଉଛି। ପୃଥିବୀର ଅନ୍ୟାନ୍ୟ ଦେଶ ତୁଳନାରେ ଶତକଡ଼ା ହାରରେ ବହୁ ଅଧିକ ଯୁବଶକ୍ତି ନେଇ ଆଜି ଆମେ ଦେଶ ତଥା ଗଣତନ୍ତ୍ରର ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ଆଶା ବାନ୍ଧି ଥିବାବେଳେ ଶିକ୍ଷାର ସର୍ବଗ୍ରାସୀ ନିମ୍ନମାନ ଏହି ଆଶାକୁ କେବଳ ଆଶାରେ ହିଁ ରଖିଦେବ ବୋଲି ମନରେ ଆଶଙ୍କା ଉପୁଜିବା ସ୍ୱାଭାବିକ। ଏବେ ମଧ୍ୟ ନିର୍ବାଚନର ଦ୍ୱାହି ଦେଇ ସ୍କୁଲ-କଲେଜର ପରୀକ୍ଷାଗୁଡ଼ିକୁ ଧର୍ମକୁ ଆଖି ମିଟିକା ମାରିବା ନ୍ୟାୟରେ ସାରି ଦିଆଯାଉଛି। ଶିକ୍ଷା ପ୍ରତି ସରକାରଙ୍କର ପ୍ରତିବଦ୍ଧ-ଶୂନ୍ୟତାର ଏହା ଗୋଟିଏ ଛୋଟ ଉଦାହରଣ ମାତ୍ର।

ଏହିଭଳି ଏକ ରାଜନୈତିକ, ପ୍ରଶାସନିକ, ଅର୍ଥନୈତିକ, ଶୈକ୍ଷିକ ଓ ସାମାଜିକ ସ୍ଖଳନର ପୃଷ୍ଠଭୂମିରେ ଆସିଛି ୨୦୧୪ ନିର୍ବାଚନ। ଏହି ନିର୍ବାଚନୀ ମେଳଣରେ ଲୋକମାନେ କେବଳ ନେତାମାନଙ୍କ "ବିମାନ" ପଛେ ପଛେ ଗୋଡ଼ାଣିଆ ସାଜି ମତୁଆଲା ହୋଇ ଝୁମି ଝୁମି ମହୋତ୍ସବରୁ କ୍ଷଣିକ ମସ୍ତି ଉଠେଇବେ କି "ଗୋବିନ୍ଦ-ମନସ୍କତା" ସହ ସମାଜ ଓ ଦେଶର ସମସ୍ୟା ସଚେତନ ହୋଇ ନିଜର ପବିତ୍ର ନାଗରିକ କର୍ତ୍ତବ୍ୟ ସମ୍ପାଦନ କରିବେ ତାହାହିଁ ପ୍ରଶ୍ନ। ସମସ୍ତ ଅପଶକୁନ ସତ୍ତ୍ୱେ ରାଜନୈତିକ ବିଚାରବୋଧର ଜୟ ହେଉ, ଗଣତନ୍ତ୍ରର ବିଜୟ ହେଉ; ଏତିକି ଆଶା।



# ଆଶା-ଇସ୍ତାହାର, ଜଣେ ନାଗରିକର

ଆସିଛି ନିର୍ବାଚନ ଋତୁ। ରାସ୍ତାଘାଟ କାନ୍ଥ କବାଟ; ଘରିଆଡ଼େ ରଙ୍ଗବେରଙ୍ଗର ପୋଷ୍ଟର, ବ୍ୟାନର। ସବୁଠି ଦଳୀୟ ସୁପ୍ରିମୋମାନଙ୍କ ଲାର୍ଜର-ଦାନ୍-ଲାଇଫ୍ ଫଟୋ, ଦଳୀୟ ଚିହ୍ନ ଓ ଅନୁଗତ ପ୍ରାର୍ଥୀଙ୍କ ଫଟୋ ସହ ଭୋଟ ଭିକ୍ଷା। ଭୋଟ ଭିକ୍ଷା ତ ନୁହେଁ ସ୍ୱର୍ଗର ପାରିଜାତର ବ୍ୟବସାୟ, ସ୍ୱପ୍ନପୁରୀର ପ୍ରତିଶ୍ରୁତି। ପ୍ରତିଶ୍ରୁତିର ବିସ୍ତୃତ ବିବରଣୀ ଦେଇ ଉପସ୍ଥାପନ କରାଯାଏ ବିଭିନ୍ନ ଦଳର ନିର୍ବାଚନୀ ଇସ୍ତାହାର। କିଛି କିଛି ଗଣମାଧ୍ୟମଗୁଡ଼ିକ ମଧ୍ୟ ନିଜ ନିଜର ରାଜନୈତିକ ସ୍ଥିତିକୁ ସୁହାଇଲା ଭଳି ଇସ୍ତାହାରଗୁଡ଼ିକର ସମୀକ୍ଷା କରନ୍ତି। କିନ୍ତୁ ବୁଝିଲା ସୁଝିଲା ସାଧାରଣ ଲୋକଟିର ନା ଥାଏ ଇସ୍ତାହାରଗୁଡ଼ିକ ଉପରେ ଭରସା କି ବିଶ୍ୱାସ ନା ଗଣମାଧ୍ୟମରେ ପ୍ରକାଶିତ ସମୀକ୍ଷା ଉପରେ। ସରଳ କାରଣଟି ହେଲା, "ଏମାନେ ଯଦି ପ୍ରକୃତରେ ଲୋକଙ୍କ ଦୁଃଖରେ ଏତେ ମାତ୍ରାରେ ସମଦୁଃଖୀ ଓ ଲୋକଙ୍କ ସେବା ପାଇଁ ଏତେ ବ୍ୟାକୁଳ, ଆଜି ପର୍ଯ୍ୟନ୍ତ ପର୍ଯ୍ୟାପ୍ତ ସମୟ ଓ ସୁଯୋଗ ପାଇବା ସତ୍ତ୍ୱେ ବିଶେଷ କିଛି କରିପାରୁ ନ ଥିବାବେଳେ ଅନାୟାସରେ ହଜାରପତିରୁ ଲକ୍ଷପତି ଓ ଲକ୍ଷପତିରୁ କୋଟିପତି ପାଲଟି ଯିବାର ଦୃଶ୍ୟ।" କିନ୍ତୁ ଗଣତନ୍ତ୍ରର ଭ୍ରମ ସୃଷ୍ଟି କରୁଥିବା ଅଗଣତାନ୍ତ୍ରିକ ଦୃଶ୍ୟଗୁଡ଼ିକର ଅବଲୋକନରେ ବ୍ୟଥିତ ହୋଇ ଚୁପ୍ ରହିଯିବା ଅପେକ୍ଷା ନିଜର ଏକ ପ୍ରତ୍ୟାଶାପୂର୍ଣ୍ଣ ଇସ୍ତାହାରଟିଏ ଉପସ୍ଥାପନ କରିବା ହୁଏତ ଏକ ପ୍ରମାଦ ତ ନୁହେଁ, କି ଜଣେ ସାଧାରଣ ନାଗରିକର ରାଜନୈତିକ କର୍ତ୍ତବ୍ୟ କେବଳ ନୁହେଁ ବରଂ ଜଣେ ଦେଶବାସୀର ଧର୍ମ। ତେଣୁ "ଶୃଣ୍ୱନ୍ତୁ ସର୍ବେ ଅମୃତସ୍ୟ ପୁତ୍ରାଃ" ଆଶାରେ ଏହା ଏକ ନିବେଦନ ପତ୍ର।

ଆମର ନିର୍ବାଚନ ହେବ ଉଭୟ ଲୋକସଭା ଓ ବିଧାନସଭା ପାଇଁ। ତେଣୁ ପ୍ରଥମେ ଦେଶ କଥା। ଏଭଳି ଏକ ଭାରତ ସରକାର ଗଠନ ହୁଅନ୍ତା ଯେଉଁଠି ପ୍ରଧାନମନ୍ତ୍ରୀ ଓ ମନ୍ତ୍ରୀମଣ୍ଡଳର ସଦସ୍ୟମାନେ ନିଜ ନିଜର ଦକ୍ଷତା, ବିଦ୍‌ବତ୍ତା, ଚରିତ୍ର

★ ଦୈନିକ "ସମ୍ବାଦ"; ୧୧ ଏପ୍ରିଲ ୨୦୧୪

ଓ ଦେଶପ୍ରେମ ପାଇଁ ନିର୍ବିବାଦୀୟ ହୋଇଥିବେ। ସେମାନେ କେବଳ ଦଳୀୟ ନେତା ନୁହେଁ ରାଷ୍ଟ୍ର ନେତା ହେବାର ପ୍ରତିଷ୍ଠା ଓ ଖ୍ୟାତିସମ୍ପନ୍ନ ହୋଇଥିବେ।

ଯେଉଁ ସରକାର ସମ୍ବିଧାନ ଓ 'ସତ୍ୟପାଠ' ପ୍ରତି ପ୍ରତିବଦ୍ଧତା ସହକାରେ ଗୋଟିଏ ଦୁର୍ନୀତିମୁକ୍ତ ଜନକଲ୍ୟାଣ ରାଷ୍ଟ୍ର ଗଠନ ଦିଗରେ ଦୃଢ଼ ନିଷ୍ଠିତ ଭାବରେ ବ୍ରତୀ ହେବ। ଲୋକମାନଙ୍କୁ ଭଣ୍ଡେଇବାରୁ କ୍ଷାନ୍ତ ହେବେ।

ଯେଉଁ ସରକାର କୌଣସି ବିଦେଶୀ ଶକ୍ତିର ବଶବର୍ତ୍ତୀ ନ ହୋଇ ନିଜ ଶକ୍ତିର ସମୁଚିତ ଆକଳନ ମାଧ୍ୟମରେ ନିର୍ଭୀକ ନିରପେକ୍ଷ ଦୂରଦୃଷ୍ଟି ପୂର୍ଣ୍ଣ ବୈଦେଶିକ ନୀତି ଦ୍ୱାରା ଦେଶ ଓ ଦେଶବାସୀଙ୍କର ସ୍ୱାର୍ଥ ଓ ସ୍ୱାଭିମାନ ରକ୍ଷାରେ ସମର୍ଥ ହେବ।

ଯେଉଁ ସରକାର ଭାରତୀୟ ଜାତୀୟତାର ବୈଶିଷ୍ଟ୍ୟ ଭାବେ ପରିଚିତ ଜାତି, ଧର୍ମ ଓ ବର୍ଣ୍ଣଗତ ବିବିଧତାକୁ ସମ୍ମାନ ଦେଇ ଦେଶ ମଧ୍ୟରେ ଶାନ୍ତି, ଶୃଙ୍ଖଳା, ସଦ୍‌ଭାବର ବାତାବରଣ ସୃଷ୍ଟି କରିପାରିବ; ବିଚ୍ଛିନ୍ନତାବାଦୀ ଓ ନକ୍ସଲପନ୍ଥୀଙ୍କ ସହ ଆପୋସ ଆଲୋଚନା ତଥା ସମ୍ବିଧାନ-ସମ୍ମତ ପଦକ୍ଷେପ ମାଧ୍ୟମରେ ସେମାନଙ୍କୁ ଜାତୀୟ ମୁଖ୍ୟସ୍ରୋତକୁ ଫେରାଇ ଆଣିବାରେ ସମର୍ଥ ହେବ।

ଯେଉଁ ସରକାର ପୃଥିବୀ ପୃଷ୍ଠରୁ ମାନବ ଜାତିକୁ ଧ୍ୱଂସ କରି ଦେବାର ଆଶଙ୍କା ସୃଷ୍ଟି କରୁଥିବା ଜାଗତିକ ଉଷ୍ମାୟନ, ଆଣବିକ ଶକ୍ତିର ବିନିଯୋଗ, ଜଳବାୟୁ ପରିବର୍ତ୍ତନ ଭଳି ଆନ୍ତର୍ଜାତୀୟ ସମସ୍ୟାଗୁଡ଼ିକ ପ୍ରତି ସଚେତନ ରହି ଆନ୍ତର୍ଜାତୀୟ ତଥା ଜାତୀୟ ବିଚାରବିମର୍ଶ ମାଧ୍ୟମରେ ଜୈବବିବିଧତାପୂର୍ଣ୍ଣ 'ସବୁଜ ସୁନ୍ଦର ପୃଥିବୀ' ଗଠନ ଲକ୍ଷ୍ୟରେ ସମୟୋପଯୋଗୀ ପଦକ୍ଷେପ ନେଇପାରିବ।

ଯେଉଁ ସରକାର ସର୍ବଦଳୀୟ ତଥା ନାଗରିକସମାଜ ସହ ବିଚାରବିମର୍ଶ ମାଧ୍ୟମରେ ଦେଶର ଦୀର୍ଘମିଆଦୀ ପ୍ରଗତିର ନକ୍ସା ପ୍ରସ୍ତୁତ କରିପାରିବ; "ଭୋଟ୍ ପାଇବା ଅର୍ଥ ଦେଶର ମାଲିକ ହେବା" ମାନସିକତାରୁ ଦୂରେଇ ରହିବ।

ଯେଉଁ ସରକାର ପୁଲିସ୍ ବିଭାଗ ଓ ସିବିଆଇ ଭଳି ଅପରାଧ ଅନୁସନ୍ଧାନୀ ଅନୁଷ୍ଠାନଗୁଡ଼ିକୁ ରାଜନୈତିକ ପ୍ରଭାବରୁ ମୁକ୍ତ କରିବ।

ଯେଉଁ ସରକାର ଲୋକମାନଙ୍କ ପଇସାରେ ପ୍ରତିପାଳିତ ସମସ୍ତ କର୍ମଚାରୀଙ୍କ ମନରେ ଦରମା-ପ୍ରତିବଦ୍ଧ କର୍ତ୍ତବ୍ୟ ସମ୍ପାଦନ ପାଇଁ ବାଧ୍ୟ କରିବ, ପଦପଦବି ଜଡ଼ିତ ସାମ୍ରାଜ୍ୟବାଦୀ ବା ସାମନ୍ତବାଦୀ ଔଦ୍ଧତ୍ୟକୁ ଭାଙ୍ଗି ପାରିବ; ବର୍ତ୍ତମାନର ଉପଲବ୍ଧ ସ୍ଫୀତ-ମାନସିକତାଗ୍ରସ୍ତ ଦୁର୍ବଳ ପ୍ରଶାସନକୁ ଉତ୍ତରଦାୟୀ କରିପାରିବ।

ଯେଉଁ ସରକାର ରାଜନୀତିକୁ ସ୍ୱଚ୍ଛ ଓ ପ୍ରତିନିଧିମାନଙ୍କୁ ଉତ୍ତରଦାୟୀ କରିବା ପାଇଁ ପଦକ୍ଷେପ ନେବାକୁ କୁଣ୍ଠାବୋଧ କରିବ ନାହିଁ; ଯଥା ଜଣେ ବ୍ୟକ୍ତି ଲଗାତାର ୨ ଥର ବା ସର୍ବାଧିକ ୩ ଥର ନିର୍ବାଚନ ଲଢ଼ିପାରିବେ, ମନ୍ତ୍ରୀ ବା ଅନ୍ୟ ଦାୟିତ୍ୱ ନ ଥିଲେ ପ୍ରତିନିଧିମାନେ ନିଜ ନିଜ ନିର୍ବାଚନ ମଣ୍ଡଳୀରେ ରହିବାକୁ ବାଧ୍ୟ ହେବେ, ଲୋକ ପ୍ରତିନିଧିମାନଙ୍କ ଦରମା, ଭତ୍ତା ଆଦି ଏକ ସ୍ୱାଧୀନ ସଂସ୍ଥା ଦ୍ୱାରା ନିର୍ଦ୍ଧାରିତ ହେବ, ନିର୍ବାଚନଗତ ମୋକଦ୍ଦମା ଅତ୍ୟୁଚ୍ଚ ୬ ମାସ ମଧ୍ୟରେ ଫଇସଲା ହେବ, ଲୋକପ୍ରତିନିଧି ହେବା ପାଇଁ ବୟସ ସୀମା ରହିବ, ଜାତୀୟ ମୁଣ୍ଡ ପିଛା ଆୟର ୧୦୦୦ ଗୁଣରୁ ଅଧିକ ଆୟ କରୁଥିବା ବ୍ୟକ୍ତିବିଶେଷ ନିର୍ବାଚନ ଲଢ଼ି ପାରିବେ ନାହିଁ ଇତ୍ୟାଦି।

ଯେଉଁ ସରକାର ଶିଳ୍ପ କ୍ଷେତ୍ରରେ ଦେଶ ଆୟରେ ପ୍ରମୁଖ ଭୂମିକା ଗ୍ରହଣ କରୁଥିବା କ୍ଷୁଦ୍ର ବା ଲଘୁ ଉଦ୍ୟୋଗଗୁଡ଼ିକୁ ପ୍ରୋତ୍ସାହନ ଦେବ, କୃଷି-ଭିତ୍ତିକ ଉଦ୍ୟୋଗଗୁଡ଼ିକୁ କୃଷି କ୍ଷେତ୍ର ଓ କୃଷକ ପାଖକୁ ନେବ, ଗାଁ-ଗଣ୍ଡାର ଲୋକମାନଙ୍କ ନିକଟରେ ଉଚ୍ଚମାନର ଶିକ୍ଷାନୁଷ୍ଠାନ, ସ୍ୱାସ୍ଥ୍ୟକେନ୍ଦ୍ର ଓ ରୋଜଗାରର ପନ୍ଥା ପହଞ୍ଚାଇ "ଗାଁରୁ-ସହରକୁ" ବୋହୁଥିବା ସ୍ରୋତକୁ ଅଟକାଇ ବିପରୀତାଭିମୁଖୀ କରିବ। ତା'ଦ୍ୱାରା ଗାଁ ସମୃଦ୍ଧ ହେବ, ସହର ବଞ୍ଚିବ ଓ ଦେଶରୁ ଅର୍ଥନୈତିକ ବୈଷମ୍ୟ ଦୂର ହେବ। ବହୁଚର୍ଚ୍ଚିତ 'ପୁଞ୍ଜି ନିବେଶ' ଓ 'ଅଭିବୃଦ୍ଧି' ପରିବର୍ତ୍ତେ 'ମାନବ ସମ୍ବଳ ବିକାଶ ସୂଚନାଙ୍କ' ହିଁ ଅର୍ଥନୀତିର ନିର୍ଣ୍ଣାୟକ ହେବ।

ଯେଉଁ ସରକାର ଉତ୍ତମମାନର ଶିକ୍ଷାକୁ ଦେଶର ଦ୍ରୁତ, ଦୃଢ଼ ଓ ଦୀର୍ଘସ୍ଥାୟୀ ପ୍ରଗତିର ବୀଜମନ୍ତ୍ର ବୋଲି ଭାବି ଭାରତର ସମୁଜ୍ଜ୍ୱଳ ପାରମ୍ପରିକ ଜ୍ଞାନ ଓ ଆଧୁନିକ ଜ୍ଞାନର ସମ୍ମିଶ୍ରଣ ଆଧାରରେ ମାନବ ସମ୍ବଳ ବିକାଶରେ ବ୍ରତୀ ହେବ; ଯୁବଶକ୍ତି ନିଯୁକ୍ତି ଯୋଗ୍ୟ ହେବେ, ଶୈକ୍ଷିକ ଉତ୍କର୍ଷକୁ ନେଇ ଦେଶର ଅର୍ଥନୀତି, ରାଜନୀତି, କାର୍ଯ୍ୟନୀତି ସାରଗର୍ଭା ହେବ, ଦେଶରେ ପଞ୍ଚାୟତ ଓ ନଗରନିଗମ ନିର୍ବାଚନଗୁଡ଼ିକ ସମ୍ପୂର୍ଣ୍ଣ ନିର୍ଦ୍ଦଳୀୟ ହେବ ଓ ଗବେଷଣା ଆଧାରରେ। ନୂଆ ଜ୍ଞାନ ସୃଷ୍ଟି ଓ ନୂଆ ଉଦ୍ଭାବନର ଯୁଗ ଆରମ୍ଭ ହେବ। ଯେଉଁ ସରକାର ଉଚ୍ଚଶିକ୍ଷା କ୍ଷେତ୍ରରେ ଜାତୀୟ ସ୍ତରରେ ଏକ ସମତୁଲ ଆନ୍ତର୍ଜାତୀୟ ସ୍ତରର ଉଚ୍ଚମାନ ପ୍ରତିଷ୍ଠା ନିମନ୍ତେ ଭାରତୀୟ ଶିକ୍ଷା ସେବାର (I.E.S.) ପ୍ରଚଳନ ପୂର୍ବକ ଉଚ୍ଚଶିକ୍ଷାକୁ ଯୁଗ୍ମ ତାଲିକାରୁ କାଢ଼ି କେନ୍ଦ୍ର-ତାଲିକାଭୁକ୍ତ କରିବେ ଓ ବାର୍ଷିକ ବଜେଟ୍‌ର ଶିକ୍ଷା ପାଇଁ ଅନ୍ୟୂନ ଶତକଡ଼ା ୧୦ ଭାଗ (ବର୍ତ୍ତମାନର ୩ ଭାଗ ପରିବର୍ତ୍ତେ) ବ୍ୟୟବରାଦ କରିବେ। ନଚେତ ଗତବର୍ଷ ଭଳି ଜାତୀୟ ଶିକ୍ଷା, ଗବେଷଣା ଓ ତାଲିମ ପରିଷଦର (N.C.E.R.T.) ଜାତୀୟ ଶିକ୍ଷକ-

ଯୋଗ୍ୟତା ପରୀକ୍ଷାରେ ସାଢ଼େ ସାତ ଲକ୍ଷ ତାଲିମପ୍ରାପ୍ତ ଶିକ୍ଷକ ପରୀକ୍ଷାର୍ଥୀଙ୍କ ମଧ୍ୟରୁ ମାତ୍ର ୧୩ ହଜାର ୪ ଶହ ୨୮ ଜଣ ବା ଶତକଡ଼ା ୧.୮ ଜଣ ଯୋଗ୍ୟ ବିବେଚିତ ହେଲା ଭଳି ହାସ୍ୟାସ୍ପଦ ଘଟଣା ଘଟି ଚାଲିଥିବ।

ଯେଉଁ ସରକାର 'ଜୟ ଜବାନ୍', 'ଜୟ କିଷାନ୍' ଓ 'ଜୟ ବିଜ୍ଞାନ' ଆଦିକୁ କେବଳ ସ୍ଲୋଗାନ୍ ବୋଲି ନ ଭାବି ଏକ ସର୍ବଜନହିତାୟ ଅସ୍ତ୍ରରେ ପରିଣତ କରିପାରିବ।

ଯେଉଁ ସରକାର ଆଦିବାସୀ, ସଂଖ୍ୟାଲଘୁ ଓ ଗରିବ ଲୋକମାନଙ୍କୁ କେବଳ ମାଗଣା ଡାଲି ଚାଉଳ ଲୋଭ ଦ୍ୱାରା ପ୍ରତାରିତ କରି ଭୋଟ୍ ପାଇଁ ବ୍ୟବହାର କରିବ ନାହିଁ। ସେମାନଙ୍କୁ ରୋଜଗାରକ୍ଷମ କରାଇ ସେମାନଙ୍କ ଉତ୍ତରପିଢ଼ିକୁ ଉତ୍ତରୋତ୍ତର ଉନ୍ନତିର ମାର୍ଗରେ ଅଗ୍ରସର ହେବାର ଭିତ୍ତିଭୂମି ଯୋଗାଇବ। ଯେଉଁ ସରକାରର ଟଙ୍କା ବାଣ୍ଟି ଭୋଟ୍ କିଣିବା ପ୍ରଦୂଷଣରୁ ଦେଶକୁ ରକ୍ଷା କରିବାର ପ୍ରତିବଦ୍ଧତା ଥିବ।

ଯେଉଁ ସରକାର ନ୍ୟାୟପାଳିକାର ସ୍ୱାଧୀନତା କ୍ଷୁର୍ଣ୍ଣ ନ କରି ନ୍ୟାୟପାଳିକାକୁ ଉତ୍ତରଦାୟୀ, ଲୋକାଭିମୁଖୀ ତଥା ଦୁର୍ନୀତିମୁକ୍ତ କରିପାରିବ। ନ୍ୟାୟପାଳିକା ସ୍ୱାଧୀନତାର ଅସଦ୍ ବ୍ୟବହାର ଯୋଗୁଁ ବର୍ତ୍ତମାନ ଲକ୍ଷ ଲକ୍ଷ ଲୋକ-ବିଶେଷ କରି ଗାଁ ଗହଳର ଗରିବ ଲୋକମାନେ-ହନ୍ତସନ୍ତ ହେଉଛନ୍ତି; ନ୍ୟାୟ ମିଳିବା ତ 'ଦୂର୍ ଆସ୍ତେ'।

ଯେଉଁ ସରକାର ଜାତୀୟ ଓ ଆଞ୍ଚଳିକ ରାଜନୈତିକ ଦଳମାନଙ୍କର ସଂଖ୍ୟା, ସଂଘୀୟ ବ୍ୟବସ୍ଥା ମଧ୍ୟରେ ଆଞ୍ଚଳିକ ଦଳ ଓ ସରକାରଗୁଡ଼ିକର ଭାଗିଦାରୀ କିଭଳି ଦେଶର ଶକ୍ତି, ସାମର୍ଥ୍ୟ ଓ ପ୍ରଗତିରେ ଅନ୍ତରାୟ ସୃଷ୍ଟି କରିବା ପରିବର୍ତ୍ତେ ସକାରାତ୍ମକ ହେବ ତାହାର ଗ୍ରହଣଯୋଗ୍ୟ ଦୀର୍ଘସ୍ଥାୟୀ ବ୍ୟବସ୍ଥା କରିପାରିବ।

ଏବେ ଆସିବା ଆମ ପ୍ରଦେଶ ଆଡ଼େ। କହିବା ବାହୁଲ୍ୟ ଯେ କେନ୍ଦ୍ର ସରକାର ପାଇଁ ଆବଶ୍ୟକ ଥିବା ଉପରୋକ୍ତ ବ୍ୟବସ୍ଥା ମଧ୍ୟରୁ ଅନେକଗୁଡ଼ିଏ ତ ପ୍ରାଦେଶିକ ସରକାର ପାଇଁ ପ୍ରଯୁଜ୍ୟ। ତାହା ସହିତ ଯୋଡ଼ି ହୋଇ ରହିବ ଆଉଗୁଡ଼ିଏ ଆଶା। ଯଥା;

ପ୍ରାଦେଶିକ ସରକାର ଭାଷା, ସଂସ୍କୃତି ଓ ଲୋକ ପରମ୍ପରାର ସଜାଗ ପ୍ରହରୀ ଭାବରେ କାର୍ଯ୍ୟ କରିବା ଉଚିତ। ପ୍ରାଶାସନିକ ସ୍ତରରେ ଓଡ଼ିଆ ଭାଷାର ପ୍ରଚଳନ, ପ୍ରାଥମିକ ସ୍ତରରେ କେବଳ ଓଡ଼ିଆ ଭାଷାରେ ଶିକ୍ଷାଦାନ ଆଦି ବ୍ୟବସ୍ଥା ଏକାନ୍ତ କାମ୍ୟ। ଆଜି ଆମେ ଯେପରି ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇବା ଅନ୍ତରାଳରେ ପ୍ରକୃତରେ ଆମର ପୂର୍ବସୂରୀମାନଙ୍କ ଅକ୍ଷୟ ଭାଷାକୀର୍ତ୍ତିଗୁଡ଼ିକୁ ନେଇ ଗର୍ବ କରୁଛୁ

ସେହିପରି ଆମର ପରପିଢ଼ିମାନେ କିଭଳି ଆମ କୃତିତ୍ୱକୁ ନେଇ ଗର୍ବ କରିନପାରିଲେବି ଅନ୍ତତଃ ଉଲ୍ଲେଖଟିଏ କରିବେ ସେଥିପ୍ରତି ସଚେତନ ରହିବା ଆମର କର୍ତ୍ତବ୍ୟ। ଓଡ଼ିଆ ପିଲାମାନଙ୍କ ମନରେ ଓଡ଼ିଆ ଭାଷାପ୍ରୀତି ସୃଷ୍ଟି କରିବାରେ ନୀତିଗତ ଅବହେଳା ପ୍ରଦର୍ଶନ କରିବା ଯେକୌଣସି ସରକାର ପକ୍ଷରେ ଏକ ଅପକୀର୍ତ୍ତି ହେବ।

ଓଡ଼ିଶା ଏକ ପ୍ରାକୃତିକ ବିପର୍ଯ୍ୟୟ ପ୍ରପୀଡ଼ିତ ରାଜ୍ୟ ହୋଇଥିବାରୁ ବନ୍ୟା, ବାତ୍ୟା ଓ ମରୁଡ଼ି ଆଦି ଦାଉରୁ ଓଡ଼ିଶାର ଲୋକମାନଙ୍କୁ ରକ୍ଷା କରିବାର ଏକ ସର୍ବଦଳସମ୍ମତ ଓ ଜନସାଧାରଣଙ୍କ ଗ୍ରହଣଯୋଗ୍ୟ ଦୀର୍ଘସ୍ଥାୟୀ ଯୋଜନା ପ୍ରଣୟନର ଆବଶ୍ୟକତାକୁ ବେଶୀ ଦିନ ଅଣଦେଖା କରାଯାଇ ନ ପାରେ। ପ୍ରାକୃତିକ ବିପର୍ଯ୍ୟୟଗୁଡ଼ିକୁ କେବଳ କେନ୍ଦ୍ର ସରକାରଠାରୁ ସାହାଯ୍ୟ ଆଣି ବର୍ଷକୁ ବର୍ଷ ଅପଚୟ କରିବାର ମାଧ୍ୟମ ଭାବରେ ବ୍ୟବହାର କରିବାର ମାନସିକତାରୁ ସରକାରୀ କଳ ମୁକ୍ତ ହେବା ଆବଶ୍ୟକ। ଓଡ଼ିଶାରେ ଗଚ୍ଛିତ ପ୍ରକୃତି ଦତ୍ତ ଖଣିଜ ପଦାର୍ଥର ବ୍ୟବହାର ଓ ବିକ୍ରୀ ଆଦି ପ୍ରକ୍ରିୟା ସମ୍ପୂର୍ଣ୍ଣ ସ୍ୱଚ୍ଛ ହେବା ଦରକାର। ଯେହେତୁ ଏହି ସମ୍ପଦର ପୁନଃନବୀକରଣ କୌଣସି ସରକାର ହାତରେ ନାହିଁ ସେହିଭଳି ଏହାର ବ୍ୟବହାର ବିଷୟରେ ସରକାର ସତର୍କ ରହିବା ସହ ଜନସାଧାରଣଙ୍କ ସମର୍ଥନରେ ହିଁ ଏହା ହେବା ଉଚିତ। ଭୋଟ୍ ପାଇ ସରକାର ଗଢ଼ିଥିବା ଦଳ ଓଡ଼ିଶାର ପ୍ରାକୃତିକ ସମ୍ପଦର ମାଲିକ ନୁହେଁ; କିଛି ଅବଧି ପାଇଁ ଜଗୁଆଳ ମାତ୍ର। ସେହିଭଳି ଶିଳ୍ପ ଓ ସହର ସମ୍ପ୍ରସାରଣ ପାଇଁ ବହୁମୂଲ୍ୟ ଜମି, ଚାଷ ଜମି, ଜଳ ଓ ଜଙ୍ଗଲ ଇତ୍ୟାଦି ସରକାରୀ ନିଷ୍ପତ୍ତି ବଳରେ ଟେକି ନ ଦେଇ କେବଳ ଲୋକଙ୍କ ସହମତିରେ ହିଁ ହେବ।

ଓଡ଼ିଶାରେ ଶିକ୍ଷା, ସ୍ୱାସ୍ଥ୍ୟ, କୃଷି ଓ ପ୍ରଶାସନିକ ବ୍ୟବସ୍ଥା ଅତ୍ୟନ୍ତ ଦୁର୍ବଳ ଓ ନିମ୍ନମାନର ହେବାରେ ଲାଗିଛି। ଶିକ୍ଷା କ୍ଷେତ୍ରରେ ପ୍ରତି ଶ୍ରେଣୀକୁ ଜଣେ ଶିକ୍ଷକ ଓ ବିଦ୍ୟାଳୟଗୁଡ଼ିକରେ ସବୁ ସମୟରେ ଆବଶ୍ୟକ ସଂଖ୍ୟକ ଶିକ୍ଷକ ନିଯୁକ୍ତି, ସ୍ୱାସ୍ଥ୍ୟ କ୍ଷେତ୍ରରେ ପ୍ରତି ସ୍ୱାସ୍ଥ୍ୟକେନ୍ଦ୍ରରେ ଆବଶ୍ୟକ ସଂଖ୍ୟକ ଡାକ୍ତର, ଫାର୍ମାସିଷ୍ଟ, ନର୍ସଙ୍କ ଉପସ୍ଥିତି, କୃଷି କ୍ଷେତ୍ରରେ ସଠିକ୍ ସମୟରେ କୃଷକମାନଙ୍କୁ ଉତ୍ତମମାନର ବିହନ ଓ ସାର ଯୋଗାଣ ତଥା କୃଷି ଉତ୍ପାଦଗୁଡ଼ିକର ସଂରକ୍ଷଣ ପାଇଁ ପର୍ଯ୍ୟାପ୍ତ ଶୀତଳଭଣ୍ଡାର ନିର୍ମାଣ ଓ ସଠିକ୍ ସହାୟକ ବିକ୍ରି ମୂଲ୍ୟ ନିର୍ଦ୍ଧାରଣ ଓ ପ୍ରଶାସନ କ୍ଷେତ୍ରରେ ଅଫିସଗୁଡ଼ିକରେ ସର୍ବଗ୍ରାସୀ ଅନୁପସ୍ଥିତି, କର୍ମଚାରୀମାନଙ୍କର କର୍ତ୍ତବ୍ୟରେ ଅବହେଳା ତଥା ଦୁର୍ନୀତି ଆଦିର ପ୍ରତିକାର ବ୍ୟବସ୍ଥାଦି ଯେକୌଣସି ସରକାରର ପ୍ରାଥମିକ ଦାୟିତ୍ୱ ହେବା

ଆବଶ୍ୟକ। ବିଡ଼ମ୍ୱନା ଏହି ଯେ ଦୀର୍ଘ ୧ ୫ ବର୍ଷ ଧରି ଗୋଟିଏ ଦଳ ନିରଙ୍କୁଶ ଶାସନ କରୁଥିଲେ ମଧ୍ୟ ଅତ୍ୟାବଶ୍ୟକ ସେବା ବ୍ୟବସ୍ଥାରେ ଅବନତି ହିଁ ପରିଲକ୍ଷିତ ହେଉଛି। ସରକାରୀକଳକୁ ବିକେନ୍ଦ୍ରୀତ କରି ଚଳତ୍ ଶକ୍ତିହୀନ ଦୁର୍ନୀତିଗ୍ରସ୍ତ ଅବସ୍ଥାରୁ ମୁକୁଳେଇ ଜନକଲ୍ୟାଣ ମାର୍ଗରେ ଚଳତ୍‌କ୍ଷମ କରିବାକୁ ହେବ।

ଓଡ଼ିଶା ସରକାର ଓଡ଼ିଆ ଅସ୍ମିତା ସ୍ୱାଭିମାନର ପ୍ରତିନିଧିତ୍ୱ କରିବାର କ୍ଷମତା ଓ ପ୍ରତିଭା ପ୍ରଦର୍ଶନ କରିପାରୁଥିବ; ଯେଉଁ ସରକାର ସ୍ତ୍ରୀ-ଲୋକଙ୍କ ପ୍ରତି ହେଉଥିବା ଜଘନ୍ୟ ଅପରାଧରେ ଲିପ୍ତ ଅପରାଧୀଙ୍କୁ ଦୃଷ୍ଟାନ୍ତମୂଳକ ଦଣ୍ଡ ଦେଇ ଓଡ଼ିଶାକୁ ନିଶାମୁକ୍ତ ଓ ନାରୀ-ଅପରାଧ ମୁକ୍ତ କରିପାରିବାର ଶକ୍ତି ଥିବ।

ଏହିଭଳି କିଛି ଆଶା...ଇସ୍ତାହାର। ଆମ ଗଣତନ୍ତ୍ରକୁ ଏକ ସମ୍ପୂର୍ଣ୍ଣ-ଗଣତନ୍ତ୍ର ଭାବରେ ଦେଖିବାର ସ୍ୱପ୍ନ। ଏ ସ୍ୱପ୍ନ ଯଦି କିଛି ମାତ୍ରାରେ ସାକାର ହେଲା ତ ଭଲ, ନଚେତ୍ ପୁଣି ଅପେକ୍ଷା ଆର ଥରକୁ, ପ୍ରତିଶ୍ରୁତିକାତର ଭବିଷ୍ୟତକୁ।



# 'ଅବ୍‌କି ବାର, ମୋଦି ସରକାର'

ପ୍ରାୟ ୫-୬ ମାସର ନିର୍ବାଚନୀ ପ୍ରଚାରର ତୋଫାନ ଶାନ୍ତ ପଡ଼ିଯାଇଛି। ଦେଢ଼ ମାସର 'ନିର୍ବାଚନ ଉତ୍ସବ'ର ପରିସମାପ୍ତି ଘଟିଛି। ମେ ୧୬ ତାରିଖର ବହୁ ପ୍ରତୀକ୍ଷିତ ଭୋଟ୍ ଗଣତି ପରେ ନୂଆ ସରକାରକୁ ନେଇ ଗଢ଼ି ଉଠିଥିବା କଳ୍ପନା କଳ୍ପନା, ଆଶା ଆଶଙ୍କାର ଅବସାନ ଘଟିଛି। ୫୪୩ ସଦସ୍ୟ ବିଶିଷ୍ଟ ଲୋକସଭା ନିର୍ବାଚନରେ ଭାରତୀୟ ଜନତା ପାର୍ଟି ୨୮୨ ସଦସ୍ୟଙ୍କୁ ନେଇ ଏକକ ସଂଖ୍ୟା ଗରିଷ୍ଠତା ହାସଲ କରିଛି। ଭାଜପା ଓ ସହଯୋଗୀ ଦଳମାନଙ୍କ ସହ ଜାତୀୟ ଗଣତାନ୍ତ୍ରିକ ସାମ୍ମୁଖ୍ୟର (NDA) ସଦସ୍ୟ ସଂଖ୍ୟା ୩୩୫। ଆଜି (ସୋମବାର) ବିଜେପିର ପ୍ରଧାନମନ୍ତ୍ରୀ ପ୍ରାର୍ଥୀ ନରେନ୍ଦ୍ର ମୋଦିଙ୍କ ନେତୃତ୍ୱର ନୂତନ ମନ୍ତ୍ରୀମଣ୍ଡଳ ଶପଥ ନେବାକୁ ଯାଉଛି। ଗୋଟିଏ ଅଣକଂଗ୍ରେସ ଦଳ ଭାବରେ ଭାଜପାର ସଂଖ୍ୟା ଗରିଷ୍ଠତା ହାସଲ ସ୍ୱାଧୀନତୋତ୍ତର ଭାରତ ଇତିହାସରେ ପ୍ରଥମ ଘଟଣା। ନିର୍ବାଚନୀ ଋତୁର ବାୟୁମଣ୍ଡଳରେ ଉଡ଼ି ବୁଲୁଥିବା ଅନେକଗୁଡ଼ିଏ ସ୍ଲୋଗାନ୍ ମଧ୍ୟରୁ ଯେଉଁ ଗୋଟିକ ଲୋକମାନଙ୍କ ଆଶୀର୍ବାଦ ପାଇ ବାସ୍ତବିକତାର ରୂପ ନେଇଛି ସେହିଟି ହେଲା, 'ଅବ୍‌କି ବାର୍, ମୋଦି ସରକାର'। ଦେଶର ରାଜନୈତିକ ଇତିହାସରେ ଏଭଳି ଏକ ଯୁଗପରିବର୍ତ୍ତନକାରୀ ଘଟଣା ପଛରେ ଥିବା କାରଣ ତଥା ଏହାର ଭବିଷ୍ୟତ ଇଙ୍ଗିତକୁ ବିଶ୍ଳେଷଣ କରିବାରେ ବିଶେଷଜ୍ଞମାନଙ୍କ ଭିତରେ ଯେତିକି ଉତ୍କଣ୍ଠା, ଘଟଣାଟିର କିଛି ସରଳ ଅର୍ଥ ବୁଝିବାରେ ସାଧାରଣ ଲୋକଟିର ମଧ୍ୟ ସେତିକି ଆଗ୍ରହ। ଦ୍ୱିତୀୟଟି ହିଁ ଆମର କ୍ଷେତ୍ର।

୨୦୧୪ ଲୋକସଭା ନିର୍ବାଚନ ପ୍ରକ୍ରିୟା ଆରମ୍ଭ ହେବାର ପ୍ରାୟ ୬-୭ ମାସ ଆଗରୁ ୨୦୧୩ ସେପ୍ଟେମ୍ବର ମାସରେ, ଭାରତୀୟ ଜନତାପାର୍ଟି ପ୍ରଧାନମନ୍ତ୍ରୀ ପଦ ପାଇଁ ଗୁଜୁରାଟ ମୁଖ୍ୟମନ୍ତ୍ରୀ ନରେନ୍ଦ୍ର ଦାମୋଦର ଦାସ ମୋଦିଙ୍କ ନାମ ଘୋଷଣା କରି ନିର୍ବାଚନ କ୍ଷେତ୍ରକୁ ଓହ୍ଲାଇଥିଲା। ପାର୍ଟିର ଆଦେଶନାମାକୁ ସର୍ବାନ୍ତକରଣରେ ସ୍ୱୀକାର କରି ମୋଦି ପ୍ରଥମ ଦିନରୁ ହିଁ ଅମିତ୍ ଶାହାଙ୍କ ଭଳି ନିଜର କିଛି ବିଶ୍ୱସନୀୟ ବିଚକ୍ଷଣ

---

★ ଦୈନିକ "ସମ୍ବାଦ"; ୨୬ ମେ ୨୦୧୪

ରାଜନୈତିକ ସହକର୍ମୀଙ୍କ ଦଳ, 'ଋ' ପେ ଚର୍ଚ୍ଚା' ତଥା ୩-ଡ଼ି ବ୍ୟବସ୍ଥା ମାଧ୍ୟମରେ ଲୋକମାନଙ୍କ ସହ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନର ଜୋର୍‌ଦାର୍ ପ୍ରୟାସ କରିବା; କମ୍ପ୍ୟୁଟର ବିଶେଷଜ୍ଞ ଟିମ୍ ସାହାଯ୍ୟରେ ଫେସ୍‌ବୁକ୍, ଟ୍ୱିଟର୍ ଭଳି ସୋସିଆଲ୍ ମିଡ଼ିଆ ଜରିଆରେ ଶିକ୍ଷିତ ତଥା ଯୁବଗୋଷ୍ଠୀ ସହ ଯୋଡ଼ିହେବା; ଦକ୍ଷ ଓ ଅଭିଜ୍ଞ ଲୋକମାନଙ୍କୁ ନେଇ ଦଳର ଘୋଷଣାପତ୍ର ପ୍ରସ୍ତୁତି ତଥା ପାରମ୍ପରିକ ଗଣମାଧ୍ୟମ ସହ ଅବିରତ ସମ୍ପର୍କ ରକ୍ଷା ଇତ୍ୟାଦି କାର୍ଯ୍ୟରେ ଅତ୍ୟନ୍ତ ଦୃଢ଼ତା ଓ ଆତ୍ମବିଶ୍ୱାସର ସହ ଲାଗିପଡ଼ିଲେ । ଅନ୍ୟମାନଙ୍କ ଉପରେ ଦାୟିତ୍ୱ ଦେଇ ସେ ହାତବାନ୍ଧି ବସିପଡ଼ିଲେ ନାହିଁ । ବରଂ ନିଜର ଅକ୍ଳାନ୍ତ ପରିଶ୍ରମ ଓ ପ୍ରଚାର ମାଧ୍ୟମରେ ଅନ୍ୟମାନଙ୍କ ଆଗରେ ଉଦାହରଣ ସ୍ଥାପନ କରି ପ୍ରେରଣାର ଉତ୍ସ ହୋଇଗଲେ । ଦେଶର କୋଣ-ଅନୁକୋଣ ଗସ୍ତ କରି ୪୩୭ ନିର୍ବାଚନ ସଭା ସମ୍ବୋଧିତ କରିବା ସହ ୧୩୫୦ଟି ୩-ଡ଼ି ଭାଷଣ, ୪୦୦୦ଟି ଋଏ ପେ ଚର୍ଚ୍ଚା ତଥା ଶହେ ପ୍ରାୟ ଦେଶ ବିଦେଶର ଗଣମାଧ୍ୟମ-ସାକ୍ଷାତକାରରେ ଭାଗ ନେଲେ । ଦେଶରେ 'ମୋଦି ହାୱା' ଓ 'ମୋଦି ସୁନାମି'ର ସୂତ୍ରପାତ ହେଲା । ମୋଦି, ସୁଶାସନ ଓ ବିକାଶ ନାଁରେ ଭୋଟ୍ ମାଗିଲେ । 'ସବ୍‌କେ ସାଥ୍, ସବ୍‌କେ ବିକାଶ' ଓ 'ଅଚ୍ଛେ ଦିନ୍ ଆନେ ୱାଲେ ହାଏ' ଭାରତ ସାରା ଗୁଞ୍ଜରି ଉଠିଲା । ଗୁଜୁରାଟର କ୍ରମାଗତ ୩ ଥର ମୁଖ୍ୟମନ୍ତ୍ରୀ ଭାବରେ ସେ ସୃଷ୍ଟି କରିଥିବା ଶୃଙ୍ଖଳିତ ଶାସନ ଓ ବିକାଶର ଧାରା ତାଙ୍କୁ ଜାତି, ଧର୍ମ, ଧନୀ, ଗରିବ ନିର୍ବିଶେଷରେ ଲୋକଙ୍କ ପାଖରେ ବିଶ୍ୱାସଯୋଗ୍ୟ କଲା । ଯୁବସମାଜ ଉଜ୍ଜ୍ୱଳ ଭବିଷ୍ୟତ ଆଶାରେ ଉତ୍‌ପ୍ରେରିତ ହେଲା । ପ୍ରଥମଥର ଭୋଟ୍ ଦେଉଥିବା ଯୁବବର୍ଗର ୩୯ ପ୍ରତିଶତ ଭୋଟ୍ ମୋଦି ପାଇଲେ । "ଅବ୍‌କେ ବାର୍, ମୋଦି ସରକାର" ସ୍ଲୋଗାନ୍ ସାକାର ହେଲା । ରାଜନୈତିକ ଦୃଷ୍ଟିକୋଣ ଭିନ୍ନ, ମୋଦିଙ୍କର ଅକ୍ଳାନ୍ତ ପରିଶ୍ରମ ଓ ସଫଳତା ପ୍ରାପ୍ତି ଉପରେ ଥିବା ଜୀବନ୍ତ ପ୍ରତ୍ୟୟ ଯେକୌଣସି ମଣିଷ ପାଇଁ ପ୍ରେରଣାଦାୟୀ ହେବାର ଅବକାଶ ରଖେ । ହୁଏତ ଆଦ୍ୟ ଯୌବନରେ ଅଧ୍ୟାତ୍ମିକ ଅନ୍ୱେଷଣରେ ବିତେଇଥିବା ତିନିଟି ବର୍ଷ ତାଙ୍କ ଦେହ ଓ ମନରେ ଅଫୁରନ୍ତଶକ୍ତି ଓ ଉତ୍ସାହର ଉତ୍ସ ସୃଷ୍ଟି କରିବାରେ ସହାୟକ ହୋଇଛି ।

ଭାଜପା ଓ ମୋଦିଙ୍କ ସଫଳତା ପଛରେ ମୋଦି ଟିମ୍‌ର ସୁସଂଗଠିତ ପ୍ରଚାର ଓ ଲୋକଙ୍କ ମନରେ 'ଭଲ ଦିନ ଆସିବା' ଆଶାର ଯେତିକି ଅବଦାନ, ଗତ ୟୁପିଏ-୨ ସରକାରର ସ୍ଥାଣୁତା, ମହାଦୁର୍ନୀତି ତଥା ଦିଗଭ୍ରଷ୍ଟତା ମଧ୍ୟ ସେତିକି ଦାୟୀ । ସରକାର ଥାଇ-ନଥିଲା ଭଳି ଅବସ୍ଥାରେ ଅତିଷ୍ଠ ଜନସାଧାରଣ ପରିବର୍ତ୍ତନ ପାଇଁ ନିଷ୍ପତ୍ତି ନେଇ ସାରିଥିଲେ; ନିର୍ବାଚନ-ମହାଭାରତ ଯୁଦ୍ଧରେ ଅର୍ଜୁନଙ୍କ ଭଳି ମୋଦି ଗୋଟିଏ ଦୃଷ୍ଟିରୁ 'ନିମିତ୍ତ ମାତ୍ର' ହୋଇଗଲେ ।

ନିର୍ବାଚନ ଫଳାଫଳର କେତୋଟି ଗୁରୁତ୍ୱପୂର୍ଣ୍ଣ ଦିଗ ଉଲ୍ଲେଖ ଦାବି କରେ। ପ୍ରଥମତଃ ମୁସଲମାନ୍ ଭାଇ-ଭଉଣୀଙ୍କ ଭୋଟ୍‌ଦାନ। ଏଥର ମୁସଲମାନ୍ ଭାଇ-ଭଉଣୀମାନେ ସୋନିଆ ଗାନ୍ଧୀଙ୍କ ଆହ୍ୱାନରେ ଆଖି ବୁଜି କଂଗ୍ରେସକୁ ଭୋଟ୍ ନ ଦେଇ କି ଆପ୍‌ନେତ୍ରୀ ସାଜିଆ ଇଲମୀଙ୍କ ପ୍ରରୋଚନାରେ ଧର୍ମୀୟ ଭାବନା ଦ୍ୱାରା ପ୍ରେରିତ ନ ହୋଇ, ବିଶିଷ୍ଟ ବୁଦ୍ଧିଜୀବୀ ତଥା ପତ୍ରକାର ଏମ୍.ଜେ. ଆକବରଙ୍କ ଭାଷାରେ, "କଂଗ୍ରେସ ସେମାନଙ୍କୁ ନିର୍ବାଚନ ପଶାପାଲିରେ କେବଳ ଗୋଟି ଭାବରେ ବ୍ୟବହାର କରି ଆସୁଥିବା" ବୁଝିପାରି ବହୁ ସଂଖ୍ୟାରେ ଭାଜପାର "ସବ୍‌କେ ସାଥ୍, ସବ୍‌କେ ବିକାଶ" ସ୍ୱର ସହ ସ୍ୱର ମିଳାଇଛନ୍ତି। ମୁସଲମାନ୍ ସଂଖ୍ୟାଗରିଷ୍ଠତାକୁ ନେଇ ସ୍ପର୍ଶକାତର ଗଣା ଯାଉଥିବା ୮୭ ଟି ନିର୍ବାଚନ ମଣ୍ଡଳୀରୁ ୪୫ଟିରେ ଭାଜପା ପ୍ରାର୍ଥୀ ବିଜୟୀ ହୋଇଛନ୍ତି; କେବଳ ଉତ୍ତର ପ୍ରଦେଶରେ ଏହି ସଂଖ୍ୟା ୨୭। ଗୋଧ୍ରା ହତ୍ୟାକାଣ୍ଡକୁ ନେଇ ଦୀର୍ଘ ୧୨ ବର୍ଷ ଧରି କେନ୍ଦ୍ର ସରକାରଙ୍କର ବିଭିନ୍ନ ବିଭାଗ ଓ ନ୍ୟାୟାଳୟ ପ୍ରେରିତ ତନ୍ନତନ୍ନ ଅନୁସନ୍ଧାନ ତଥା ଅଣ-ଭାଜପା ଦଳ ନେତାମାନଙ୍କର "ମୃତ୍ୟୁର ସୌଦାଗର", "ରାକ୍ଷସ", "ପଶୁ" ଭଳି କୁତ୍ସାରଟନାର ଶିକାର ହୋଇ ଆସୁଥିବା ମୋଦି ଓ ତାଙ୍କର ସହଯୋଗୀମାନଙ୍କୁ ସବୁ ଦୋଷାରୋପରୁ ଜନସାଧାରଣ ମୁକ୍ତ କରିଦେଇଛନ୍ତି। ଅତୀତର କବର ଉପରେ ଭବିଷ୍ୟତ ହିଁ ଗଢ଼ିବ ମୋଦିଙ୍କର ନୂଆ ପରିଚୟ।

ଦ୍ୱିତୀୟ କଥାଟି ହେଲା ଲୋକସଭା ନିର୍ବାଚନରେ ଭାଜପା ନିଜ ଶକ୍ତିରେ ଲୋକସଭାରେ ଏକକ ସଂଖ୍ୟାଗରିଷ୍ଠତା ହାସଲ କରିବା ଦୃଷ୍ଟିରୁ ଆଞ୍ଚଳିକ ଦଳ ବିଜେଡ଼ି ସୁପ୍ରିମୋ ନବୀନ ପଟ୍ଟନାୟକ, ତୃଣମୂଳ-କଂଗ୍ରେସ ନେତ୍ରୀ ମମତା ବାନାର୍ଜୀ ଓ ଏ.ଆଇ.ଡ଼ି.ଏମ୍.କେ.ର ସର୍ବମୟୀ କର୍ତ୍ତ୍ରୀ ଜୟଲଳିତା ମୋଦି ହାୱାକୁ ପ୍ରତିହତ କରିଥିବା କଥା ଯେତିକି ସତ, ଭାଜପା ଏହି ସବୁ ଆଞ୍ଚଳିକ ଦଳର ନେତାମାନଙ୍କୁ ନିଜ ନିଜ ଅଞ୍ଚଳ ମଧ୍ୟରେ ଆବଦ୍ଧ ରଖି ଏମାନଙ୍କର ଜାତୀୟ ରାଜନୈତିକ ଦୃଶ୍ୟପଟରେ ନାୟକ ହେବାର ମହତ୍ତ୍ୱାକାଂକ୍ଷାକୁ ଅନ୍ତତଃ ଆସନ୍ତା ୫ ବର୍ଷ ପାଇଁ ଧୂଳିସାତ୍ କରିଦେବା ମଧ୍ୟ ସେତିକି ସତ। "ମିଳିତ ସରକାରର ବାଧ୍ୟବାଧକତା"ର ରାହା ନେଇ କେନ୍ଦ୍ର ସରକାରଙ୍କର ଉତ୍ତରଦାୟିତ୍ୱରୁ ଖସିବାର ରାସ୍ତା ମଧ୍ୟ ବନ୍ଦ। ତୃତୀୟରେ କିଛି ନେତାଙ୍କ 'ମୋଦି ଜଣେ ଦେଶ ବିଭାଜନକାରୀ ବ୍ୟକ୍ତିତ୍ୱ', 'ମୋଦିଙ୍କୁ ପ୍ରଧାନମନ୍ତ୍ରୀ ହେବାକୁ ଦେବୁ ନାହିଁ, 'ମୋଦି କେବେହେଲେ ପ୍ରଧାନମନ୍ତ୍ରୀ ହୋଇପାରିବେ ନାହିଁ, ହୋଇପାରିବେ ନାହିଁ, ହୋଇପାରିବେ ନାହିଁ' ଭଳି ଚିତ୍କାର ସତ୍ତ୍ୱେ ପଞ୍ଜାବର ଶିରୋମଣି ଅକାଳୀ

ଦଳ, ମହାରାଷ୍ଟ୍ରର ଶିବସେନା, ଆନ୍ଧ୍ରର ତେଲୁଗୁ ଦେଶମ୍ ତଥା ଅନ୍ୟ ଅନେକ ଆଞ୍ଚଳିକ ଦଳ ଭାଜପା ସହ ପ୍ରାକ୍-ନିର୍ବାଚନ ସହବନ୍ଧନ କରିବା ମଧ୍ୟ ମୋଦିଙ୍କୁ ଜାତୀୟ ସ୍ତରରେ ଗ୍ରହଣୀୟ ନେତୃତ୍ୱର ମୋହର ପ୍ରଦାନ କରିଛି। ନିର୍ବାଚନ ଫଳାଫଳ ମଧ୍ୟ ପଶ୍ଚିମବଙ୍ଗ, ତାମିଲନାଡୁ ଓ ଆସାମ ଭଳି ରାଜ୍ୟରେ ମୋଦିଙ୍କ ନେତୃତ୍ୱର ଗ୍ରହଣୀୟତାକୁ ପୁଷ୍ଟ କରିଛି। ବରଂ ମୋଦୀଙ୍କ ପ୍ରତିପକ୍ଷ ଭାବେ କଂଗ୍ରେସ ଓ ସିପିଏମ୍ ଭଳି ଜାତୀୟ ଦଳ ଶୋଚନୀୟ ପରାଜୟର ସମ୍ମୁଖୀନ ହୋଇଥିଲାବେଳେ, ଡିଏମ୍‌କେ, ଏନ୍‌ସିପି, ବହୁଜନ ସମାଜପାର୍ଟି ଭଳି ଆଞ୍ଚଳିକ ଦଳମାନେ ଖାତା ଖୋଲିବାକୁ ସମର୍ଥ ହୋଇନାହାନ୍ତି। ପରିସ୍ଥିତି ଏପରି ହୋଇଛି ଯେ ଲୋକସଭାରେ ବିରୋଧୀ ଦଳର ନେତା ହେବା ପାଇଁ ଆବଶ୍ୟକ ୧୦ ପ୍ରତିଶତ ସ୍ଥାନ ମଧ୍ୟ କୌଣସି ଦଳର ନାହିଁ। ଆନ୍ନା ହଜାରେଙ୍କ ଦୁର୍ନୀତି-ବିରୋଧୀ ଆନ୍ଦୋଳନ ଜରିଆରେ ଲୋକଲୋଚନକୁ ଆସିଥିବା କେଜ୍ରିଓ୍ୱାଲ୍ ନିଜ ଚତୁରତାର ଜାଲରେ ଛନ୍ଦି ହୋଇ ନିଷ୍ପ୍ରଭ ହୋଇଗଲେ।

ଓଡ଼ିଶାରେ ନବୀନବାବୁ ଚତୁର୍ଥଥର ପାଇଁ ଅଭୂତପୂର୍ବ ସଫଳତା ହାସଲ କରିଥିଲାବେଳେ ପୁଣିଥରେ ଓଡ଼ିଶା ଜାତୀୟ ସ୍ରୋତରୁ ବିଚ୍ୟୁତ ହୋଇଯାଇଛି। ନିଜକୁ 'କଂଗ୍ରେସ ଓ ଭାଜପାଠାରୁ ସମାନ ଦୂରତା'ରେ ରଖୁଥିବା ଓଡ଼ିଶାର ମୁଖ୍ୟମନ୍ତ୍ରୀ ଚିଟ୍‌ଫଣ୍ଡ, ଲୁହାପଥର ଖଣି ଓ କୋଇଲା ଇତ୍ୟାଦି ଦୁର୍ନୀତିର ସୁପ୍ରିମ୍‌କୋର୍ଟ ନିର୍ଦ୍ଦେଶିତ ଅନୁସନ୍ଧାନଗୁଡ଼ିକରୁ ନିଜକୁ କେତେ ନିରାପଦ ଦୂରତାରେ ରଖିପାରୁଛନ୍ତି ତାହାହିଁ ପ୍ରଶ୍ନ। ତେବେ ରାଜ୍ୟ ଓ କେନ୍ଦ୍ରର ତୁ ତୁ ମେଁ ମେଁ ଭିତରେ ଓଡ଼ିଶାର ସ୍ୱାର୍ଥ ପ୍ରଭାବିତ ହେବ ନାହିଁ ବୋଲି ଆଶା।

ଭାଜପା ଓ ମୋଦିଙ୍କର ଚମତ୍କାରୀ ସଫଳତା ବିଷୟରେ ଆଲୋଚନା କରିବା ଅବସରରେ ଆମ ଗଣତନ୍ତ୍ର ପ୍ରକ୍ରିୟାରେ ଥିବା କିଛି ଦୁର୍ବଳତାକୁ ଭୁଲିଯିବା ଉଚିତ ହେବ ନାହିଁ। ଉଦାହରଣସ୍ୱରୂପ ଭାଜପା ପୂର୍ଣ୍ଣ ସଂଖ୍ୟାଗରିଷ୍ଠତା ପାଇଥିବା ସତ୍ତ୍ୱେ ପାଇଛି ମାତ୍ର ୩୧ ପ୍ରତିଶତ ଭୋଟ୍। ପରିସଂଖ୍ୟାନ ଦୃଷ୍ଟିରୁ ଦେଖିଲେ ୨୦୧୪ ନିର୍ବାଚନରେ ମୋଟ୍ ଭୋଟଦାନର ଯୋଗ୍ୟ ଲୋକଙ୍କ ସଂଖ୍ୟା ଥିଲା ପ୍ରାୟ ସାଢ଼େ ଏକାଅଶୀ କୋଟି। ସେଥିରୁ ଭୋଟ ଦେଲେ ଦୁଇ ତୃତୀୟାଂଶ (୬୬.୩୮ ପ୍ରତିଶତ)। ସେଥିରୁ ୩୧ ପ୍ରତିଶତ ବା ୧୬.୮ କୋଟି ଲୋକଙ୍କ ସମର୍ଥନ ପାଇ ଭାଜପା ସଂଖ୍ୟାଗରିଷ୍ଠତା ହାସଲ କଲା ! ଏହା ଆମ ଗଣତାନ୍ତ୍ରିକ-ନୀତି ନିହିତ ଏକ ଅଗଣତାନ୍ତ୍ରିକ ଦିଗକୁ ଯେ ସ୍ପଷ୍ଟ କରୁଛି କହିବା ବାହୁଲ୍ୟ। ସେହିଭଳି ସାଂସଦରେ କୋଟିପତି ଓ ଅପରାଧୀଙ୍କ ସଂଖ୍ୟା ନିରନ୍ତର ବୃଦ୍ଧି ପାଇବା ମଧ୍ୟ ଗଣତନ୍ତ୍ର ପାଇଁ ଅଶୁଭ ସୂଚନା।

ଭାରତୀୟ ଗଣତନ୍ତ୍ର ଯେ ଅର୍ଥବଳ ଓ ବାହୁବଳ ଦ୍ୱାରା କବଳିତ ହୋଇ ଦରିଦ୍ର ଓ ଦୁର୍ବଳ ଜନସାଧାରଣଙ୍କଠାରୁ ଦୂରେଇବାରେ ଲାଗିଛି ଏହା ତାହାର ଏକ ଦୁଃଖଦ ପ୍ରମାଣ ଓ ଚିନ୍ତାର କାରଣ।

ଏହିଭଳି କିଛି ଦୁର୍ବଳତାର ବୋଝ ବୋହି ନିର୍ବାଚନ ରଣାଙ୍ଗନରେ ବିଜୟୀ ହୋଇ କେନ୍ଦ୍ରରେ ଅବସ୍ଥାପିତ ହେବାକୁ ଯାଉଛି ଭାଜପା ତଥା ଏନ୍‌ଡ଼ିଏ ସରକାର। ମୋଦି ହେବେ ଭାରତର ଚତୁର୍ଦ୍ଦଶ ପ୍ରଧାନମନ୍ତ୍ରୀ। ଗୋଟିଏ ସାଧାରଣ ଗରିବ ପରିବାରର ଲୋକ ନିଜ ରାଜନୈତିକ ପ୍ରତିଭା ବଳରେ ଦେଶର ସବୁଠାରୁ ଶକ୍ତିଶାଳୀ ରାଜନୈତିକ ପଦ ଅଧିକାର କରିବା ମଧ୍ୟ ଆମ ଗଣତାନ୍ତ୍ରିକ ପ୍ରକ୍ରିୟାର ଅନ୍ତର୍ନିହିତ ଶକ୍ତିର ଶୁଭଙ୍କରୀ ସଙ୍କେତ ଦିଏ।

କୋଟି କୋଟି ଭାରତୀୟଙ୍କ ମନରେ ସୁଶାସନ ତଥା ବିକାଶର ଆଶା ସଞ୍ଚାର କରି କ୍ଷମତା ହାସଲ କରିବା ଏକ ବିରାଟ ଆହ୍ୱାନ। ମୋଦି ନିଜେ ମଧ୍ୟ ଏ ବିଷୟରେ ସଚେତନ। ସେ ନିଜେ ୨୦୧୯ ବେଳକୁ ଲୋକମାନଙ୍କ ଆଗରେ ନିଜ ସରକାରର ଫଳାଫଳ-ପତ୍ର ପ୍ରଦାନ କରିବାର ପ୍ରତିଶ୍ରୁତି ଦେଇଛନ୍ତି। ଏହା ଏକ ଆଶ୍ୱାସନାର କଥା। କିନ୍ତୁ ମୋଦି ମଧ୍ୟ ଜଣେ ମଣିଷ। ତେଣୁ ବହୁ ବର୍ଷ ଧରି ଗୋଟିଏ ଉପନିବେଶୀ-ମନୋବୃତ୍ତି ପ୍ରପୀଡ଼ିତ ପ୍ରଶାସନ, ସ୍ୱାର୍ଥ-ପ୍ରିୟ କର୍ମକତାର ଜନତା ତଥା ନୀତିରହିତ କ୍ଷମତା ପ୍ରଲୁବ୍ଧ ରାଜନୈତିକ ଶକ୍ତି କବଳରୁ ମୁକ୍ତ କରି ସେହି ଶକ୍ତିଗୁଡ଼ିକ ଉପରେ ନିର୍ଭରଶୀଳ ଗୋଟିଏ ସରକାରକୁ ପ୍ରକୃତ ଅର୍ଥରେ ସ୍ୱଚ୍ଛ, ନିର୍ମଳ, ଜନକଲ୍ୟାଣକାରୀ ଅସ୍ତ୍ରରେ ପରିଣତ କରିବା, ପ୍ରଗତିର ଏକ ନୂଆ ସଂଜ୍ଞା ନିରୂପଣ କରି "ସଶକ୍ତ, ଦିବ୍ୟ ଭାରତ" ନିର୍ମାଣ କରିବା ଏକ ଅଲୌକିକ ଚମତ୍କାରର ଅପେକ୍ଷା ରଖେ। ଏହା କେବଳ ସମର୍ପିତ ଦଳଗତ ପ୍ରତିବଦ୍ଧତା, ଦୂରଦୃଷ୍ଟି, ସାଧୁତା ଓ ଦେଶଭକ୍ତି ଦ୍ୱାରା ସମ୍ଭବ। ତେଣୁ ବର୍ତ୍ତମାନ ପାଇଁ ସମସ୍ତଙ୍କ ଦୃଷ୍ଟି ନିବଦ୍ଧ ମୋଦି, ତାଙ୍କ ମନ୍ତ୍ରୀମଣ୍ଡଳ ଓ ତାଙ୍କ ଶାସନଶୈଳୀ ତଥା ଶିକ୍ଷା, କୃଷି ଓ ସ୍ୱାସ୍ଥ୍ୟ ଭଳି ଗୁରୁତ୍ୱପୂର୍ଣ୍ଣ ବିଷୟରେ ତାଙ୍କ ନୀତି ନିର୍ଣ୍ଣୟ ଉପରେ। ଏହାହିଁ ନିର୍ଣ୍ଣୟ କରିବ ହତାଶାର ଘନ ତିମିର ଚିରି ଚେଇଁ ଉଠୁଥିବା ସ୍ୱପ୍ନ ଆୟୁଷ୍ମାନ୍, ଜ୍ୟୋତିଷ୍ମାନ୍ ହେବ କି ଅସହାୟତାର ଘୂର୍ଣ୍ଣିବଳୟରେ ପଡ଼ି ଜନତା "ନିରାଶ୍ରୟ ମାଂ ଜଗଦୀଶ ରକ୍ଷ" ଗାଇ ଗାଇ ସନ୍ତର୍ପଣରେ କାଳାତିପାତ କରିବେ। ସମୟର ଉତ୍ତରକୁ ଅପେକ୍ଷା।

□□□

# ପାଳ ଦଉଡ଼ି ନୁହେଁ, ବିଷଧର ସାପ

ମଣିଷର ଚିନ୍ତନରୁ ସମାଜର ସୃଷ୍ଟି। ପୁଣି ସେହି ଚିନ୍ତନ ଆଧାରରେ ସମାଜର କ୍ରମବିକାଶ ଓ ପୁଷ୍ଟି। ଏହିସବୁ ଚିନ୍ତନରେ ଗୁନ୍ଥି ହୋଇଥାଏ ନୂତନତା ଓ ମୌଳିକତାର କାଳଜୟୀ ଔଜ୍ଜ୍ୱଲ୍ୟ। ଗଛର ଡାଳ ଖଣ୍ଡେ ଭାଙ୍ଗି ବା ପଡ଼ି ରହିଥିବା ପଥର ଖଣ୍ଡେକୁ ଉଠେଇ ନେଇ ବା ବାଉଁଶ କଣି ଖଣ୍ଡେର ଦୁଇ ମୁଣ୍ଡରେ ସୂତାଟିଏ ବାନ୍ଧି ଏଗୁଡ଼ିକୁ ଉପକରଣ ବା ହତିଆର ଭାବରେ ବ୍ୟବହାର କରିବା ହେଉ ଅବା ଡାଲା ତଳେ ଚକଟିଏ ଯୋଡ଼ି ଦ୍ରବ୍ୟ ପରିବହନରେ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିବା ହେଉ ଅବା ଉପରୁ ତଳକୁ ଖସି ପଡୁଥିବା ଜଳସ୍ରୋତରୁ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରିବା ହେଉ ବା ବସ୍ତୁର ଅନ୍ତଃସ୍ଥଳରେ ଥିବା ଇଲେକ୍ଟ୍ରନ୍‌ଗୁଡ଼ିକର ଚରିତ୍ର ବୁଝି ଟ୍ରାଞ୍ଜିଷ୍ଟର, କମ୍ପ୍ୟୁଟର, ମୋବାଇଲ୍ ଭଳି ଉପକରଣମାନ ଗଢ଼ିବା ହେଉ; ପ୍ରତିଟି ଘଟଣାର ଅନ୍ତରାଳରେ ଥିବା ଚିନ୍ତନଗୁଡ଼ିକର ଚମତ୍କାରିତା ବୁଝାଇ କହିବା ଅନାବଶ୍ୟକ। ମଣିଷ ଜୀବନର ଅକଳନ ଗୁହ୍ୟ ସମସ୍ୟାଗୁଡ଼ିକର ଉତ୍‌ଥାପନ, ଚିତ୍ରଣ ଓ ଅଭିନବ ସମାଧାନର ଚିନ୍ତାଶିଳ୍ପଗୁଡ଼ିକ ହିଁ କାଳଜୟୀ ସାହିତ୍ୟ। ସୃଷ୍ଟି ଓ ସ୍ରଷ୍ଟାଙ୍କର ଦ୍ୱୈତ ସ୍ଥିତିର ଅନ୍ତଃକରଣରେ ଅଦ୍ୱୈତର ସନ୍ଧାନ ଦେଇଛି ଭାରତୀୟ ଦର୍ଶନକୁ ଶ୍ରେଷ୍ଠତ୍ୱର ଗରିମା ଓ ଗୌରବ। ଧନୀ ଓ ବଳବାନର ଅତ୍ୟାଚାର ଓ ଉତ୍ପୀଡ଼ନରେ ବ୍ୟଥିତ ମସ୍ତିଷ୍କର ଚିନ୍ତନ ହିଁ ସୃଷ୍ଟି କରିଛି ଗଣତନ୍ତ୍ର, ସମାଜବାଦ ବା ସାମ୍ୟବାଦ ଭଳି ସମତା ଆଧାରିତ ରାଜନୈତିକ ଶାସନ ବ୍ୟବସ୍ଥା। ଉପରୋକ୍ତ ଚିନ୍ତନଗୁଡ଼ିକ ପଛରେ ଥାଏ କେତେବେଳେ ସମସ୍ୟା ଘେରରୁ ମୁକୁଳିବାର ପ୍ରେରଣା ତ ଆଉ କେତେବେଳେ ଥାଏ ପ୍ରକୃତି ଓ ମଣିଷ ଚରିତ୍ରର ଅନ୍ତଃ ତଥା ବାହ୍ୟ ସୌନ୍ଦର୍ଯ୍ୟର ଅନୁଶୀଳନ; ଅଧ୍ୟୟନ ଓ ମନନର ନିରୋଳା ଆକର୍ଷଣ।

କହିବା ବାହୁଲ୍ୟ ଯେ ଚିନ୍ତନର ଶକ୍ତି ହିଁ ତତ୍କାଳୀନ ସମାଜର ଶକ୍ତି ଓ ସମାଜର ପରିଚୟ। ଚିନ୍ତନକୁ ବୁଦ୍ଧି ଦିଏ ଉଚ୍ଚତା ଓ ହୃଦୟ ଦିଏ ଜୀବନ ସହ ଆତ୍ମୀୟତା।

---

★ ଦୈନିକ "ସମ୍ବାଦ"; ୧୬ ଫେବୃୟାରୀ ୨୦୧୫

ତେଣୁ ଗୋଟିଏ ସାମାଜିକ ପରିବେଶରେ ଚିନ୍ତନର ସ୍ଫୁରଣ ଓ ଚିନ୍ତକଙ୍କ ଶୁଭ ଉପସ୍ଥିତି ଏକ ଅତ୍ୟନ୍ତ ଆନନ୍ଦର କଥା ହୋଇଥାଏ। ଠିକ୍ ଯେପରି ସମକାଳୀନ ଭାବରେ ବୁଦ୍ଧ, କନ୍‌ଫ୍ୟୁସିୟସ୍ ଓ ସକ୍ରେଟିସ୍ ବା ଗାନ୍ଧୀ, ଅରବିନ୍ଦ, ରାମକୃଷ୍ଣ ଓ ରମନ୍ ମହର୍ଷିଙ୍କ ବର୍ତ୍ତମାନତା ସଜେଇ ଦେଇଛି ଗୋଟିଏ ଗୋଟିଏ କାଳଖଣ୍ଡକୁ ଅନନ୍ୟ ବିଭୂତିରେ।

ଏଭଳି ଏକ ଗୌରଚନ୍ଦ୍ରିକାର ଉଦ୍ଦେଶ୍ୟ ହେଉଛି ସେହି କଷଟି ପଥରରେ ଆମର ବର୍ତ୍ତମାନକୁ ପରଖିବା। ଏହି ପରୀକ୍ଷାରେ ଆମର ବର୍ତ୍ତମାନର ସ୍ଥିତି ଯେ ଅତ୍ୟନ୍ତ ନୈରାଶ୍ୟଜନକ କହିବା ନିଷ୍ପ୍ରୟୋଜନ। ଆମ ଚିନ୍ତନ ଶୂନ୍ୟତା ଏତେ ସ୍ୱଷ୍ଟ ଯେ ଏହା ବିତର୍କର ଅବକାଶ ମଧ୍ୟ ରଖେ ନାହିଁ। ତେଣୁ କ୍ଷଣକାଳ ପାଇଁ ମଧ୍ୟ ଦୁନିଆ ଆମ ଆଡ଼େ ଆଖିତରାଟି ନିରେଖିବା ତ ଦୂରର କଥା ସାମାନ୍ୟ ଦୃଷ୍ଟିପାତର ସମ୍ଭାବନା ମଧ୍ୟ ନାହିଁ। ଆମେ କିନ୍ତୁ "ନିର୍ବୋଧର ନନ୍ଦନକାନନ"ରେ ଝୁମିବା ମସ୍ତିରେ ମସ୍‌ଗୁଲ। ତା' ସତ୍ତ୍ୱେ 'ବିଶ୍ୱସ୍ତରୀୟ' ଚିନ୍ତନ ଓ ଚିନ୍ତନ ପ୍ରସୂତ ଅନୁଷ୍ଠାନଗୁଡ଼ିକର ମହକରେ ସାରା ସଂସାରକୁ ମହକିତ କରିପାରିବା ସାମର୍ଥ୍ୟର ବହୁ ବିଜ୍ଞପିତ ଆମର ଆସ୍ପର୍ଦ୍ଧା ଆମକୁ କେବଳ ଦୁନିଆର ଆକ୍ଷେପ ଓ ଅପବାଦର ଶରବ୍ୟ ହେବାର ସମ୍ଭାବନା ହିଁ ସୃଷ୍ଟି କରୁଛି। କାରଣ ଅସାମର୍ଥ୍ୟ ଯେତେ ଲଜ୍ଜାଜନକ ନୁହେଁ; ତା'ଠୁ ବହୁ ଅଧିକ, ଅସାମର୍ଥ୍ୟର ଅସ୍ୱୀକାର।

ଏଭଳି ଆଶଙ୍କା ସୃଷ୍ଟିକାରୀ ଦୁଇଟି ଉଦାହରଣ ଉପସ୍ଥାପନର ଅନୁମତି ମାଗୁଛି; କୌଣସି ବିଶେଷଜ୍ଞର ବୌଦ୍ଧିକ ଚର୍ଚ୍ଚା ଆଳରେ ନୁହେଁ, କେବଳ ସାଧାରଣ ସାମାଜିକ ସୁଖଦୁଃଖର ଜଣେ ସହଭାଗୀ ଭାବରେ। ଉଦାହରଣ ଦୁଇଟି ଆମ ସରକାରଙ୍କର ନୂଆ ନୂଆ ବିଶ୍ୱବିଦ୍ୟାଳୟ ସୃଷ୍ଟି ଓ ନୂଆ କରି ବିଧାନ ପରିଷଦ ସୃଷ୍ଟି କରିବାର 'ଚିନ୍ତନ'କୁ ନେଇ।

ଆମ ରାଜ୍ୟରେ କଳାସଂସ୍କୃତି, ପ୍ରଯୁକ୍ତିବିଦ୍ୟା, କୃଷି, ବ୍ୟବସାୟ ପରିଚାଳନା ଇତ୍ୟାଦି ପାଠ୍ୟକ୍ରମ ପ୍ରଭେଦରେ ଅଲଗା ଅଲଗା ବିଶ୍ୱବିଦ୍ୟାଳୟମାନ ସୃଷ୍ଟି କରାଯାଇଛି। ନୂଆକରି ଲିଙ୍ଗଭେଦରେ ମହିଳା ବିଶ୍ୱବିଦ୍ୟାଳୟ ଗଠନ ହେବାର ଘୋଷଣା ପ୍ରକାଶ ପାଇଛି। ଏହିଭଳି ଚିନ୍ତକମାନେ ଅତୀତରେ ଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟ ୩-୪ଟି ବିଶ୍ୱବିଦ୍ୟାଳୟର ରୂପ ନେଇ ଜନ୍ମ ନେଇଥାଆନ୍ତା। ମହାମନା ପଣ୍ଡିତ ଓ ଅତୁଳନୀୟ ଦୂରଦୃଷ୍ଟି ସମ୍ପନ୍ନ ମାଳବ୍ୟଙ୍କର ଏହିଭଳି ଶିକ୍ଷାଭିଜ୍ଞ ଉପଦେଷ୍ଟାମାନେ ଥିଲେ ଆଜି ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ପରିସରରେ ପ୍ରଯୁକ୍ତିବିଦ୍ୟା, କୃଷି, କଳା, ବିଜ୍ଞାନ,

ଗଣିତ ଓ ଦର୍ଶନାଦି ପାଠ୍ୟକ୍ରମଗୁଡ଼ିକର ସହାବସ୍ଥାନକୁ ନେଇ ବିଶ୍ୱବିଦ୍ୟାଳୟ ଏକ ସୁଉଚ୍ଚ ଗରିମାର ଅଧିକାରୀ ହୋଇପାରିନଥାନ୍ତା।

ଏହି ଆଲୋଚନା ପରିପ୍ରେକ୍ଷୀରେ ପ୍ରଥମ ପ୍ରଶ୍ନ ଭାବରେ 'ବିଶ୍ୱବିଦ୍ୟାଳୟଟିଏ କ'ଣ ?' ବୋଲି ପ୍ରଶ୍ନଟି ଉତ୍‌ଥାପିତ ହେବା ସ୍ୱାଭାବିକ। ଦୁନିଆର ସବୁ ପଣ୍ଡିତମାନଙ୍କର ସର୍ବମାନ୍ୟ ମତ ଯେ ବିଶ୍ୱବିଦ୍ୟାଳୟଗୁଡ଼ିକର ମୂଳଲକ୍ଷ୍ୟ ସତ୍ୟାନୁସନ୍ଧାନ, ନୂତନ ଜ୍ଞାନ ସୃଷ୍ଟି ଓ ବିଶ୍ୱଦୃଷ୍ଟିର ଉନ୍ମେଷ। ଏହି ଲକ୍ଷ୍ୟ ହାସଲର ପ୍ରକୃତ ମାର୍ଗ ଭାବେ ଜାତି, ଧର୍ମ, ବର୍ଣ୍ଣ, ବୟସ ଓ ଲିଙ୍ଗ ନିର୍ବିଶେଷରେ ସମସ୍ତ ଜ୍ଞାନପିପାସୁ ବ୍ୟକ୍ତିବିଶେଷଙ୍କ ସହାବସ୍ଥାନରେ ସମସ୍ତ ପାଠ୍ୟକ୍ରମର ଗଭୀର ଅଧ୍ୟୟନ, ଆଲୋଚନା ଓ ଗବେଷଣା ମଧ୍ୟ ସର୍ବଜନସ୍ୱୀକୃତ। ଜ୍ଞାନ, ଭାବ ତଥା କଳ୍ପନାର ସ୍ୱଚ୍ଛଳ ସଘନ ଆଦାନପ୍ରଦାନ ପ୍ରତ୍ୟେକଙ୍କୁ ଅନୁପ୍ରାଣିତ କରେ, ଉଦ୍‌ଭାସିତ କରେ; ଏପରିକି ସଙ୍ଗୀତ, ସାହିତ୍ୟ ଓ ଗଣିତର ଚର୍ଚ୍ଚା ବିଜ୍ଞାନକୁ ଓ ବିଜ୍ଞାନର ଚର୍ଚ୍ଚା ସାହିତ୍ୟ, ଗଣିତ ଓ ଦର୍ଶନ ଇତ୍ୟାଦିକୁ। କାରଣ ଏଗୁଡ଼ିକ ପ୍ରତ୍ୟେକ ଜ୍ଞାନ ଜଗତରେ ନିବିଡ଼ ସମ୍ପର୍କରେ ବନ୍ଧା ସ୍ୱ ସ୍ୱ ଦୀପ୍ତିରେ ଦୀପ୍ତିମାନ ଗୋଟିଏ ଗୋଟିଏ ଅଂଶ ମାତ୍ର। ବିଶ୍ୱବିଦ୍ୟାଳୟର ପ୍ରକୃତ ଉଦ୍ଦେଶ୍ୟ ବିଷୟରେ ଅଜ୍ଞ କିଛି କିଶୋରମତୀ ଛାତ୍ରଛାତ୍ରୀଙ୍କର ଜୟଜୟକାର ବା କିଛି ସରକାରୀ ଶିକ୍ଷାବିତ୍‌ଙ୍କ ଯୋଗାଡ଼ି-ସମର୍ଥନ ଆଧାରରେ ନିଜ ନିଜକୁ ଶିକ୍ଷାପ୍ରେମୀ ଓ ଦୂରଦର୍ଶୀ ବୋଲି ଆସ୍ଫାଳନ କରିବା ଶିକ୍ଷାର ମୂଳ ଲକ୍ଷ୍ୟ ସାଧନକୁ ପ୍ରତିହତ କରିବା ସହ ଆମର ଓ ଆମ ନେତୃତ୍ୱର ସୁବିଧାବାଦୀ ସଂକୀର୍ଣ୍ଣ ମାନସିକତାକୁ ହିଁ ପ୍ରକଟ କରୁଛି।

ନୂତନର ନିମନ୍ତ୍ରଣ ପୂର୍ବରୁ ପୁରାତନର ଅବସ୍ଥା ପ୍ରତି ଦୃଷ୍ଟି ଦେଇ ଆମ ଦକ୍ଷତାର ଆକଳନ ମଧ୍ୟ ଆବଶ୍ୟକ। ଖଜୁରି ଗଛ ତ ମୂଳରୁ ପାହାଚ ପାହାଚ। ତେବେ ଯେଉଁ ପାହାଚଗୁଡ଼ିକ ଯୋଗୁଁ ଖଜୁରି ଗଛଟିର ଆଜି ଏ ମୃତପ୍ରାୟ ଅବସ୍ଥା ସେଗୁଡ଼ିକ ହେଲା ଶିକ୍ଷା ସଂସ୍କାର ଓ ଅର୍ଥନୀତି ସୁଧାରିବା ନାଁ'ରେ ଦଶନ୍ଧି ଦଶନ୍ଧି ଧରି ଶିକ୍ଷକ ନିଯୁକ୍ତି ବନ୍ଦ ଓ ଶିକ୍ଷକ ପଦ ଉଚ୍ଛେଦ, ପ୍ରଶାସନିକ ଅଧିକାରୀମାନଙ୍କୁ କୁଳପତି କରିବା ବା କୁଳପତି ଚୟନ କମିଟିର ସଦସ୍ୟ ତଥା ମୁଖ୍ୟ କରାଇବା। କୁଳାଧିପତିଙ୍କ କାର୍ଯ୍ୟାଳୟ କେବଳ କିଛି ଔପଚାରିକ ରୀତିନୀତିର ସଂରକ୍ଷକ ସାଜି କୂଳ ଭାସି ଯାଉଥିବାର ବିଲକ୍ଷଣଗୁଡ଼ିକ ପ୍ରତି ସଚେତନ ନ ରହିବା ଓ ସର୍ବୋପରି ଶିକ୍ଷିତ ସମାଜ ତଥା ଅଭିଭାବକଙ୍କ ଅବୋଧ ଚରମ ଉଦାସୀନତା। ଯେଉଁ ଶିକ୍ଷାପ୍ରେମୀ ନାଗରିକମାନେ ନିଜ ନିଜ ଅଞ୍ଚଳରେ ବିଶ୍ୱବିଦ୍ୟାଳୟ ପାଇଁ ଦାବି, ଜନଜାଗରଣ ଓ ବିକ୍ଷୋଭ ଆଦିର ଆଶ୍ରୟ ନେଇଥାଆନ୍ତି,

ବିଶ୍ୱବିଦ୍ୟାଳୟର ସୃଷ୍ଟି ପରେ ସେଗୁଡ଼ିକ କେବଳ ଫଳକ-ସର୍ବସ୍ୱ ସ୍ଥିତିରେ ଅଛନ୍ତି କି ସେମାନଙ୍କ ଯଥାର୍ଥ ଲକ୍ଷ୍ୟ ସାଧନରେ ବ୍ରତୀ ଅଛନ୍ତି; ସେଥିପ୍ରତି ତିଳେ ମାତ୍ର ଧ୍ୟାନ ଦିଅନ୍ତି ନାହିଁ।

ଏହିଭଳି ଏକ ଅଶୈକ୍ଷିକ ବା ଅପଶୈକ୍ଷିକ ପରିବେଶରେ ନୂଆ ନୂଆ ବିଶ୍ୱବିଦ୍ୟାଳୟ ସୃଷ୍ଟି ଏକ ପ୍ରହେଳିକା; ବିଛା ମନ୍ତ୍ର ନ ଜାଣି ସାପ ଗାତରେ ହାତ ପୂରେଇବା କଥା। ଏଥିରେ କେବଳ କୁଳପତି, ରେଜିଷ୍ଟ୍ରାର ଆଦି ଭଳି କିଛି ପଦପଦବି ସୃଷ୍ଟି, କୋଠାବାଡ଼ି ତିଆରି ତଥା ଯାନବାହାନ କିଣା ମାଧ୍ୟମରେ ସର୍ବସାଧାରଣଙ୍କ ଅର୍ଥର ଅପଚୟ ହିଁ ସାର।

ତେଣୁ ନୂଆ ନୂଆ ବିଶ୍ୱବିଦ୍ୟାଳୟ ସୃଷ୍ଟି କରିବା ପୂର୍ବରୁ ଆସନ୍ତୁ ଥରେ ପୃଥିବୀର ଜଣେ ବିଖ୍ୟାତ ଶିକ୍ଷାବିତ୍ ଓ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଆଡ୍‌ଭାନଡ୍ ଷ୍ଟଡ଼ିଜ୍ (ଆଇ.ଏ.ଏସ୍.), ପ୍ରିନ୍‌ସଟନ୍‌ର ପ୍ରତିଷ୍ଠାତା ନିର୍ଦ୍ଦେଶକ ଆବ୍ରାହାମ୍ ଫ୍ଲେକ୍ସନର୍‌ଙ୍କ ନିମ୍ନ ବକ୍ତବ୍ୟଟିକୁ ଧ୍ୟାନର ସହ ଶୁଣି ହୃଦୟଙ୍ଗମ କରିବାର ପ୍ରୟାସ କରିବା। "A genuine university is an ORGANISM, characterised by highness and definiteness of aim, unity of spirit and purpose. But it is obvious that institutions which we have created are not organisms: they are merely administrative aggregations, so varied, so manifold and so complex that administration itself is reduced to budgeting, student accounting, advertising etc. Such aggregations eventhough called universities simply donot possess scientific or educational policy embodied in some appropriate form." କଥାଟି ଆମେରିକାର ବିଶ୍ୱବିଦ୍ୟାଳୟଗୁଡ଼ିକ ପ୍ରତି ଉଦ୍ଦିଷ୍ଟ, ବିଂଶ ଶତାବ୍ଦୀର ଉନ୍ମେଷ କାଳରେ। ଶତାବ୍ଦୀଟିଏ ବିତିଯାଇଥିଲେ ମଧ୍ୟ ଆମ ବିଶ୍ୱବିଦ୍ୟାଳୟ କଥା ତ ଅଗ୍ରେ ଧାବତି ଧାବତି।

ନୂଆ ନୂଆ ବିଶ୍ୱବିଦ୍ୟାଳୟ ସୃଷ୍ଟି ଭଳି ନୂଆ କରି ଓଡ଼ିଶାରେ ଗୋଟିଏ ବିଧାନ ପରିଷଦ ସୃଷ୍ଟି ପାଇଁ ପ୍ରକ୍ରିୟା ଆରମ୍ଭ ହୋଇଛି ବୋଲି ଗଣମାଧ୍ୟମରେ ଜୋର୍ ଚର୍ଚ୍ଚା। ଏ କ୍ଷେତ୍ରରେ ମଧ୍ୟ ବିଗତ କେତେ ବର୍ଷର ବିଧାନସଭା ପରିଚାଳନାରେ ସାମ୍ବିଧାନିକ ବିଭ୍ରାଟ ପରିପ୍ରେକ୍ଷୀରେ ବିଧାନ ପରିଷଦ ସୃଷ୍ଟି ଏକ ଉଦ୍ଭଟ ଚିନ୍ତନ। ଦୀର୍ଘ ୧୫ ବର୍ଷ ଧରି ଶାସନରେ ଥାଇ ଓ ବିଧାନସଭାରେ ବହୁ ସଂଖ୍ୟାଗରିଷ୍ଠତା ଉପଭୋଗ କରି ମଧ୍ୟ ଗୋଟିଏ ଦଳ ବିଭିନ୍ନ ଆଳରେ ନିର୍ଦ୍ଧାରିତ ସମୟ ପାଇଁ ବିଧାନସଭା ଚଳାଇବାରେ

ଅକ୍ଷମତା ପ୍ରଦର୍ଶନ କରିଆସୁଛି। ନିର୍ବାଚିତ 'ସ୍ୱାଧିକାର' ସଚେତନ ବିଧାୟକମାନେ ଜନତାର ସମ୍ବିଧାନ ପ୍ରଦତ୍ତ ସାର୍ବଭୌମତ୍ୱ ବିଷୟରେ ବେଖାତିର ଭାବ ଓ ଅଜ୍ଞତାର ପରିଚୟ ଦେଇ ଆସୁଛନ୍ତି। ସରକାରୀ ନୀତିର ପ୍ରତିବାଦ ଆଳରେ ବିରୋଧୀ ସଭ୍ୟମାନେ କକ୍ଷତ୍ୟାଗ କରି ସ୍ୱଚ୍ଛ ସମୟ ମଧ୍ୟରେ ଗୃହକୁ ଫେରି ଗୃହ ପରିଚାଳନାରେ ସ୍ୱାଭାବିକ ଅବସ୍ଥା ଫେରାଇ ଆଣିବାରେ ସହଯୋଗ ନ କରି ସ୍ୱ ସ୍ୱ ଗୃହକୁ ପ୍ରସ୍ଥାନ କରିବାର ଉଦାହରଣ ବଢ଼ିବାରେ ଲାଗିଛି। ଫଲି ସାନ୍ ନାରିମାନଙ୍କ ଭଳି ସମ୍ବିଧାନ ବିଶେଷଜ୍ଞମାନେ ଲୋକସଭା ଓ ବିଧାନସଭା ପରିଚାଳନାର କ୍ରମବର୍ଦ୍ଧିଷ୍ଣୁ ବିଭ୍ରାଟକୁ ଗଣତନ୍ତ୍ର ପାଇଁ ଏକ ଚିନ୍ତା ଉଦ୍ରେକକାରୀ ଅଶୁଭ ଲକ୍ଷଣ ଭାବରେ ଅଭିହିତ କରିଛନ୍ତି। ପ୍ରତିନିଧିମାନେ ନା ପ୍ରତିନିଧିତ୍ୱ କରୁଛନ୍ତି ଜନସ୍ୱାର୍ଥର, ନା ସୁସ୍ଥ ସାମ୍ବିଧାନିକ ପରମ୍ପରାର। ଏଭଳି ଏକ ଅଧୋପତିତ ରାଜନୈତିକ ପରିବେଶରେ ଆଉ ଗୋଟିଏ ପ୍ରଭାବଶୂନ୍ୟ ପ୍ରବଚନ କକ୍ଷ ଯୋଡ଼ିବାର ପ୍ରୟାସ ନିଶ୍ଚିତ ହାସ୍ୟାସ୍ପଦ କଥା।

ଯେଉଁ ବିଜ୍ଞଜନମାନେ ନିଜ ନିଜ ବିଜ୍ଞତାର ବିକ୍ଷେପଣ ପାଇଁ ଏକ ନିବୁଜ କକ୍ଷ ଅପେକ୍ଷାରେ ଅଛନ୍ତି ସେମାନଙ୍କ ଉପସ୍ଥିତିରେ ହିଁ ଉପରୋକ୍ତ ବିଲକ୍ଷଣଗୁଡ଼ିକର କାୟାବୃଦ୍ଧି ଘଟୁଛି। ସେମାନଙ୍କ ଉପସ୍ଥିତି ଓ ସ୍ଥଳ ବିଶେଷରେ 'ପର୍ଯ୍ୟବେକ୍ଷଣ' ସତ୍ତ୍ୱେ ହେଉ ବା ଯୋଗୁ ହେଉ, ଓଡ଼ିଶାରେ ଶିକ୍ଷା ବ୍ୟବସ୍ଥା ଧୂଳିସାତ୍ ହୋଇଛି; ନିର୍ବାଚନ ପ୍ରକ୍ରିୟା ଏକ ମାସାଧିକ କାଳ ଭୋଜିଭାତ-ଆସରର ରୂପ ନେଇଛି। ସେମାନଙ୍କ ଉପସ୍ଥିତି ସତ୍ତ୍ୱେ 'ଭୂଗୋଳ ପୋଥି ପତରେ ପଛେ' ନାଁ ନ ଥିବା ବ୍ୟକ୍ତିବିଶେଷ ୟୁଜିସି ଓ ଏଆଇସିଟିଇ ଭଳି ସଂସ୍ଥାଗୁଡ଼ିକର ସର୍ବୋଚ୍ଚ ଜାତୀୟ କମିଟିମାନଙ୍କରେ ପ୍ରଥମ ଓଡ଼ିଆ ଭାବେ ସଦସ୍ୟ ହେବାର ଗୌରବ ଅର୍ଜନ କରୁଛନ୍ତି। ସେହି ପ୍ରାଜ୍ଞ ବ୍ୟକ୍ତିମାନଙ୍କ ଉପସ୍ଥିତି ସତ୍ତ୍ୱେ ତ ସ୍ୱାଭାବିକ ଭାବେ କର୍ମକାତର ଓଡ଼ିଆ ତଥାକଥିତ ସରକାରୀ ଜନକଲ୍ୟାଣ କାର୍ଯ୍ୟକ୍ରମଗୁଡ଼ିକ ଯୋଗୁ ହିଁ ହରିବୋଲିଆ ବା ମଦୁଆ ଅବତାରରେ ସମ୍ପୂର୍ଣ୍ଣ ଭାବେ କର୍ମକୋଢ଼ି ହୋଇ ନିଜ ନିଜର ସାମାଜିକ ଓ ଆର୍ଥିକ ଉନ୍ନତିର ସମସ୍ତ ମାର୍ଗ ବନ୍ଦ କରିବାରେ ବ୍ରତୀ ଅଛନ୍ତି। କର୍ମ ଆଉ ଓଡ଼ିଆ ଜାତୀୟ ଜୀବନର ମାନଦଣ୍ଡ ହୋଇ ରହିନାହିଁ। ଖୋଦ୍ ସରକାର ହିଁ ନିଃଶେଷ କରିଚାଲିଛି ଓଡ଼ିଆ ଜାତିର ସମସ୍ତ ଭବିଷ୍ୟତ-ସମ୍ଭାବନାକୁ। ଯୁବବର୍ଗଙ୍କ ସ୍ୱପ୍ନଗୁଡ଼ିକୁ।

ଆଉ ରହିଲା ବିଶେଷଜ୍ଞମାନଙ୍କର ଭୂମିକା କଥା। ଟିକିଏ ନିରେଖି ଦେଖିଲେ ସ୍ପଷ୍ଟ ହୋଇଯିବ ଯେ ଆମ ଶାସନ ପ୍ରଣାଳୀରେ ବିଶେଷଜ୍ଞଙ୍କର ବିଶେଷ ଗୁରୁତ୍ୱ ନାହିଁ; ଯାହା କିଛି ଅଛି ହାତୀର ବାହାରକୁ ଦେଖାଇବା ଦାନ୍ତ ଭଳି। ସରକାରଙ୍କର ବହୁ

ବିଭାଗରେ ତତ୍‌ସମ୍ବନ୍ଧୀୟ ବିଶେଷଜ୍ଞମାନେ ଅଧ୍ୟକ୍ଷ ବା ନିର୍ଦ୍ଦେଶକ ଥିଲେ ମଧ ତାଙ୍କ ଉପରେ ଅଧିକ କ୍ଷମତାସମ୍ପନ୍ନ ଜଣେ ଅଣବିଶେଷଜ୍ଞ ସଚିବ ଓ ମନ୍ତ୍ରୀ ରହିଥାଆନ୍ତି। ସଚିବାଳୟ ଭଳି ଏକ 'କୃଷ୍ଣଗର୍ତ୍ତ' ଭିତରେ ମନ୍ତ୍ରୀ, ସଚିବଙ୍କ ସଙ୍ଗତରେ ଶାସନ ଚାଲେ। ବାହାରୁ କିଛି 'ବିଶେଷଜ୍ଞ' ସେହି ସଂଗତରେ କେବଳ 'ଓ୍ୱା' 'ଓ୍ୱା' କରନ୍ତି। ସେହି ସଂଗତରୁ ହିଁ ଆଜି ଆମର ଏ ଦୁର୍ବିପାକ ଓ ଦୂରାବସ୍ଥା।

ଏହିଭଳି ବିଲକ୍ଷଣ ବିଜଡ଼ିତ ଲକ୍ଷ୍ୟଭ୍ରଷ୍ଟ ବିଭିନ୍ନ ଧରଣର ଅନୁଷ୍ଠାନଗୁଡ଼ିକର ଭଙ୍ଗା-ଦଦରା ରୂପ ଦେଖି ଦେଖି ଅଣନିଶ୍ୱାସୀ ହୋଇ ଯାଉଥିବା ଜାତି ନୂଆ ବିଶ୍ୱବିଦ୍ୟାଳୟ ବା ବିଧାନ ପରିଷଦ ଇତ୍ୟାଦି ସୃଷ୍ଟି ହେବାର ସମ୍ଭାବନାରେ ଭୟଭୀତ ହେବା ସ୍ୱାଭାବିକ। ଏହା ସ୍ପଷ୍ଟ ଯେ ଏଗୁଡ଼ିକ 'କଥା ଆଗେଇବାର' ନୁହେଁ ବରଂ ନଥା ଯୋଡ଼ିବାର ପ୍ରୟାସ। ଗରିବ ଦେଶର ଅର୍ଥ ଅପବ୍ୟୟର ନୂଆ ବାଟ ଖୋଲିବାର ପ୍ରୟାସ। ଯେଉଁଠି ଲକ୍ଷ ଲକ୍ଷ ଲୋକଙ୍କ ପାଇଁ ଦଶନ୍ଧି ଦଶନ୍ଧି ଧରି ପିଇବା ପାଣି ବୁନ୍ଦେ ମିଳିବାର ବ୍ୟବସ୍ଥା ହୋଇପାରୁ ନାହିଁ, ଚିକିତ୍ସା ପାଇଁ ଔଷଧ ଟୋପାଏ ବା ଚିକିତ୍ସକ ଜଣେ ମିଳୁ ନାହାନ୍ତି, ପାଠକୁ ପାଠ ଭଳି ପଢ଼ାଇବାକୁ ଶିକ୍ଷକ ଜଣେ ନାହାନ୍ତି, ସେ କ୍ଷେତ୍ରରେ ଅର୍ଥହୀନ ଶବ୍ଦ-ବିଳାସ ପାଇଁ କାର୍ପଣ୍ୟ କେବଳ ନୁହେଁ ସ୍ପଷ୍ଟ ବିରୋଧ ହିଁ ନାଗରିକ କର୍ତ୍ତବ୍ୟ। "ଯା' ପୁଅକୁ ସାପ କାମୁଡ଼େ ସେ ପାଳ ଦଉଡ଼ି ଦେଖିଲେ ଡରିବା" ତ ସ୍ୱାଭାବିକ କିନ୍ତୁ ଆଲୋଚ୍ୟ କ୍ଷେତ୍ରରେ ସେ ତ ପାଳ ଦଉଡ଼ି ନୁହେଁ ବରଂ ଆଉ ଗୋଟେ ଗୋଟେ ଭୟଙ୍କର ବିଷଧର ସର୍ପ। ସେ ସାପକୁ ଦୁଧ ପେଇବାର ଆବଶ୍ୟକତା କେତେ ଓ ପରିଣାମ କ'ଣ ତାହା ବିସ୍ତାରିତ ଭାବେ କହିବା ଅନାବଶ୍ୟକ।



# ବିପନ୍ନ ଗଣତନ୍ତ୍ର ଓ ବିଷଣ୍ଣ ଜାତୀୟ ଜୀବନ

ବିଭିନ୍ନ ପ୍ରକାର ରାଜନୈତିକ ମତବାଦକୁ ନେଇ ଆଲୋଚନା ସମାଲୋଚନା ଦଶନ୍ଧି ଦଶନ୍ଧି ଧରି ଜାରି ରହିଥିଲେ ମଧ୍ୟ ଦେଶ ଶାସନ ତଥା ପରିଚାଳନାର ସର୍ବୋତ୍କୃଷ୍ଟ ମାର୍ଗ ଭାବରେ ଗଣତନ୍ତ୍ର ସାର୍ବଜନୀନ ସ୍ୱୀକୃତି ଲାଭ କରିଛି। ଗଣତାନ୍ତ୍ରିକ ବ୍ୟବସ୍ଥା, ମଣିଷ ତିଆରି ବିଭିନ୍ନ ପ୍ରକାର ସାମାଜିକ ବ୍ୟବସ୍ଥା ଭଳି ତ୍ରୁଟିଶୂନ୍ୟ ନୁହେଁ, କିନ୍ତୁ ସର୍ବାଧିକ ଲୋକଙ୍କର ସର୍ବାଧିକ ମଙ୍ଗଳ ବିଧାନ ପାଇଁ ସର୍ବୋତ୍ତମ ସାଧନ ଭାବରେ ସର୍ବସମ୍ମତ। କାରଣ ଗଣତାନ୍ତ୍ରିକ ବିଧି ବ୍ୟବସ୍ଥା ଉପରେ ପ୍ରତିଷ୍ଠିତ ସରକାର, "ଲୋକମାନଙ୍କ ଦ୍ୱାରା, ଲୋକମାନଙ୍କର ଓ ଲୋକମାନଙ୍କ ପାଇଁ" ବୋଲି ଲିଙ୍କନଙ୍କ ଉକ୍ତିଟି ଆଜି ମଧ୍ୟ କୋଟିକୋଟି ଲୋକଙ୍କ ମନରେ ଆଶା ଓ ବିଶ୍ୱାସକୁ ଉଜ୍ଜୀବିତ କରି ରଖିଛି।

କିନ୍ତୁ ସ୍ୱାଧୀନ ଭାରତରେ ଗଣତାନ୍ତ୍ରିକ ବିଧିବ୍ୟବସ୍ଥା ମାଧ୍ୟମରେ ପ୍ରତିଷ୍ଠିତ ହୋଇ ଆସୁଥିବା ପ୍ରାଦେଶିକ ତଥା ଜାତୀୟ ସରକାରଗୁଡ଼ିକ ସ୍ୱଳ୍ପ ବ୍ୟତିକ୍ରମ ବ୍ୟତୀତ ସାଧାରଣ ଲୋକମାନଙ୍କ ଆଶା ଓ ବିଶ୍ୱାସର ପ୍ରତିକୂଳରେ ବେଗବାନ ହେଉଥିବାର ବିଲକ୍ଷଣଗୁଡ଼ିକ ଅନ୍ତଃକରଣରେ ଦେଶକୁ ଭଲ ପାଉଥିବା ଓ ଦେଶକୁ ସମୟ ସହ ଉତ୍ତରୋତ୍ତର ଉନ୍ନତି ପଥରେ ଅଗ୍ରସର ହେବାର ସ୍ୱପ୍ନ ଦେଖୁଥିବା ଲୋକମାନଙ୍କୁ ମର୍ମାହତ କରୁଛି।

ପ୍ରଥମତଃ ପ୍ରାୟତଃ ପ୍ରତ୍ୟେକ ରାଜନୈତିକ ଦଳ ଗଣତାନ୍ତ୍ରିକ ଆଦର୍ଶରୁ ବିଚ୍ୟୁତ ହୋଇ ଜଣେ ଜଣେ ସର୍ଦ୍ଦାରଙ୍କ ଦଳ ଭାବରେ ପ୍ରତିଭାତ ହେଲେଣି। ଗଣମାଧ୍ୟମ ସେମାନଙ୍କୁ "ସୁପ୍ରିମୋ" ଆଖ୍ୟା ଦେଇଛି। ଗଣତାନ୍ତ୍ରିକ ପରମ୍ପରା ଉପରେ ପ୍ରତିଷ୍ଠିତ ତଥା ଗଣତାନ୍ତ୍ରିକ ପରମ୍ପରାକୁ ସମୃଦ୍ଧ କରାଇବାର ପ୍ରତିଶ୍ରୁତି ନେଇ ଆଗକୁ ବଢ଼ୁଥିବା ରାଜନୈତିକ ଦଳ ଓ ସର୍ଦ୍ଦାରଙ୍କ ପ୍ରତ୍ୟେକ କୁହା-ଅକୁହା ଆଦେଶକୁ ଶିରୋଧାର୍ଯ୍ୟ କରି ଚଳୁଥିବା ଦଳ ମଧ୍ୟରେ ଥିବା ଅଲଂଘ୍ୟ ପାଚେରୀ ବର୍ଲିନ-ପ୍ରାଚୀର ପରି ଅତୀତର କଥା ହୋଇଗଲାଣି।

ଦ୍ୱିତୀୟତଃ ରାଜନୈତିକ ଦଳଗୁଡ଼ିକ ଅଧିକରୁ ଅଧିକ ଦୁର୍ନୀତିଗ୍ରସ୍ତ, ଅସାମାଜିକ, ଅପରାଧପ୍ରବଣ ଲୋକମାନଙ୍କର ଆଡ୍ଡାସ୍ଥଳୀରେ ପରିଣତ ହେବାରେ ଲାଗିଛି। ଏହା

---

★ ଦୈନିକ "ସମ୍ବାଦ"; ୦୩ ମେ ୨୦୧୭

ହିଁ ସମସ୍ତ ସର୍ବେକ୍ଷଣଗୁଡ଼ିକର ନିଷ୍କର୍ଷ। ସ୍ୱାଧୀନତା ପ୍ରାପ୍ତିର ପରବର୍ତ୍ତୀକାଳରେ ଧୀରେଧୀରେ ଲୋକମାନଙ୍କୁ ଟଙ୍କା ଦେଇ ଭୋଟ୍ ହାତେଇବାର ପ୍ରକ୍ରିୟା ଆରମ୍ଭ ହେଲା। ନିର୍ବାଚନ ଖର୍ଚ୍ଚ ପାଇଁ ରାଜନୈତିକ ଦଳଗୁଡ଼ିକ ଶିଳ୍ପପତିମାନଙ୍କଠାରୁ ଅର୍ଥ ସଂଗ୍ରହ କଲେ ଓ ପ୍ରତି ବଦଳରେ ଶିଳ୍ପସଂସ୍ଥାଗୁଡ଼ିକୁ ନିୟମ ପ୍ରଣୟନ ତଥା ନିୟମ ବାହାରେ ନିଜ ପତିଆରା ମାଧ୍ୟମରେ ପ୍ରଚୁର ଲାଭ ସଂଗ୍ରହରେ ସାହାଯ୍ୟ କଲେ। ଏହି ପରିସ୍ଥିତିର ସୁଯୋଗନେଇ ସ୍ଥଳବିଶେଷରେ ଶିଳ୍ପପତିମାନେ ସରକାରଗୁଡ଼ିକୁ ନିୟନ୍ତ୍ରଣ ମଧ୍ୟ କଲେ। ଭାରତୀୟ ଗଣତନ୍ତ୍ରର 'ବିକାଶ' ଧାରାରେ ପରବର୍ତ୍ତୀ ଦୃଶ୍ୟ ଥିଲା ନିଜନିଜ ଅଞ୍ଚଳରେ ନିର୍ବାଚନ ଯୁଦ୍ଧରେ ଜୟଲାଭ ପାଇଁ କ୍ଷେତ୍ରୀୟ ବାହୁବଳୀମାନଙ୍କର ସାହାଯ୍ୟ ନେବା। ନିର୍ବାଚନଗୁଡ଼ିକରେ ଅର୍ଥବଳ ସହ ବାହୁବଳର ପତିଆରା ବଢ଼ିବାରେ ଲାଗିଲା। ଧୀରେଧୀରେ ବାହୁବାଳୀମାନେ ଭାବିଲେ, "ଆମେ ନିଜେ ବନ୍ଧୁକ ଫୁଟେଇ ନେତା ନ ହୋଇ ଆମ କାନ୍ଧ ଉପରେ ବନ୍ଧୁକ ଥୋଇ ନେତା ବୋଲାଉଥିବା ଲୋକର ଗୋଡ଼ାଣିଆ ହେବୁ କାହିଁକି !" ସେମାନେ ବି ନେତା ହେଲେ। ଦେଖୁଦେଖୁ ନେତାଙ୍କର ବି ନେତା ହେଲେ।

ତୃତୀୟତଃ ବିଭିନ୍ନ ପ୍ରକାର ରାଜନୈତିକ କାରଣ ତଥା ବାଧବାଧକତା ଉପରେ କିଛି ଲୋକଙ୍କୁ ଦାୟାଦ ସୂତ୍ରରେ ମଧ୍ୟ ରାଜନୈତିକ ଦଳର ନେତୃତ୍ୱ ମିଳିଲା।

ମୁଖ୍ୟକଥା ହେଲା ଯେ, ଏହି ତିନି ପ୍ରକାରେ ଗଠିତ ନେତୃତ୍ୱରେ ଓ ନେତୃତ୍ୱାଧୀନ ଦଳମଧ୍ୟରେ ଗଣତାନ୍ତ୍ରିକ ମୂଲ୍ୟବୋଧର ଚିହ୍ନବର୍ଣ୍ଣ ନାହିଁ। ବରଂ ଗଣତାନ୍ତ୍ରିକ ମୂଲ୍ୟବୋଧର ବିପରୀତ ଏକଛତ୍ରବାଦୀ ରାଜତନ୍ତ୍ରର ମୂଲ୍ୟବୋଧ ଅଧିକରୁ ଅଧିକ ପ୍ରକଟିତ ହେଉଛି, ତେଣୁ ସବୁ ରାଜନୈତିକ ଦଳ ମୂଲ୍ୟବୋଧହୀନ ସ୍ଥିତିରେ ଭିନ୍ନଭିନ୍ନ ନାମ, ଭିନ୍ନଭିନ୍ନ ରଙ୍ଗର ଓ ଭିନ୍ନଭିନ୍ନ ଚିହ୍ନର ପତାକା ତଳେ ଏକତ୍ରିତ ହେବା ସତ୍ତ୍ୱେ ଗୁଣଗ୍ରାମରେ ଏକାକାର ହେବାରେ ଲାଗିଛନ୍ତି। ଏ ସମସ୍ତଙ୍କର ଲକ୍ଷ୍ୟ ଏକ – କଳେବଳେ କୌଶଳେ ଶାସନର ଗାଦି ଅକ୍ତିଆର କରିବା ଓ ଶାସନାସୀନ ହୋଇ ଲୋକମାନଙ୍କୁ ଶୋଷଣ କରିବା।

ଏ ଶୋଷଣର ସ୍ୱରୂପ ଅଲଗା। ଜୋରଜୁଲମ ନାହିଁ, ଶାରୀରିକ ଅତ୍ୟାଚାର ନାହିଁ। ଶୋଷଣର କ୍ଷେତ୍ର ଅଥନୈତିକ ଓ ବୌଦ୍ଧିକ। ପ୍ରଧାନ ଅସ୍ତ୍ର ପ୍ରତାରଣା। ବିଭିନ୍ନ ମନମତାଣିଆ ସ୍ଲୋଗାନ ଜରିଆରେ ଲୋକମାନଙ୍କ ମନକୁ ଅକ୍ତିଆର କରିବା ପ୍ରଥମ କାମ। ସମୟ ସମୟକୁ ନୂଆନୂଆ ସ୍ଲୋଗାନ୍ ତିଆରି କରି ଲୋକମାନଙ୍କୁ ସମ୍ମୋହିତ କରି ରଖିବା ହିଁ ମୁଖ୍ୟକଥା। ଆମ ଦେଶରେ "ଗରିବୀ ହଟାଓ", "ସମସ୍ତଙ୍କୁ

ଶିକ୍ଷା", "ସବ୍‌କେ ସାଥ୍, ସବ୍‌କା ବିକାଶ", "ଦୁର୍ନୀତିମୁକ୍ତ ଭାରତ ଗଠନ" ଇତ୍ୟାଦି ଏହିଜାତୀୟ ସ୍ଲୋଗାନ୍‌ଗୁଡ଼ିକର କେତୋଟି ଉଦାହରଣ। କୌଣସିଟି ସ୍ଲୋଗାନ୍ ପଛରେ ସରକାରୀ ଦଳର ରାଜନୈତିକ ପ୍ରତିବଦ୍ଧତାପୂର୍ଣ୍ଣ ଇଚ୍ଛାଶକ୍ତି ନଥିଲା ବା ନାହିଁ। ଇଚ୍ଛାଶକ୍ତି ଥିଲା ସ୍ଲୋଗାନ୍‌ଗୁଡ଼ିକର ଛତ୍ରଛାୟା ତଳେ ଲୁଚିଲୁଚି ଶାସନଗାଦି ଉପରେ ନିଜର ଅକ୍ତିୟାରକୁ ଯେତେ ଦୂର ସମ୍ଭବ ଦୀର୍ଘସ୍ଥାୟୀ କରିବା। ପ୍ରତ୍ୟେକଟି ସ୍ଲୋଗାନ୍ ଜର୍ଜ ଅରୱେଲଙ୍କ "Double Speak" ବା "ବିପରୀତ କଥନ" ଶୈଳୀର ସୁଚତୁର ପ୍ରୟୋଗ; ଯାହା କରିବାକୁ ଚାହିଁବ ତା'ର ବିପରୀତ ସ୍ଲୋଗାନ୍ ଦେଇ ଜନମନ ମୋହିବ !

ଦଳମତ ନିର୍ବିଶେଷରେ ଭାଗ୍ୟଗୁଣ ବଳରେ ଯିଏ ଯେତେବେଳେ ଶାସନକୁ ଆସିଛି ଅଳ୍ପ କେତେକ ବ୍ୟତିକ୍ରମ ବ୍ୟତୀତ ସମସ୍ତେ ଲୋକମାନଙ୍କୁ ଅଧିକରୁ ଅଧିକ ମୂର୍ଖ ଓ ମାଗିଖିଆ ସ୍ତରରେ ରଖିବାକୁ ଚେଷ୍ଟା କରିଛନ୍ତି। ସରକାର ଓ ରାଜନୈତିକ ଦଳମାନଙ୍କର ଏହି ପ୍ରଚେଷ୍ଟାର ଫଳସ୍ୱରୂପ ଆମ ଦେଶରେ ଅର୍ଥନୈତିକ ଅସମାନତା ତୀବ୍ର ହୋଇଛି, ଭଳିକି ଭଳି ଦୁର୍ନୀତି କାୟାବିସ୍ତାର କରି ଜନଜୀବନକୁ ବିକାରଗ୍ରସ୍ତ କରିବା ସହ ଦେଶକୁ ଦୁର୍ବଳ ଓ ହାସ୍ୟାସ୍ପଦ କରି ଚାଲିଛି। ଯୁବପିଢ଼ି ପାଇଁ ନିଯୁକ୍ତି ସୁଯୋଗ ଶୂନ୍ୟପ୍ରାୟ ଅବସ୍ଥାକୁ ଆସିଛି। ମଦ ଓ ମାଦକ ଦ୍ରବ୍ୟର ବ୍ୟବହାର ସାର୍ବଜନୀନ ହେବାରେ ଲାଗିଛି, ବହୁଗୁଣିତ ହୋଇଛି। ପ୍ରତି ସକାଳର ଖବରକାଗଜ ଏହି ପ୍ରକାର କିର୍ତ୍ତୀକଳାପର ଇସ୍ତାହାରରେ ପରିଣତ ହୋଇଛି। ଅନ୍ୟପଟେ ସାର୍ବଜନୀନ ଶିକ୍ଷା ବ୍ୟବସ୍ଥା, ସାଧାରଣ ସ୍ୱାସ୍ଥ୍ୟସେବା, ଗ୍ରାମୀଣ ଗରିବ ଲୋକମାନଙ୍କର ଦୀର୍ଘମିଆଦି ସଶକ୍ତିକରଣ ଯୋଜନା ଇତ୍ୟାଦି ସବୁକିଛି ବିପନ୍ନ। ପ୍ରଶାସନିକ ବ୍ୟବସ୍ଥା, ପୋଲିସ୍ ବ୍ୟବସ୍ଥା ଓ ନିର୍ବାଚନ ପ୍ରକ୍ରିୟାଗୁଡ଼ିକରେ ଲୋକଭିମୁଖୀ ସଂସ୍କାର ପାଇଁ ବିଭିନ୍ନ କମିଶନଗୁଡ଼ିକର ସୁଚିନ୍ତିତ ପରାମର୍ଶ ଶାସକ ଗୋଷ୍ଠୀର ସମର୍ଥନ ପାଇନାହିଁ। ଭୋଟ୍ ସର୍ବସ୍ୱ ରାଜନୀତି କବଳିତ ଗ୍ରାମ୍ୟଜୀବନ ସରଳତା, ସହନଶୀଳତା ଓ ସହଭାଗିତା ବିହୀନ ହୋଇ ଅସହିଷ୍ଣୁତା ଓ ହିଂସାଗ୍ରସ୍ତ ହୋଇଚାଲିଛି। ଏକବିଂଶ ଶତାବ୍ଦୀରେ, ସ୍ୱାଧୀନତାର ୭ ଦଶନ୍ଧି ପରେ ମଧ୍ୟ ଲୋକମାନଙ୍କୁ ବିଶୁଦ୍ଧ ପିଇବା ପାଣି ଉପଲବ୍ଧ ନୁହେଁ, ବଣପାହାଡ଼ ଘେରା ଗାଁ-ଗଣ୍ଡାକୁ ସବୁ ଦିନିଆ ରାସ୍ତା ନାହିଁ; ସରକାରୀ ବିଦ୍ୟାଳୟଗୁଡ଼ିକରେ ଘର ନାହିଁ, ବିଦ୍ୟୁତ୍ ସଂଯୋଗ ନାହିଁ, ବହି ନାହିଁ, ଶିକ୍ଷକ ନାହାଁନ୍ତି; ଡାକ୍ତରଖାନାଗୁଡ଼ିକରେ ଔଷଧ ନାହିଁ, ଡାକ୍ତର ନାହାଁନ୍ତି; କୃଷି କ୍ଷେତ୍ରକୁ ପାଣି ନାହିଁ, କୃଷି ଉତ୍ପାଦରୁ ଅଭାବି ବିକ୍ରିରୁ ରକ୍ଷା କରିବାର ଉପାୟ ନାହିଁ ଇତ୍ୟାଦି ଇତ୍ୟାଦି

ସମସ୍ୟାରେ ଲୋକମାନେ ଆଉଟୁପାଉଟୁ ହେଉଥିବାବେଳେ ସ୍ମାର୍ଟସିଟି, ବୁଲେଟ୍ ଟ୍ରେନ୍ ଭଳି ଯୋଜନା ସବୁ ଦେଶରେ ଓ ଜନସାଧାରଣଙ୍କର ପ୍ରାଥମିକତା ପ୍ରତି କ୍ରୂର ଉପହାସ ଭଳି ମନେ ହେଉଛି ।

ବ୍ୟକ୍ତି ସ୍ୱାଧୀନତାର ମହାନ ପ୍ରବକ୍ତା ଓ ଆମେରିକାର ତୃତୀୟ ରାଷ୍ଟ୍ରପତି ଥମାସ୍ ଜାଫରସନ୍ ଥରେ କହିଥିଲେ, "Two enemies of the people are criminals and Government. So let us tie the second down with the chains of the constitution so that the second will not become the legalised version of the first", ଅର୍ଥାତ୍ "ଅପରାଧୀମାନେ ଓ ସରକାର ଜନସାଧାରଣଙ୍କର ଦୁଇଟି ଶତ୍ରୁ, ତେଣୁ ଆମକୁ ସମ୍ବିଧାନ ଜଞ୍ଜିରରେ ଦ୍ୱିତୀୟଟିକୁ ବାନ୍ଧି ରଖିବାକୁ ହେବ ଯେପରିକି ସରକାର ଅପରାଧୀମାନଙ୍କର ଆଇନ୍ ସମ୍ମତ ସଂସ୍କରଣରେ ପରିଣତ ନ ହୁଏ ।" କିନ୍ତୁ ଆମ ଦେଶରେ ତ ସମ୍ବିଧାନ ଓ ସର୍ବୋଚ୍ଚ ବିଚାରାଳୟ ପ୍ରତି ବେଖାତିର ଭାବ ଧୀରେ ଧୀରେ ଶକ୍ତି ସଂଗ୍ରହ କରିବାରେ ଲାଗିଛି ।

ଜରୁରୀକାଳୀନ ପରିସ୍ଥିତି ଲାଗୁହେବା ଓ ତାକୁ ଆଇନ୍ ସମ୍ମତ କରିବା ପାଇଁ ସମ୍ବିଧାନ ସଂଶୋଧନ କରିବାର ପଦକ୍ଷେପ ନେବା, ସୁପ୍ରିମକୋର୍ଟ ବିଚାରକୁ ଜାତୀୟ କ୍ରିକେଟ୍ କଣ୍ଟ୍ରୋଲ ବୋର୍ଡ଼ (BCCI) ବିଭିନ୍ନ ଆଳ ଦେଖାଇ ଅବମାନନା କରିବା, ଆଧାର କାର୍ଡ଼କୁ କୌଣସି ଜନମଙ୍ଗଳ କାର୍ଯ୍ୟକ୍ରମ ସହ ସଂଯୋଜିତ ନ କରିବା ପାଇଁ ସୁପ୍ରିମକୋର୍ଟଙ୍କ ବାରମ୍ବାର ନିର୍ଦ୍ଦେଶକୁ କେନ୍ଦ୍ର ସରକାର କର୍ଣ୍ଣପାତ ନ କରିବା ଓ ମଦଦୋକାନଗୁଡ଼ିକ ରାଜପଥଠାରୁ ଘୁଞ୍ଚାଇବା ଆଦେଶକୁ ରାଜ୍ୟସରକାରମାନେ ଧର୍ମକୁ ଆଖିଠାର ନୀତିରେ ପାଳିବା ଭଳି ଘଟଣାଗୁଡ଼ିକ ଭବିଷ୍ୟତରେ ଯେ ଜାଫରସନ୍ଙ୍କ ଆଶଙ୍କାକୁ ସତ୍ୟ ପ୍ରମାଣିତ ନ କରିବ କିଏ କହିବ । କାରଣ ଏ ପ୍ରତ୍ୟେକଟି ପଦକ୍ଷେପ ନୀତିହୀନ ଶକ୍ତିଶାଳୀର ଜନମଙ୍ଗଳକର ନୀତି ଓ ବିଚାର ପ୍ରତି ବିଦ୍ରୂପ ସଦୃଶ । ସେହିଭଳି ବର୍ତ୍ତମାନ କେନ୍ଦ୍ର ସରକାରଙ୍କର ବହୁଚର୍ଚ୍ଚିତ ବିମୁଦ୍ରୀକରଣ ଦୁର୍ନୀତି ନିବାରଣ, ଜାଲନୋଟ୍ ପ୍ରଚଳନରୁ ରକ୍ଷା, ଆତଙ୍କବାଦୀ ଓ ବିଚ୍ଛିନ୍ନତାବାଦୀଙ୍କ ଅର୍ଥବଳକୁ ସମାପ୍ତ କରି ସେମାନଙ୍କୁ ଦୁର୍ବଳ କରିବା ଭଳି ସମସ୍ତ ବିଜ୍ଞାପିତ ଲକ୍ଷ୍ୟ ସାଧନରେ ବିଫଳ ହୋଇଥିବା ଲକ୍ଷ୍ୟ କରାଯାଉଛି । ଲୋକମାନେ ହନ୍ତସନ୍ତ ହେବା ହିଁ ସାର ହୋଇଛି କେବଳ । ଶ୍ରୀନଗର ସଂସଦୀୟ ଉପନିର୍ବାଚନରେ ମାତ୍ର ଶତକଡ଼ା ୭ ଭାଗ ମତଦାନ ବିଚ୍ଛିନ୍ନତାବାଦୀ ଶକ୍ତି ଅକ୍ଷୁର୍ଣ୍ଣ ଥିବାର ସଙ୍କେତ ଦେଉଛି ।

ନିର୍ବାଚନଗୁଡ଼ିକରେ ବିଜୟକୁ ଦେଶ ଓ ଲୋକଙ୍କ ବିଷୟରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ସମ୍ବେଦନଶୀଳ ପ୍ରଶ୍ନ ଉପରେ ନିଷ୍ପତ୍ତି ନେବାର ଅଖଣ୍ଡ ଅଧିକାର ଭାବରେ ସରକାରଗୁଡ଼ିକ ଗ୍ରହଣ କରିନେଉଛନ୍ତି । ଉନ୍ନତ ଗଣତାନ୍ତ୍ରିକ ରାଷ୍ଟ୍ରଗୁଡ଼ିକରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗରେ ଯେଭଳି ଜନମତ (Referendum) ଗ୍ରହଣ କରିବାର ପରମ୍ପରା ଅଛି ଆମ ଦେଶରେ ସେଭଳି କିଛି ନାହିଁ । ବହୁଦଳୀୟ ଗଣତାନ୍ତ୍ରିକ ବ୍ୟବସ୍ଥା ଯୋଗୁଁ ସମୁଦାୟ ମତାଧିକାରୀ ବା ମତପ୍ରଦାନକାରୀଙ୍କ ସଂଖ୍ୟାର ବହୁ କମ୍ ଶତାଂଶ ଭୋଟ୍ ପାଇ ମଧ୍ୟ ପ୍ରାର୍ଥୀମାନେ ସଂଖ୍ୟାଗରିଷ୍ଠତା ଭିତ୍ତିରେ ବିଜୟଲାଭ କରୁଛନ୍ତି । ଦିନକୁ ଦିନ ନିର୍ବାଚନ ପ୍ରକ୍ରିୟାରେ ନିର୍ବାଚନ ଆୟୋଗଙ୍କ ସମସ୍ତ ଚେଷ୍ଟା ସତ୍ତ୍ୱେ ଭୋଜିଭାତ, ମଦ ଓ ଅର୍ଥର ଆକର୍ଷଣ ତଥା ଅସାମାଜିକ ଲୋକଙ୍କ ଭୟ ଅଧିକରୁ ଅଧିକ ନିର୍ଣ୍ଣାୟକ ହୋଇଚାଲିଛି । ଜଘନ୍ୟ ଅପରାଧରେ ଲିପ୍ତ ଅପରାଧୀମାନେ ଅଧିକ ସଂଖ୍ୟାରେ ଲୋକପ୍ରତିନିଧି ହେଉଛନ୍ତି । ବହୁସଂଖ୍ୟକ ମତାଧିକାରୀମାନେ ସାମ୍ବିଧାନିକ ବ୍ୟବସ୍ଥା, ନିର୍ବାଚନର ଉଦ୍ଦେଶ୍ୟ, ଲୋକପ୍ରତିନିଧିମାନଙ୍କ ଉତ୍ତରଦାୟିତ୍ୱ, କ୍ଷେତ୍ରୀୟ ତଥା ଜାତୀୟ ସମସ୍ୟା ଓ ନାଗରିକ ଦାୟିତ୍ୱ ସମ୍ବନ୍ଧରେ ଅଜ୍ଞ ହୋଇଥିବାରୁ କେବଳ ବ୍ୟକ୍ତିଗତ ସମ୍ପର୍କ ଓ ସ୍ୱାର୍ଥ ଆଧାରରେ ନିଜନିଜର ମତଦାନ ଅଧିକାରକୁ ସାବ୍ୟସ୍ତ କରିଥାଆନ୍ତି । କେବଳ ଏହି 'ମହତ୍' ଉଦ୍ଦେଶ୍ୟ ସାଧନ ପାଇଁ ରାଜନୈତିକ ଦଳଗୁଡ଼ିକ ଲୋକମାନଙ୍କୁ ମୁର୍ଖ ଓ ମାଗିଖିଆ ସ୍ତରରେ ରଖିବା ପାଇଁ ସମସ୍ତ କୌଶଳ ପ୍ରୟୋଗ କରିଥାଆନ୍ତି । ଫଳତଃ ଆମ ଗଣତନ୍ତ୍ର ତା'ର ସମସ୍ତ ଶୁଦ୍ଧ ଚରିତ୍ରିକଗୁଣ ସବୁ ହରାଇ ବସିଛି । "Ignorance of one voter in democracy impairs the security of all" ଅର୍ଥାତ୍ "ଗଣତନ୍ତ୍ରରେ ଜଣେ ମତାଧିକାରୀର ଅଜ୍ଞତା ସମସ୍ତଙ୍କ ନିରାପତ୍ତାକୁ ବିପନ୍ନ କରେ" ବୋଲି ଯାହା ଆମେରିକାର ରାଷ୍ଟ୍ରପତି କେନେଡ଼ି କହିଥିଲେ ତାହା ହିଁ ହୁଏତ ଆମକୁ ଭୋଗିବାକୁ ପଡୁଛି ।

ତେବେ ମୂଳପ୍ରଶ୍ନ ହେଉଛି ଲୋକମାନେ ସାମୁହିକ ସ୍ୱାର୍ଥ ତଥା ତୃଣମୂଳସ୍ତରୀୟ ଉନ୍ନତି ଦାବି କରିବାରେ ବିମୁଖ ବା ବିଫଳ କାହିଁକି ? ନିଜନିଜ ଗାଁ ବା ଅଞ୍ଚଳ ପାଇଁ ପିଇବା ପାଣି ଟୋପାଏ, ରାସ୍ତାଖଣ୍ଡେ, ସୁପରିଚାଳିତ ବିଦ୍ୟାଳୟଟିଏ ବା ଚିକିତ୍ସାଳୟ ଖଣ୍ଡେ ଦାବି ନ କରି ମଦ, ମାଂସ ଓ ନିଜକୁ ଅଯୋଗ୍ୟ ପ୍ରମାଣିତ କରୁଥିବା ମାଗଣା ଦାନ ଗ୍ରହଣରେ ସନ୍ତୁଷ୍ଟ କାହିଁକି ? ସରଳ ଓ ସଠିକ୍ ଉତ୍ତର ତ ସେମାନଙ୍କ ଅଜ୍ଞତା ଓ ଦାରିଦ୍ର୍ୟ । ସେମାନଙ୍କ ଅଜ୍ଞତାର ସ୍ତର ଏତେ ନିମ୍ନସ୍ତରର ଯେ ସେମାନେ ଜାଣିପାରୁନାହାନ୍ତି ଯେ କୌଣସି ମୁଖ୍ୟମନ୍ତ୍ରୀ ବା ପ୍ରଧାନମନ୍ତ୍ରୀ ନିଜର ବ୍ୟକ୍ତିଗତ ବା ପୈତୃକ ବା ପାରିବାରିକ ସମ୍ପତ୍ତିରେ ମାଗଣା ସଂସ୍କୃତିର ମହାନାୟକ ସାଜି ନାହାନ୍ତି ।

ସମସ୍ତେ ଲୋକମାନଙ୍କ ପଇସାରେ ଲୋକମାନଙ୍କ ପାଖରେ ତ୍ରାଣକର୍ତ୍ତାର ଅଭିନୟ କରୁଛନ୍ତି; ମାଛ ତେଲରେ ମାଛକୁ କଡ଼କଡ଼ କରି ଭାଜିଲା ଭଳି। ସେହିଭଳି ଦୂରାରୋଗ୍ୟ ରୋଗ ଭଳି 'ଅଭାବ' ମଧ୍ୟ ସେମାନଙ୍କୁ "ଅନ୍ନ ଚିନ୍ତା ଚମତ୍କାର" ନ୍ୟାୟରେ ବ୍ୟସ୍ତ, ବିବ୍ରତ ଓ ଚିନ୍ତାଗ୍ରସ୍ତ କରି ରଖିଛି। ବିପୁଳସଂଖ୍ୟକ ଯୁବପିଢ଼ି ମଧ୍ୟ ସେହି ଚିନ୍ତାରେ ଭାରାକ୍ରାନ୍ତ। ପଢ଼ା ଶେଷରେ ସେମାନେ ଦେଖୁଛନ୍ତି ନା ସେମାନେ ଅଶିକ୍ଷିତ ନା ପ୍ରତିଯୋଗିତାମୟ ଦୁନିଆରେ ନିଯୁକ୍ତିକ୍ଷମ ଭାବରେ ଶିକ୍ଷିତ ନା ନିଜ ଶକ୍ତିରେ କିଛି ଗଢ଼ିତୋଳିବା ପାଇଁ ସମର୍ଥ। ସେମାନଙ୍କ ନୈରାଶ୍ୟକୁ କିଛି ମାତ୍ରାରେ ପ୍ରଶମିତ କରୁଛନ୍ତି କ୍ରିକେଟ୍, ସିନେମା, ତଥାକଥିତ "ସୋସିଆଲ ମିଡ଼ିଆ", ସମାନ୍ତରାଳ ଭାବରେ ଗଢ଼ିଉଠୁଥିବା "ମସାଲା ସାହିତ୍ୟ" (Pulp Literature) ବା ପାଶ୍ଚାତ୍ୟର ଅପସଂସ୍କୃତିଗୁଡ଼ିକ ସେମାନଙ୍କ ତତ୍କାଳିକ ସମ୍ମୋହନୀଶକ୍ତି ମାଧ୍ୟମରେ। ସେମାନଙ୍କ ଅଲକ୍ଷ୍ୟରେ ସେମାନଙ୍କ ଜୀବନ ନିରର୍ଥକ ହୋଇଚାଲିଛି। ଏହାମଧ୍ୟ ସରକାରୀ ଚକ୍ରାନ୍ତର ଏକ ଅଂଶ। କାରଣ କୋମଳମତି ଛାତ୍ରଛାତ୍ରୀଙ୍କ ମନରେ ସେମାନଙ୍କ ପ୍ରତିଭା ଆଧାରରେ ଉଚ୍ଚାକାଂକ୍ଷା ଓ ସ୍ୱପ୍ନ ଭରିବାର ପ୍ରତିଶ୍ରୁତି ବହନ କରୁଥିବା ଶିକ୍ଷାବ୍ୟବସ୍ଥା ବର୍ତ୍ତମାନ ସରକାରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ବିଲୁପ୍ତପ୍ରାୟ।

ଶେଷ ପ୍ରଶ୍ନ; ଏଭଳି ଏକ ଗଣତାନ୍ତ୍ରିକ ଓ ରାଜନୈତିକ ଅବକ୍ଷୟରୁ ମୁକ୍ତିର ମାର୍ଗ କ'ଣ ? ମୁକ୍ତିର ମାର୍ଗ କେବଳ ଏକ ସାର୍ବଜନୀନ ସୁଦୃଢ଼ ଉତ୍ତମ ଶିକ୍ଷା ବ୍ୟବସ୍ଥା ଓ ଜନସଚେତନତା। ଗଣତନ୍ତ୍ରର ମୂଳମନ୍ତ୍ରଟି ହେଲା; "Eternal Vigilance is Price of Liberty". ଅର୍ଥାତ୍ "ନିରନ୍ତର ସତର୍କତା ହିଁ ସ୍ୱାଧୀନତାର ମୂଲ୍ୟ", କିନ୍ତୁ ସୁଶିକ୍ଷା ବିନା ସତର୍କତା କାହିଁ ? ତେଣୁ ଗାନ୍ଧୀ, ମଧୁସୂଦନ, ଗୋପବନ୍ଧୁ, ଜୟପ୍ରକାଶ ବା ଲାଲବାହାଦୁରଙ୍କ ଭଳି ଅବତାରୀ ମଣିଟିଏର ଆବିର୍ଭାବକୁ ଅପେକ୍ଷା ନ ରଖି ପ୍ରତ୍ୟେକ ବ୍ୟକ୍ତି, ପିତାମାତା, ଅଭିଭାବକ, ଶିକ୍ଷକ, ପ୍ରଶାସକ ଓ ନାଗରିକ ଇତ୍ୟାଦି ସ୍ତରରେ ନିଜନିଜର କ୍ଷୁଦ୍ରାଦପିକ୍ଷୁଦ୍ର କ୍ଷେତ୍ରରେ ଗଣତାନ୍ତ୍ରିକ ମୂଲ୍ୟବୋଧ, ସାମାଜିକ ମୂଲ୍ୟବୋଧ ତଥା ମା', ମାତୃଭାଷା ଓ ମାତୃଭୂମି ପ୍ରତି ଅଙ୍ଗୀକାରବୋଧର ଗୁଣ୍ଡୁଚିମୂଷା ସଦୃଶ ବାର୍ତ୍ତାବହ ସାଜିବା ହିଁ ଆଜିର ଆହ୍ୱାନ। "ମୋର, ତୁମର ଓ ଆମ ସମସ୍ତଙ୍କର ସ୍ୱର" ଏକାଠି ହେଲେ ଆମର ପ୍ରକୃତ ଜାତୀୟ ସଙ୍ଗୀତ ସୃଷ୍ଟି ହେବ। ସେହି ସଙ୍ଗୀତର ମୂର୍ଚ୍ଛନାରେ ଜାତୀୟ ଜୀବନ ଝଙ୍କୃତ ହେବ; ସାଧାରଣ ଲୋକଟି ହେବ ସେ ସଙ୍ଗୀତର ଗୀତିକାର, ସ୍ୱରସଂଯୋଜକ ଓ ସେହି ସଙ୍ଗୀତର ତାଳେତାଳେ ଦେଶନିର୍ମାଣର ଧର୍ମପଦ।

❐❐❐

# ଅଛେ ଦିନର ପଦ୍ମ !

ନରେନ୍ଦ୍ର ଦାମୋଦର ଦାସ ମୋଦିଙ୍କ ନେତୃତ୍ୱରେ ବିଜେପି ତଥା ଜାତୀୟ ଗଣତାନ୍ତ୍ରିକ ସହବନ୍ଧନ ଦ୍ୱାରା ପରିଚାଳିତ କେନ୍ଦ୍ର ସରକାରଙ୍କର ୩ ବର୍ଷ ପୂରଣ ହେଲା । ସରକାର ଗଠନର ପୂର୍ବବର୍ତ୍ତୀ ସମୟରେ ନିର୍ବାଚନ ପ୍ରଚାର ତଥା ପରବର୍ତ୍ତୀ ସମୟରେ ସରକାର ପରିଚାଳନାରେ ମୋଦିଜୀଙ୍କର କାର୍ଯ୍ୟଦକ୍ଷତା, କୌଶଳ, ନିଷ୍ଠା ଓ ନେତୃତ୍ୱର ଦୃଢ଼ତା ସର୍ବମାନ୍ୟ । ଜଣେ 'କଟ୍ଟରପନ୍ଥୀ ହିନ୍ଦୁତ୍ୱବାଦୀ', '୨୦୦୨ ଗୁଜୁରାଟ ଦଙ୍ଗାର ଖଳନାୟକ', 'ମୌତ୍ କା ସୌଦାଗର' ଭଳି ରାଜନୈତିକ ବିରୋଧୀମାନଙ୍କର ପ୍ରଚଣ୍ଡ ତାଚ୍ଛଲ୍ୟ ଓ ବିରୋଧ, ଗୁଜୁରାଟ ଦଙ୍ଗାରେ ଗୁଜୁରାଟର ମୁଖ୍ୟମନ୍ତ୍ରୀ ଭାବରେ ତାଙ୍କର ଅସମ୍ବିଧାନିକ ଆଚରଣକୁ ନେଇ ବିଭିନ୍ନ ନ୍ୟାୟିକ ଅନୁସନ୍ଧାନ ଓ ୟୁରୋପ, ଆମେରିକା ଦେଶମାନଙ୍କରେ ପ୍ରବେଶ କଟକଣା ଭଳି ଆନ୍ତର୍ଜାତୀୟ ବାସନ୍ଦ ଇତ୍ୟାଦିକୁ ପ୍ରତିହତ କରି 'ସବ୍‌କେ ସାଥ୍, ସବ୍‌କେ ବିକାଶ' ମାଧ୍ୟମରେ "ଅଚ୍ଛେଦିନ ଆଏଗା"ର ସ୍ୱପ୍ନ ବିକି ସେ କେବଳ ନିର୍ବାଚନ ଜିତିଲେ ନାହିଁ ବରଂ ବିଜେପିକୁ ପାର୍ଲାମେଣ୍ଟରେ ଏକକ ସଂଖ୍ୟାଗରିଷ୍ଠତା ଦେଲେ ।

ଭାରତ ଭଳି ଏକ ଅଶିକ୍ଷା, ଦାରିଦ୍ର୍ୟ, ଅନ୍ଧବିଶ୍ୱାସ, ଦୁର୍ନୀତି, ସାମନ୍ତବାଦୀ ଚିନ୍ତାଧାରା ପ୍ରପୀଡ଼ିତ ତଥା ସର୍ବୋପରି ଗଣତାନ୍ତ୍ରିକ ମୂଲ୍ୟବୋଧ ସହ ଐତିହାସିକ ପରିଚୟ ନଥିବା ଦେଶରେ ଗୋଟିଏ ୩ ବର୍ଷ ବୟସ୍କ ସରକାରର କାର୍ଯ୍ୟ ସମୀକ୍ଷାର ବିଶେଷ ତାତ୍ପର୍ଯ୍ୟ ନ ରହିବା ସ୍ୱାଭାବିକ । କିନ୍ତୁ ଖୋଦ୍ ପ୍ରଧାନମନ୍ତ୍ରୀ ନିଜେ ଓ ନିଜ ମନ୍ତ୍ରୀମାନଙ୍କ ମାଧ୍ୟମରେ ନିଜ ସରକାରର କାର୍ଯ୍ୟାବଳୀ ଉପରେ ଜନସାଧାରଣଙ୍କୁ 'ମୋଦି ଫେଷ୍ଟ' ଜରିଆରେ ଅବଗତ କରାଇବା ଉପରେ ଗୁରୁତ୍ୱ ଦେଉଥିବାରୁ ଏହା ଉପରେ ଏକ ଆଲୋଚନା ଗୁରୁତ୍ୱପୂର୍ଣ୍ଣ ।

ବିଗତ ୩ ବର୍ଷରେ ମୋଦି ସରକାରଙ୍କର ଅର୍ଥନୀତି, ବ୍ୟବସାୟ ବାଣିଜ୍ୟ, ନିଯୁକ୍ତି, ଦେଶରକ୍ଷା, ପରିବେଶ ତଥା ବୈଦେଶିକ ନୀତି କ୍ଷେତ୍ରରେ କେତେଗୁଡ଼ିଏ

---

★ ଦୈନିକ "ସମ୍ବାଦ"; ୯ ଜୁନ୍ ୨୦୧୭

ନିଷ୍ପତ୍ତି ଓ ଯୋଜନା ଉଲ୍ଲେଖ ଦାବି କରେ। କିନ୍ତୁ ସେ ସବୁର ଉଲ୍ଲେଖ ପୂର୍ବରୁ ଆମକୁ ସ୍ମରଣ କରିବାକୁ ହେବ ଯେ ପ୍ରଧାନମନ୍ତ୍ରୀ ଭାବରେ ମୋଦିଙ୍କର ପ୍ରଥମ କାମ ଥିଲା କେନ୍ଦ୍ର ସରକାରଙ୍କର ଅଫିସ୍ ପରିସରକୁ ବର୍ଷ ବର୍ଷ ଧରି ପଡ଼ିରହିଥିବା ଭଙ୍ଗାରୁଜା ଆସବାବପତ୍ର, ପୁରୁଣା ଫାଇଲ ଇତ୍ୟାଦିରୁ ମୁକ୍ତ କରିବା ଓ ଇଚ୍ଛାନୁସାରେ ଅଫିସ୍‌କୁ ଆସିବା ଯିବା, ଅଫିସ୍ କାମ ଛାଡ଼ି ଚ' ପାନ, ଭୋଜନ ଓ ଗଲ୍‌ଫ ଖେଳ ଆଦିରେ ଅଭ୍ୟସ୍ତ କର୍ମଚାରୀମାନଙ୍କର ଅଭ୍ୟାସ ବଦଳାଇ କାର୍ଯ୍ୟାଭିମୁଖୀ କରାଇବା। ସେଥିପାଇଁ ତାଙ୍କୁ ମହଲାରୁ ମହଲା, ରୁମ୍‌ରୁ ରୁମ୍ ବୁଲିବାକୁ ପଡ଼ିଛି। ଫଳତଃ ୧୯୪୮ ମସିହାରୁ ଗୃହ ମନ୍ତ୍ରଣାଳୟରେ ପଡ଼ିରହିଥିବା ଲର୍ଡ଼ ମାଉଣ୍ଟ୍ ବାଟେନ୍‌ଙ୍କ ଇଂଲଣ୍ଡ ଫେରିବା ଖର୍ଚ୍ଚ ବାବଦ ୬୪ ହଜାର ଟଙ୍କାର ଅନୁମୋଦନ ଫାଇଲ ବି ମିଳିଲା ଓ ଜାତୀୟ ସଂଗ୍ରହାଳୟକୁ ପଠେଇ ଦିଆଗଲା।

ଅର୍ଥନୈତିକ କ୍ଷେତ୍ରରେ ଦେଶର ଅଭିବୃଦ୍ଧିରେ ଗାଁ-ଗଣ୍ଡାରେ ରହୁଥିବା ଦେଶର ପ୍ରାୟ ଶତକଡ଼ା ୭୦ ଭାଗ ଲୋକଙ୍କର ସହଭାଗିତା ପାଇଁ ତାଙ୍କ ସରକାରଙ୍କର ବିଭିନ୍ନ ଜନକଲ୍ୟାଣ ଯୋଜନାରେ ସେମାନଙ୍କ ପାଇଁ ଉଦ୍ଦିଷ୍ଟ ସହାୟତା ରାଶିର ବାଟମାରଣା ବିଲୋପ ପାଇଁ ମୋଦିଙ୍କର ପ୍ରଧାନମନ୍ତ୍ରୀ-ଜନଧନ ଯୋଜନା ଏକ ସଶକ୍ତ ପଦକ୍ଷେପ। ଏହି ଯୋଜନା ମାଧ୍ୟମରେ ୨୦୧୭ ଏପ୍ରିଲ୍ ସୁଦ୍ଧା ୨୮.୩୮ କୋଟି ଜନଧନ ବ୍ୟାଙ୍କ ଖାତା ଖୋଲା ଯାଇଛି। ଏବେ ଦେଶର ପ୍ରାୟ ସମସ୍ତ ପରିବାର ଏହି ଯୋଜନା ମାଧ୍ୟମରେ ବ୍ୟାଙ୍କ ବ୍ୟବସ୍ଥାର ଅନ୍ତର୍ଗତ ହୋଇଛନ୍ତି ଓ ୬୪ ହଜାର କୋଟି ଟଙ୍କା ବିଭିନ୍ନ ବ୍ୟାଙ୍କରେ ଜମା ହୋଇଛି ବୋଲି କୁହାଯାଉଛି, ଯାହା ଦେଶର ଜନହିତକର କାର୍ଯ୍ୟକ୍ରମରେ ବ୍ୟବହୃତ ହୋଇପାରିବ। ସେହିଭଳି ସାଧାରଣ ଲୋକଙ୍କୁ 'ରୁପେ ଡେବିଟ୍ କାର୍ଡ଼' ଓ କୃଷକମାନଙ୍କୁ 'ରୁପେ କିଷାନ କାର୍ଡ଼' ବଣ୍ଟନର ବ୍ୟବସ୍ଥା କରାଯାଇଛି। ଜନଧନ ଆକାଉଣ୍ଟ୍ ଖୋଲିଥିବା ଲୋକମାନଙ୍କୁ ଏହି କାର୍ଡ଼ ମାଗଣାରେ ବଣ୍ଟନର ବ୍ୟବସ୍ଥା ହୋଇଛି। ହିତାଧିକାରୀମାନଙ୍କ ଖାତାରେ ସରକାରୀ ଅନୁଦାନ ସିଧାସଳଖ ଜମା ହେବା ଦ୍ୱାରା ଏ କ୍ଷେତ୍ରରେ ଦୁର୍ନୀତି ଲୋପ ହେବା ସହିତ ସେମାନେ ଆର୍ଥିକ ଭାବେ ସଶକ୍ତ ହୋଇଛନ୍ତି।

ସବୁ ରାଜ୍ୟର ସହମତି ହାସଲ କରି ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ସାରା ଦେଶରେ ଏକକ କର ଭାବରେ ଦ୍ରବ୍ୟ ଓ ସେବାକର (GST) ଲାଗୁ କରେଇବା ମୋଦି ସରକାରଙ୍କର ନିଶ୍ଚୟ ଏକ ପ୍ରଶଂସନୀୟ ସଂଘୀୟ ସଫଳତା।

ସେଇଭଳି ପରିବେଶ ସୁରକ୍ଷା କ୍ଷେତ୍ରରେ ମଧ୍ୟ ମୋଦି ସରକାରଙ୍କ ସ୍ୱଚ୍ଛ ଭାରତ ଅଭିଯାନ ନିଶ୍ଚିତ ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ। ଏ ନେଇ ପ୍ରଧାନମନ୍ତ୍ରୀଙ୍କ ଆହ୍ୱାନ ଗାଁ-ଗଣ୍ଡା, ସହର-ବଜାର ତଥା ଯାନବାହାନ ଆଦିକୁ ସ୍ୱଚ୍ଛ ରଖିବାରେ ପ୍ରେରଣାଦାୟୀ ହୋଇଥିବା ଦେଖାଯାଉଛି। ପରିବେଶ ସୁରକ୍ଷା କ୍ଷେତ୍ରରେ ଅନ୍ୟ ଦୁଇଟି ବଳିଷ୍ଠ ଯୋଜନା ଉଜାଲା ଓ ଉଜ୍ଜ୍ୱଳା। ଉଜାଲା ଯୋଜନା ମାଧ୍ୟମରେ ୨୦୧୭ ମାର୍ଚ୍ଚ ସୁଦ୍ଧା ପ୍ରାୟ ୨୪ କୋଟି ଏଲଇଡ଼ି ବଲ୍‌ବ ମାଗଣାରେ ବା ସ୍ୱଳ୍ପ ମୂଲ୍ୟରେ ସରକାରଙ୍କ ଦ୍ୱାରା ବଣ୍ଟାଯାଇଛି। ଫଳତଃ ବର୍ଷକୁ ପ୍ରାୟ ୩୧ ନିୟୁତ ୟୁନିଟ୍ ବିଦ୍ୟୁତଶକ୍ତି ଓ ଏହାର ଖର୍ଚ୍ଚ ବାବଦରେ ୧୨ ହଜାର କୋଟି ଟଙ୍କା ସଞ୍ଚୟ କରାଯାଇପାରିଛି। ଏହାଦ୍ୱାରା ପରିବେଶକୁ ବାର୍ଷିକ ୨.୫ (ଅଢ଼େଇ) ଟନ୍ ଅଙ୍ଗାରକାମ୍ଳ ବାଷ୍ପ ପ୍ରଦୂଷଣରୁ ମୁକ୍ତ ରଖାଯାଇଛି। ସେହିଭଳି ଏପ୍ରିଲ୍ ୨୦୧୭ ସୁଦ୍ଧା ଉଜ୍ଜ୍ୱଳା ଯୋଜନା ମାଧ୍ୟମରେ ୨୦ ନିୟୁତ ଗ୍ୟାସ୍ ସିଲିଣ୍ଡର ବଣ୍ଟାଯାଇଛି, ଯାହାର ଉଦ୍ଦେଶ୍ୟ ଗୃହିଣୀମାନଙ୍କୁ ରୋଷେଇ ପାଇଁ ନିର୍ମଳ ଇନ୍ଧନ ଯୋଗାଇବା। ନିର୍ମଳ ଶକ୍ତିର ଉତ୍ସ ଭାବରେ ସୌରଶକ୍ତିର ବ୍ୟବହାରକୁ ୨୦୨୨ ମସିହା ସୁଦ୍ଧା ବର୍ତ୍ତମାନର ୪୫ ହଜାର ମେଗାୱାଟ୍‌ରୁ ୧୭୫ ହଜାର ମେଗାୱାଟ୍‌ରେ ପହଞ୍ଚାଇବା ଲକ୍ଷ୍ୟରେ ମୋଦି ସରକାରଙ୍କ ପ୍ରୟାସ ନିଶ୍ଚୟ ପ୍ରଶଂସନୀୟ।

ଦେଶ ନିରାପତ୍ତା କ୍ଷେତ୍ରରେ 'ସର୍ଜିକାଲ୍ ଷ୍ଟ୍ରାଇକ୍' ଓ ପାକିସ୍ତାନ-ଅଧିକୃତ କାଶ୍ମୀରରେ ପାକିସ୍ତାନ-ବିରୋଧୀ ଆନ୍ଦୋଳନକୁ ସମର୍ଥନ ମାଧ୍ୟମରେ ମୋଦି ସରକାର ପାକିସ୍ତାନ ପ୍ରରୋଚିତ ଆତଙ୍କବାଦ ବିରୋଧରେ ନିର୍ଣ୍ଣାୟକ ପଦକ୍ଷେପ ନେବାର ଦୃଢ଼ତା ପ୍ରଦର୍ଶନ କରିଛନ୍ତି। ଜର୍ଜ ଫର୍ଣ୍ଣାଡ଼ିଜ୍‌ଙ୍କ ଭାଷାରେ ଭାରତର ସବୁଠାରୁ ବଡ଼ ଶତ୍ରୁ ଚୀନ୍‌ର ବିଭିନ୍ନ କୂଟନୈତିକ କୌଶଳକୁ ମଧ୍ୟ ମୁକାବିଲା କରିବାରେ ମୋଦି ସରକାର ଦୃଢ଼ ମନୋବଳ ପ୍ରଦର୍ଶନ କରୁଛନ୍ତି। ମୋଦି ଦୃଢ଼ମନା ବ୍ୟକ୍ତିତ୍ୱ ଓ ସ୍ୱଚ୍ଛନୀତି ମାଧ୍ୟମରେ ଭାରତର ବୈଦେଶିକ ସମ୍ପର୍କ କ୍ଷେତ୍ରରେ ଏକ ନୂତନ ସତେଜତା ଭରିବାରେ ସକ୍ଷମ ହୋଇଛନ୍ତି। ମୋଦିଙ୍କ ଆହ୍ୱାନରେ ଜୁନ୍ ୨୧ ତାରିଖ ବିଶ୍ୱ ଯୋଗ ଦିବସ ଭାବେ ଜାତିସଂଘ ଦ୍ୱାରା ସ୍ୱୀକୃତ ହେବା ଓ ପୃଥିବୀର ୧୯୨ଟି ଦେଶରେ ପାଳିତ ହେବା ମୋଦିଙ୍କର ଆନ୍ତର୍ଜାତୀୟ ପ୍ରତିଷ୍ଠା ଓ ତାଙ୍କ କୋମଳ କୂଟନୀତି ପ୍ରଭାବର ସଙ୍କେତ ଦେଉଛି। ସେହିଭଳି ୨୦୧୭ ମସିହା ମେ ୫ ତାରିଖରେ ଦକ୍ଷିଣ-ଏସିଆ ରାଷ୍ଟ୍ରସଂଘ ବା ସାର୍କ ସଭ୍ୟଦେଶମାନଙ୍କ ବ୍ୟବହାର ପାଇଁ ଭାରତର ଜିଏସ୍ଏଟି-୯ ଉପଗ୍ରହ ପ୍ରକ୍ଷେପଣ ଅନ୍ୟ ଏକ ସ୍ୱାଗତଯୋଗ୍ୟ କୂଟନୈତିକ ପଦକ୍ଷେପ।

ଦେଶରୁ ଦୁର୍ନୀତି ଲୋପ ପାଇଁ ମୋଦି ସରକାରଙ୍କର ୩ଟି ଉଲ୍ଲେଖନୀୟ ପଦକ୍ଷେପ ହେଉଛି ବିମୁଦ୍ରୀକରଣ, ବେନାମୀ-ସମ୍ପତ୍ତି ବିଲ୍ ଓ ଅର୍ଥ ଦେଣ-ନେଣ କ୍ଷେତ୍ରରେ କମ୍ପ୍ୟୁଟର ବ୍ୟବହାର ଉପରେ ଗୁରୁତ୍ୱ ପ୍ରଦାନ। ବିମୁଦ୍ରୀକରଣ ଫଳରେ ଦେଶରେ ନଗଦ ଭାବେ ଗଚ୍ଛିତ ସମସ୍ତ ଅର୍ଥ ବ୍ୟାଙ୍କଗୁଡ଼ିକୁ ଫେରିଆସିବା ଏହି ପଦକ୍ଷେପର ଏକ ସଫଳତା। ବେନାମୀ-ସମ୍ପତ୍ତି ବିଲ୍ ବଳରେ ବେନାମୀ ସମ୍ପତ୍ତିଗୁଡ଼ିକୁ ସରକାରଙ୍କ ମାଲିକାନାକୁ ଆଣିପାରିଲେ ଏହା ମଧ୍ୟ ଦେଶରେ ଦୁର୍ନୀତି ନିବାରଣ କ୍ଷେତ୍ରରେ ଏକ ବଳିଷ୍ଠ ପଦକ୍ଷେପ ହେବ। ସେଇଭଳି ନଗଦହୀନ ଟଙ୍କା କାରବାର ଅର୍ଥ ଦେଣ-ନେଣ କ୍ଷେତ୍ରରେ ସ୍ୱଚ୍ଛତା ଆଣିବା ଦିଗରେ ଏକ ସକାରାତ୍ମକ ପ୍ରୟାସ। ଦୁର୍ନୀତି ବିରୋଧରେ ମୋଦି ସରକାରର ନିଷ୍ଠାର ହୁଏତ ସବୁଠୁ ବଡ଼ ଓ ବଳିଷ୍ଠ ପ୍ରମାଣ ହେଉଛି ଯେ ଏହି ସରକାର ବିରୋଧରେ ଗୋଟିଏ ହେଲେ ଦୁର୍ନୀତି ଅଭିଯୋଗ ନାହିଁ।

ମୋଦି ମଧ୍ୟ ଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ଯେ କି ଫେସ୍‌ବୁକ୍, ଟ୍ୱିଟର ଭଳି ସୋସିଆଲ ମିଡ଼ିଆ, ରେଡ଼ିଓରେ ମନ୍‌କୀବାତ୍ କାର୍ଯ୍ୟକ୍ରମ ଓ ଜନସଭାଗୁଡ଼ିକରେ ନିଜ ଭାଷଣ ଜରିଆରେ ନିଜ ସରକାରଙ୍କର ବିଭିନ୍ନ କାର୍ଯ୍ୟକ୍ରମକୁ ନେଇ ନିରନ୍ତର ଭାବେ ଦେଶର ସାଧାରଣ ଲୋକଙ୍କ ସହ ସମ୍ପର୍କରେ ରହୁଛନ୍ତି। ହୁଏତ ଦେଶର ଜନତା ସହିତ ତାଙ୍କର ଏହି ସମ୍ପୃକ୍ତି ଦିଲ୍ଲୀ, ବିହାର ଓ ପଞ୍ଜାବ ନିର୍ବାଚନରେ ପରାଜୟ ସତ୍ତ୍ୱେ ତାଙ୍କୁ ଉତ୍ତରପ୍ରଦେଶ ସମେତ ବହୁ ସଂଖ୍ୟକ ପ୍ରାଦେଶିକ ନିର୍ବାଚନୀ ବିଜୟରେ ବିମଣ୍ଡିତ କରିଛି। ବସ୍ତୁତଃ ଦେଶବାସୀଙ୍କ ସମ୍ମୁଖରେ ମୋଦି ନିଜକୁ ଜଣେ କର୍ମଠ, ସ୍ୱଚ୍ଛ, ନିଷ୍ଠାବାନ, ଦୂରଦୃଷ୍ଟିସମ୍ପନ୍ନ ଯୋଗ୍ୟ ନେତା ଭାବରେ ଉପସ୍ଥାପିତ କରିବାରେ ସକ୍ଷମ ହୋଇଛନ୍ତି।

ଏସବୁ ସତ୍ତ୍ୱେ ତାଙ୍କ ସରକାର କେତେଗୁଡ଼ିଏ ପ୍ରକୃତିଗତ ଦୁର୍ବଳତା ଦେଖିବାକୁ ମିଳୁଛି। ମୋଦି ସରକାରଙ୍କ ବିରୁଦ୍ଧରେ ସବୁଠାରୁ ବଡ଼ ଆକ୍ଷେପ ହେଉଛି ଯେ ଏହା ଏକ ହିନ୍ଦୁତ୍ୱବାଦୀ ସରକାର। "ଭାରତୀୟ ସମ୍ବିଧାନ ମୋ ସରକାରର ଏକମାତ୍ର ଧର୍ମଗ୍ରନ୍ଥ ଓ ଜାତି-ଧର୍ମ ନିର୍ବିଶେଷରେ ସମସ୍ତ ନାଗରିକମାନଙ୍କ କଲ୍ୟାଣ ମୋ ସରକାରର ଧର୍ମ" ବୋଲି ପ୍ରଧାନମନ୍ତ୍ରୀଙ୍କ ସ୍ପଷ୍ଟ ଘୋଷଣା ସତ୍ତ୍ୱେ ଆଦିତ୍ୟ ଯୋଗୀଙ୍କୁ ଉତ୍ତର ପ୍ରଦେଶର ମୁଖ୍ୟମନ୍ତ୍ରୀ କରିବା, କିଛି ନେତା ଓ ପଦାଧିକାରୀଙ୍କ ଅସାମ୍ବିଧାନିକ ମନ୍ତବ୍ୟ ତଥା ଗୋରକ୍ଷକ ଭଳି କିଛି ସ୍ୱୟଂସେବକ ଦଳମାନଙ୍କର ଅପରାଧ ପ୍ରବଣ କାର୍ଯ୍ୟଶୈଳୀ

ମୋଦି ସରକାରଙ୍କୁ ଏକ ନକାରାତ୍ମକ ଚିତ୍ର ପ୍ରଦାନ କରୁଛି। ହିନ୍ଦୁତ୍ୱବାଦ ଆକ୍ଷେପରୁ ନିଜ ସରକାରଙ୍କୁ ମୁକ୍ତ ରଖି ଭାରତୀୟତାରେ ଦୀକ୍ଷିତ କରିବା ପାଇଁ ମୋଦିଙ୍କୁ ଅବିଶ୍ରାନ୍ତ ଭାବରେ ସଚେତନ ଓ ପ୍ରଚେଷ୍ଟାରତ ରହିବାକୁ ପଡ଼ିବ।

ଜି.ଏସ୍.ଟି ଓ ଆଧାର କାର୍ଡ଼ ପ୍ରଚଳନକୁ କେନ୍ଦ୍ର ସରକାର ନିଜର ସଫଳତା ଭାବରେ ଉପସ୍ଥାପନ କରୁଥିଲାବେଳେ କଂଗ୍ରେସ ସରକାର ସମୟରେ ସେଗୁଡ଼ିକର ତୀବ୍ର ବିରୋଧ ବିଜେପି ଦଳର ବିଚାର-ଦାରିଦ୍ର୍ୟକୁ ହିଁ କେତେକାଂଶରେ ପ୍ରକଟ କରୁଛି। ଆଧାର କାର୍ଡ଼କୁ କୌଣସି ଜନକଲ୍ୟାଣକାରୀ ଯୋଜନା ସହ ସଂପୃକ୍ତ ନ କରିବାକୁ ଉଚ୍ଚତମ ନ୍ୟାୟାଳୟର ନିର୍ଦ୍ଦେଶ ସତ୍ତ୍ୱେ କେନ୍ଦ୍ର ସରକାର ସେଥିପ୍ରତି ଅଧିକରୁ ଅଧିକ ନିଷ୍ଠା ପ୍ରଦର୍ଶନ କରିବା ଦ୍ୱାରା ନାୟପାଳିକାର ଅବମାନନା କରାଯିବା ସହ ଜନମାନସରେ ନ୍ୟାୟପାଳିକାର ଭାବମୂର୍ତ୍ତି କ୍ଷୁର୍ଣ୍ଣ ହେଉଛି। ସେହିଭଳି ଆଧାର ଯୋଜନା ମାଧ୍ୟମରେ ଦେଶର ଆବାଳବୃଦ୍ଧବନିତା ସମସ୍ତଙ୍କର ବାୟୋମେଟ୍ରିକ୍ ତଥ୍ୟ ନେବାର ଦାୟିତ୍ୱ ମୂଳତଃ ତିନୋଟି ଆମେରିକୀୟ କମ୍ପାନି ଉପରେ ନ୍ୟସ୍ତ କରିବା ଓ ଏହି ତଥ୍ୟ ସମୟ ସମୟରେ ପ୍ରଘଟ ହୋଇଯିବା ଖବର ସରକାରଙ୍କର ବିଚାର ଓ ଦେଶର ତଥ୍ୟଗୁଡ଼ିକୁ ଗୋପନୀୟ ରଖିବାର ସାମର୍ଥ୍ୟ ଉପରେ ପ୍ରଶ୍ନବାଚୀ ସୃଷ୍ଟି କରୁଛି।

ଦେଶ ଅର୍ଥନୀତି ପରିଚାଳନାରେ ମଧ୍ୟ ଗତାନୁଗତିକ ଧାରାରେ ଶୁଦ୍ଧ ବ୍ୟବସାୟିକତାର ଚିହ୍ନ ସ୍ପଷ୍ଟ। ଅର୍ଥନୀତି କେବଳ ଜି.ଡି.ପି-ସର୍ବସ୍ୱ ଓ ପୁଞ୍ଜିଭିତ୍ତିକ ହୋଇଯାଉଛି। ଜି.ଡି.ପି. ର ଏଚ୍.ଡି.ଆଇ. ଉପରେ ପ୍ରଭାବ କଥା ବିଚାର ଆଲୋଚନା ମଧ୍ୟରେ ନାହିଁ କହିଲେ ଚଳେ। ଶିକ୍ଷିତ ଯୁବଶକ୍ତିର ନିଯୁକ୍ତି ପାଇଁ କୌଣସି ଦୀର୍ଘସୂତ୍ରୀ ଯୋଜନା ନାହିଁ। କେବଳ ଜି.ଡି.ପି.-ଭିତ୍ତିକ ପ୍ରଗତି ହିଁ ତ ଆଜି ଆମ ପାଇଁ ବିଶ୍ୱ ଉତ୍ତପ୍ତୀକରଣ, ତୀବ୍ର ଅର୍ଥନୈତିକ ଅସମାନତା ଓ ରାଜନୀତି କ୍ଷେତ୍ରରେ ଧନୀ-ବ୍ୟବସାୟୀ ଅପରାଧୀ ତନ୍ତ୍ରକୁ ସବଳ କରୁଛି। ଏହାରି ଭିତରେ ହୁଏତ ନିହିତ ରହିଛି ମାନବ ସଭ୍ୟତାର ଧ୍ୱଂସ। ମୋଦି ସରକାର ଏଭଳି ସୃଷ୍ଟି-ଧ୍ୱଂସକାରୀ "ଅର୍ଥନୈତିକ ବିକାଶ" ପ୍ରତି ସଚେତନ ହେବା ସମୟର ଆହ୍ୱାନ।

ନିଜର ଲୋକପ୍ରିୟତା ଓ ସଂସଦୀୟ ସଂଖ୍ୟାଗରିଷ୍ଠତା ସତ୍ତ୍ୱେ ମୋଦି ବିଭିନ୍ନ କମିସନ୍ ଦ୍ୱାରା ପ୍ରସ୍ତାବିତ ଓ ବହୁ ପ୍ରତୀକ୍ଷିତ ପ୍ରଶାସନିକ ଓ ପୋଲିସ୍ ବ୍ୟବସ୍ଥାରେ ସଂସ୍କାର ପାଇଁ ଆଗ୍ରହ ପ୍ରଦର୍ଶନ କରିନାହାନ୍ତି। ଭାରତର ରୁଗ୍ଣ ଶିକ୍ଷା ବ୍ୟବସ୍ଥାର ଗୁଣାତ୍ମକ ମାନବୃଦ୍ଧି ପାଇଁ ବିହିତ ପଦକ୍ଷେପ ବା ଦୃଷ୍ଟି ଆକର୍ଷଣକାରୀ ବ୍ୟୟବରାଦର ମଧ୍ୟ ସୂଚନା ନାହିଁ। ମୋଦି ସରକାର ଆରମ୍ଭ କରିଥିବା ବିଭିନ୍ନ କାର୍ଯ୍ୟକ୍ରମ ମୋଟାମୋଟି

ଭାବରେ ବିଜ୍ଞାପନରୁ ଆରମ୍ଭ ହୋଇ ବିଜ୍ଞାପନରେ ଶେଷ ହୋଇଯିବା ହିଁ ଦେଖାଯାଉଛି। ସ୍ୱାଧୀନତା ପ୍ରାପ୍ତିର ଦୀର୍ଘ ୭୦ ବର୍ଷ ପରେ ମଧ୍ୟ ପ୍ରତିଟି ଲୋକ ପାଖରେ ବିଶୁଦ୍ଧ ପାନୀୟ ଜଳ, ସୁଲଭ ସ୍ୱାସ୍ଥ୍ୟସେବା, ଗୁଣାତ୍ମକ ଶିକ୍ଷା, ଯୋଗ୍ୟତା ଅନୁରୂପ ନିଶ୍ଚିତ ନିଯୁକ୍ତି, ବିଦ୍ୟୁତଶକ୍ତି, ଜଳସେଚନ ଓ ସବୁଦିନିଆ ଗମନାଗମନ ଭଳି ସର୍ବନିମ୍ନ ସୁବିଧା ଅପହଞ୍ଚ ରହିଥିବା ସ୍ଥଳେ ସ୍ମାର୍ଟ ସିଟି, ବୁଲେଟ୍ ଟ୍ରେନ୍ ଓ ପାଇପରେ ଗ୍ୟାସ୍ ଯୋଗାଣ ଭଳି ପରିହାର୍ଯ୍ୟ କାର୍ଯ୍ୟକ୍ରମରେ ବିପୁଳ ଅର୍ଥ ବିନିଯୋଗ ସରକାରଙ୍କର ଆଭିମୁଖ୍ୟ ଓ ପ୍ରାଥମିକତା ଉପରେ ପ୍ରଶ୍ନବାଚୀ ସୃଷ୍ଟି କରିବା ସ୍ୱାଭାବିକ।

ଦେଶବାସୀଙ୍କ ମନରେ କିଛି ଆଶା, କିଛି ସ୍ୱପ୍ନ ଓ କିଛି ପ୍ରଶ୍ନବାଚୀ ସୃଷ୍ଟି କରି ମୋଦି ସରକାର ପୂରଣ କରିଛନ୍ତି ୩ଟି ବର୍ଷ। ଆଶା ଓ ସ୍ୱପ୍ନଗୁଡ଼ିକର ସଫଳ ରୂପାୟନ ଓ ପ୍ରଶ୍ନବାଚୀଗୁଡ଼ିକର ସନ୍ତୋଷଜନକ ସମାଧାନ ଆଣିଦେବ "ଅଚ୍ଛେ ଦିନ"। ନଚେତ୍ "ଅଚ୍ଛେ ଦିନ"ର ପଦ୍ମ ହାତ ପାଆନ୍ତାରେ ଲାଗୁଥିଲେ ବି ଘୁଞ୍ଚି ଘୁଞ୍ଚି ଯାଉଥିବ।



# ଉତ୍ତପ୍ତ ଧରଣୀ, ସନ୍ତପ୍ତ ପ୍ରାଣୀ

## (ଓଡ଼ିଶା ପଦାର୍ଥ ବିଜ୍ଞାନ ପରିଷଦର ସପ୍ତବିଂଶତମ ସମ୍ମିଳନୀ ଉପଲକ୍ଷେ)

କୁହାଯାଏ ମହାକବି କାଳିଦାସ ପିଲାଦିନେ ଅତ୍ୟନ୍ତ ମୂର୍ଖ ଥିଲେ। ଯେଉଁ ଡାଳରେ ବସିଥିଲେ ସେହି ଡାଳକୁ ହିଁ ମୂଳରୁ ଛେଦନ କରୁଥିଲେ। ଦିନେ ସେହି କାଳିଦାସଙ୍କ କବିତାର ଔଜ୍ଜ୍ୱଲ୍ୟରେ ମଣିଷର ଭାବଜଗତ ଯାଜ୍ଜ୍ୱଲ୍ୟମାନ ହେଲା। ସେ ହୋଇଗଲେ ସଂସ୍କୃତ ଭାଷାର ସର୍ବଶ୍ରେଷ୍ଠ ରୂପକାର। ସେହିଭଳି ଦସ୍ୟୁ ରତ୍ନାକର ବାଲ୍ମୀକି ଋଷି ହେଲେ। ସେ ରାମାୟଣ ରଚନା କରି ମାନବୀୟ ମର୍ଯ୍ୟାଦାର ଶୀର୍ଷତମ ଆଦର୍ଶ ପ୍ରତିଷ୍ଠା କଲେ। ଚଣ୍ଡାଶୋକ ଧର୍ମାଶୋକ ହୋଇ ପୃଥିବୀ ଇତିହାସରେ ରାଜନ୍ୟ ମଣ୍ଡଳୀଙ୍କ ମଧ୍ୟରେ ଅନନ୍ୟ କୀର୍ତ୍ତିମାନ ସ୍ଥାପନ କଲେ। ବିଲାତ ପଢୁଆ ଓକିଲ ମୋହନଦାସ ଅହିଂସାର ମହାତ୍ମା ଓ ମୁକ୍ତିକାମୀ ମଣିଷର ମଶାଲ ଭାବେ ଉଭା ହେଲେ। ବିପ୍ଲବୀ ଅରବିନ୍ଦ ପରମଯୋଗୀ ଶ୍ରୀ ଅରବିନ୍ଦ ସାଜିଲେ। ଏହିଭଳି ଅନେକ ଉଦାହରଣ ଅଛି ଜଣେ ଜଣେ ଅସାଧାରଣ ବ୍ୟକ୍ତି ବିଶେଷଙ୍କର ନିଜ ନିଜ ଜୀବନକାଳ ମଧ୍ୟରେ ଏକ ଏକ ନୂତନ ବିଭୂତି ନେଇ ଅବତୀର୍ଣ୍ଣ ହେବାର। ଏହିଭଳି ଏକ ପରୀକ୍ଷାର, ହୁଏତ ଅନ୍ତିମ ପରୀକ୍ଷାର-ଦ୍ୱାର ଦେଶରେ ଆଜି ଦଣ୍ଡାୟମାନ ଏକ ବ୍ୟକ୍ତି ବିଶେଷ ନୁହେଁ, ବରଂ ସମଗ୍ର ମାନବଜାତି। ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ସଫଳତା ତଥା ସମ୍ଭୋଗମୟ ଜୀବନଯାପନର ସ୍ୱପ୍ନରେ ବିଭୋର ହୋଇ ମଣିଷ ସତେ ଯେପରି ପୃଥିବୀ ପୃଷ୍ଠରେ ନିଜ ଅସ୍ତିତ୍ୱ ହରାଇବାର ଫ୍ରାଙ୍କେନ୍‌ଷ୍ଟାଇନୀୟ ସମ୍ଭାବନାଟି ସୃଷ୍ଟି କରିଦେଇଛି। ଜନୈକ ବୌଦ୍ଧ ଭିକ୍ଷୁଙ୍କର ପ୍ରଜ୍ଞାବାଣୀ, "ଭଗବାନ ମଣିଷ ହାତରେ ସ୍ୱର୍ଗର ଚାବି ଦେଇଛନ୍ତି, କିନ୍ତୁ ସେହି ଗୋଟିଏ ଚାବିରେ ହିଁ ନର୍କର ଦ୍ୱାର ଖୋଲେ" ସତେ ଯେପରି ଆଜି ଆମକୁ ଉପହାସ କରୁଛି। ମଣିଷ ଜାତି ବ୍ୟକ୍ତିସର୍ବସ୍ୱ ଭୋଗବାଦ ପରିତ୍ୟାଗ କରି ଜାତି-ମନସ୍କ, ଜଗତ-ମନସ୍କ ହୋଇ ଅନ୍ୟ ଏକ ଅବତାର ଗ୍ରହଣ କରିପାରିବ କି ନାହିଁ ତାହା ହିଁ ପ୍ରଶ୍ନ।

---

* ଦୈନିକ "ସମ୍ବାଦ"; ୧୩ ଫେବୃୟାରୀ ୨୦୧୦

ପୃଥିବୀପୃଷ୍ଠରେ ଜୀବଜଗତର ଭବିଷ୍ୟତ ନେଇ ପ୍ରଶ୍ନବାଚୀ ସୃଷ୍ଟି ହୋଇଛି ପରିବେଶ ପ୍ରଦୂଷଣ ଜନିତ ବାୟୁମଣ୍ଡଳର ଉତ୍ତାପ ବୃଦ୍ଧି ଓ ଜଳବାୟୁ ପରିବର୍ତ୍ତନକୁ ନେଇ। ବାୟୁମଣ୍ଡଳ ପ୍ରଦୂଷିତ କରୁଥିବା ବାଷ୍ପଗୁଡ଼ିକ ହେଲେ ମୁଖ୍ୟତଃ ଅଙ୍ଗାରକାମ୍ଳ, ମିଥେନ୍ ଓ ନାଇଟ୍ରସ୍ ଅକ୍ସାଇଡ୍, କ୍ଲୋରୋଫ୍ଲୋରୋକାର୍ବନ ଇତ୍ୟାଦି। ଅଙ୍ଗାରକାମ୍ଳ ଓ ନାଇଟ୍ରସ୍ ଅକ୍ସାଇଡ୍ ଯାନବାହନ, କଳକାରଖାନା ଓ ଘରେ ଜାଳେଣି ଭାବରେ ବ୍ୟବହୃତ କୋଇଲା, ଖଣିଜ ତୈଳ ଓ ଅନ୍ୟାନ୍ୟ ଜାଳେଣିଗୁଡ଼ିକର ଜ୍ୱଳନରୁ ହିଁ ମୁଖ୍ୟତଃ ନିର୍ଗତ ହୋଇଥାନ୍ତି। ମିଥେନ ସାଧାରଣତଃ କୃଷିକ୍ଷେତ୍ର ଓ ଜୈବିକ ବସ୍ତୁ ବିଘଟନରୁ ସୃଷ୍ଟି ହୁଏ। କ୍ଲୋରୋଫ୍ଲୋରୋକାର୍ବନ ବାଷ୍ପ ରେଫ୍ରିଜେଟର, ଅଗ୍ନି ନିର୍ବାପକ ଓ ସ୍ପ୍ରେ-ଅତର ଇତ୍ୟାଦିରୁ ନିର୍ଗତ ହୁଏ। ଏହି ସମସ୍ତ ବାଷ୍ପଗୁଡ଼ିକର, ବିଶେଷତଃ ଅଙ୍ଗାରକାମ୍ଳ ବାଷ୍ପର ଉତ୍ତାପ ଧାରଣ କ୍ଷମତା ଅଧିକ। ଏଥି ଯୋଗୁ ଏହି ବାଷ୍ପଗୁଡ଼ିକ ସବୁଜଗୃହ ପ୍ରଭାବ-ପୃଥିବୀ ଛାଡୁଥିବା ଅତିଲୋହିତ ରଶ୍ମିର ଅବଶୋଷଣ ଓ ଉତ୍ସର୍ଜନ ପ୍ରକ୍ରିୟା-ସୃଷ୍ଟି କରି ବାୟୁମଣ୍ଡଳର ତାପ ବଢ଼ାଇବାରେ ସକ୍ଷମ ହୁଅନ୍ତି। ବାୟୁମଣ୍ଡଳରେ ଜଳୀୟବାଷ୍ପର ଆଧିକ୍ୟ ମଧ୍ୟ ସବୁଜଗୃହ ପ୍ରଭାବ ସୃଷ୍ଟିରେ ପ୍ରମୁଖ ଭୂମିକା ଗ୍ରହଣ କରେ। ସେଥିପାଇଁ ଏହି ବାଷ୍ପଗୁଡ଼ିକୁ ସବୁଜଗୃହ ବାଷ୍ପ ବୋଲି ଅଭିହିତ କରାଯାଏ। ୧୭୬୦ ମସିହା ପରଠାରୁ ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ବାଷ୍ପର ସାନ୍ଦ୍ରତା ଶତକଡ଼ା ୩୦ ଭାଗ ବୃଦ୍ଧି ପାଇଛି; ୨୮୦ ନିୟୁତାଂଶ (ପିପିଏମ୍)ରୁ ବଢ଼ି ୩୬୫ ନିୟୁତାଂଶରେ ପହଞ୍ଚିଛି। ଏହି ବୃଦ୍ଧି ଗତ ଶତାବ୍ଦୀରେ ବାୟୁମଣ୍ଡଳର ତାପମାତ୍ରା ୦.୭୫ ଡିଗ୍ରୀ ସେଣ୍ଟିଗ୍ରେଡ୍ ବଢ଼ାଇବାର କାରଣ ହୋଇଛି। ବର୍ତ୍ତମାନ ପ୍ରଚଳିତ 'ଜୀବନଯାତ୍ରା' ଅପରିବର୍ତ୍ତିତ ରହିଲେ ୨୧୦୦ ମସିହା ବେଳକୁ ବାୟୁମଣ୍ଡଳରେ ସବୁଜଗୃହ ବାଷ୍ପଗୁଡ଼ିକର ସାନ୍ଦ୍ରତା ୭୦୦ ନିୟୁତ ଶତାଂଶରୁ ଅଧିକ ହେବ ବୋଲି ଆକଳନ କରାଯାଉଛି। ଏହା ବାୟୁମଣ୍ଡଳର ତାପମାତ୍ରା ୧ ରୁ ୩.୬ ଡିଗ୍ରୀ ସେଣ୍ଟିଗ୍ରେଡ୍ ପର୍ଯ୍ୟନ୍ତ ବୃଦ୍ଧି ଘଟାଇବ। ଏପରି ଉତ୍ତାପ ବୃଦ୍ଧି ବିଗତ ୧୦ ହଜାର ବର୍ଷ ଭିତରେ କେବେ ଦୃଷ୍ଟିଗୋଚର ହୋଇନାହିଁ।

ବାୟୁମଣ୍ଡଳୀୟ ଉତ୍ତାପ ବୃଦ୍ଧି ଅନେକ ଆନୁସଙ୍ଗିକ କୁପ୍ରଭାବକୁ ଜନ୍ମ ଦେବ। ଉତ୍ତାପ ବୃଦ୍ଧି ଦ୍ୱାରା ଜାଗତିକ ଜଳଚକ୍ର ତ୍ୱରାନ୍ୱିତ ହେବ। ତ୍ୱରାନ୍ୱିତ ବାଷ୍ପୀକରଣ ବାୟୁମଣ୍ଡଳରେ ଜଳୀୟ ବାଷ୍ପର ଆଧିକ୍ୟ ସୃଷ୍ଟି କରିବା ସହ ଅଧିକ ମାତ୍ରାରେ ଶୁଖିଲା ଜମି ସୃଷ୍ଟି କରିବ। ବର୍ଷାଭାବ ଯୋଗୁଁ ମରୁଡ଼ି ପରିସ୍ଥିତି ବ୍ୟାପକ ହେବ। ଉତ୍ତାପ

ବୃଦ୍ଧିର ପ୍ରଭାବରେ ମେରୁ ଅଞ୍ଚଳର ହିମଖଣ୍ଡ ତରଳିବା ଫଳରେ ସମୁଦ୍ର ପତ୍ତନ ଚଳିତ ଶତାବ୍ଦୀରେ ୧୫ ରୁ ୯୪ ସେଣ୍ଟିମିଟର ପର୍ଯ୍ୟନ୍ତ ବୃଦ୍ଧି ପାଇବାର ସମ୍ଭାବନା ରହିଛି। ସମୁଦ୍ର ପତ୍ତନ ୫୦ ସେ.ମି ପାଖାପାଖି ବୃଦ୍ଧି ପାଇଲେ ସମୁଦ୍ର ନିକଟବର୍ତ୍ତୀ ୫୦-୬୦ କୋଟି ଲୋକ ସାମୁଦ୍ରିକ ଜୁଆର ଦ୍ୱାରା କ୍ଷତିଗ୍ରସ୍ତ ହେବେ। ବାୟୁମଣ୍ଡଳ-ଉତ୍ତାପର ଆଧିକ୍ୟ ଅନେକ ସ୍ୱାସ୍ଥ୍ୟଗତ ସମସ୍ୟା ମଧ୍ୟ ସୃଷ୍ଟି କରିବ। ଡେଙ୍ଗୁ, ମାଲେରିଆ, କଲେରା, ହଳଦିଆ ଜ୍ୱର ତଥା ଆଲର୍ଜି ଜନିତ ରୋଗ ବୃଦ୍ଧି ପାଇବ। ୨୧୦୦ ମସିହା ବେଳକୁ ବର୍ଷକୁ ଅଧିକ ୫-୬ କୋଟି ଲୋକ କେବଳ ମାଲେରିଆ ଦ୍ୱାରା ଆକ୍ରାନ୍ତ ହେବେ ବୋଲି ଅନୁମାନ କରାଯାଉଛି। ପୃଥିବୀପୃଷ୍ଠରୁ ଜୈବ-ବିବିଧତା ମଧ୍ୟ କ୍ରମଶଃ ଲୋପ ପାଇଚାଲିବ। ଗୋଟିଏ ଆକଳନରୁ ଜଣାପଡ଼ିଛି ଯେ, ବାୟୁମଣ୍ଡଳର ଉତ୍ତାପ ବୃଦ୍ଧି ଅବ୍ୟାହତ ରହିଲେ ୨୩୫୦ ମସିହା ସୁଦ୍ଧା ପୃଥିବୀ ପୃଷ୍ଠର ହିମଖଣ୍ଡ ତରଳି ସମଗ୍ର ପୃଥିବୀ ଜଳପ୍ଲାବିତ ହୋଇ ପ୍ରଳୟ-ପ୍ରାୟ ପରିସ୍ଥିତି ସୃଷ୍ଟି କରିବ।

ସୁଖର କଥା ଯେ, ଉତ୍ତପ୍ତ ପୃଥିବୀ ନିମନ୍ତ୍ରଣ କରି ଆଣୁଥିବା ମହାବିପଦ ସମ୍ବନ୍ଧରେ ମଣିଷ ସମାଜ ସନ୍ତପ୍ତ ଓ ଗଭୀର ଭାବରେ ସଚେତନ ହେଉଛି। ଆଞ୍ଚଳିକଠାରୁ ଆନ୍ତର୍ଜାତିକ ସ୍ତର ଯାଏ ସବୁଠି ଜାଗତିକ ତାପବୃଦ୍ଧି ସମସ୍ୟା ଓ ସମାଧାନ ଉପରେ ସମୀକ୍ଷା ଓ ପର୍ଯ୍ୟାଲୋଚନା ଚାଲୁରହିଛି। ଆନ୍ତର୍ଜାତିକ ସମ୍ମିଳନୀଗୁଡ଼ିକ ମଧ୍ୟରେ ୧୯୮୭ ମସିହା କାନାଡ଼ାର ମଣ୍ଟ୍ରିଲ, ୧୯୯୭ ମସିହାରେ ଜାପାନର କିୟୋଟୋ ଓ ୨୦୦୯ ଡିସେମ୍ବରରେ କୋପେନ୍‌ହେଗେନ୍ ସହରରେ ଅନୁଷ୍ଠିତ ଜାତିସଂଘ ସମ୍ମିଳନୀଗୁଡ଼ିକ ମୁଖ୍ୟ। ଏହି ସମ୍ମିଳନୀଗୁଡ଼ିକରେ ବାୟୁମଣ୍ଡଳରେ ସବୁଜଗୃହ ପ୍ରଭାବ ସୃଷ୍ଟିକାରୀ ବାଷ୍ପଗୁଡ଼ିକର, ବିଶେଷକରି ଅଙ୍ଗାରକାମ୍ଳ ବାଷ୍ପର ସମୟ-ଭିତ୍ତିକ ନିୟନ୍ତ୍ରଣ ଉପରେ ଗୁରୁତ୍ୱ ଆରୋପ କରାଯାଉଛି। କିୟୋଟୋ ସମ୍ମିଳନୀ ସିଦ୍ଧାନ୍ତ ବା କିୟୋଟୋ ପ୍ରୋଟୋକୋଲରେ ପୃଥିବୀର ୧୮୭ଟି ଦେଶ ସହମତି ସୂଚକ ସ୍ୱାକ୍ଷର କରିଛନ୍ତି। ଜାତିସଂଘ ଆନୁକୂଲ୍ୟରେ ବିଗତ ୨୧ ବର୍ଷ ଧରି ଏକ "ଅନ୍ତର୍ଦେଶୀୟ ଜଳବାୟୁ ପରିବର୍ତ୍ତନ ସମୀକ୍ଷା ସଂସ୍ଥା" (ଆଇ.ପି.ସି.ସି.)ମଧ୍ୟ ସେମାନଙ୍କର ବୈଜ୍ଞାନିକ ପଦ୍ଧତି ଭିତ୍ତିକ ଅନୁଶୀଳନ ଜାରି ରଖିଛନ୍ତି। ଉତ୍ତମମାନର କାର୍ଯ୍ୟକ୍ରମ ପାଇଁ ୨୦୦୭ ମସିହାର ନୋବେଲ ଶାନ୍ତି ପୁରସ୍କାର ଏହି ସଂସ୍ଥାକୁ ମିଳିଥିଲା। ବର୍ତ୍ତମାନ ଭାରତୀୟ ପରିବେଶବିତ୍ ଡଃ ଆର.କେ.ପଚୌରୀ ଏହି ସଂସ୍ଥାର ମୁଖ୍ୟ ଦାୟିତ୍ୱରେ ଅଛନ୍ତି।

ସବୁଜଗୃହ ପ୍ରଭାବ ସୃଷ୍ଟିକାରୀ ବାଷ୍ପ ନିୟନ୍ତ୍ରଣର ମୁଖ୍ୟ ଉପାୟଗୁଡ଼ିକ ମଧ୍ୟରେ ରହିଛି-ବ୍ୟାପକ ବୃକ୍ଷରୋପଣ, ଗରିବ ଦେଶମାନଙ୍କରେ ଜନ୍ମ ନିୟନ୍ତ୍ରଣ, କୋଇଲା ଓ ପେଟ୍ରୋଲ ଜ୍ୱଳନରୁ ଶକ୍ତି ଉତ୍ପାଦନ ହ୍ରାସ କରି ସୌରଶକ୍ତି, ପବନଶକ୍ତି, ଭୂତାପଜଶକ୍ତି ଏପରିକି ନାଭିକୀୟ ଶକ୍ତି ଇତ୍ୟାଦିର କ୍ରମବର୍ଦ୍ଧିଷ୍ଣୁ ଉତ୍ପାଦନ ଓ ବ୍ୟବହାର। ଏଥି ସହିତ ନୂତନ ପ୍ରଯୁକ୍ତିବିଦ୍ୟା ଉପଯୋଗକରି ସ୍ୱଳ୍ପ ଶକ୍ତି ବିନିଯୋଗରେ କଳକାରଖାନା, ଯାନବାହାନ ତଥା ବୈଦ୍ୟୁତିକ ଗୃହ ଉପକରଣଗୁଡ଼ିକ ଚଳାଇବାର କାର୍ଯ୍ୟକ୍ରମ ତଥା ନୂତନ ଗୃହନିର୍ମାଣ ଶୈଳୀ ଇତ୍ୟାଦି ମଧ୍ୟ ଅନ୍ତର୍ଭୁକ୍ତ। ଏସବୁ ଦିଗରେ ଉନ୍ନତ ଓ ବିକଶିତ ଦେଶଗୁଡ଼ିକ ଦୀର୍ଘମିଆଦୀ ବୃହତ୍ ଯୋଜନାଗୁଡ଼ିକ ଉପରେ କାର୍ଯ୍ୟକ୍ରମମାନ ଆରମ୍ଭ କରି ସାରିଲେଣି। ଶିଳ୍ପବିପ୍ଳବ ପରଠାରୁ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ନିରନ୍ତର ସମ୍ଭୋଗଧର୍ମୀ ଜୀବନାଭିମୁଖୀ ହୋଇ ଆଜି ଯେଉଁ ବିପଜ୍ଜନକ ପରିସ୍ଥିତି ସୃଷ୍ଟି କରିଛନ୍ତି ତାହାର ସମାଧାନ ହୁଏତ ଜୀବନଧର୍ମୀ ବିକଳ୍ପ ପ୍ରଯୁକ୍ତିବିଦ୍ୟା ଓ ବିକଳ୍ପ ଶକ୍ତି ଉତ୍ପାଦନ ସୂତ୍ର ମାଧ୍ୟମରେ ସେହି ବିଜ୍ଞାନ ହିଁ ବାଢ଼ିବ।

କେବଳ ବିଜ୍ଞାନ ହାତରେ କିନ୍ତୁ ଜୀବଜଗତର ଭାଗ୍ୟ ଡୋରି ଛାଡ଼ିଦେଇ ବସିପଡ଼ିଲେ ହେବ ନାହିଁ। ଉଦ୍ଭବ ପରିସ୍ଥିତରୁ ମୁକୁଳିବା ପାଇଁ ମଣିଷକୁ ସରଳ, ସମ୍ବେଦନଶୀଳ, ପ୍ରକୃତିପରାୟଣ ଜୀବନ ନେଇ ବଞ୍ଚିବାକୁ ହେବ। ପ୍ରାଚୁର୍ଯ୍ୟ ନୁହେଁ, ଅତ୍ୟାବଶ୍ୟକତା ହିଁ ହେବ ଦ୍ରବ୍ୟାଦି ଆହରଣର ମୂଳ ସୂତ୍ର। କେବଳ ନିଜର ନୁହେଁ, ପଡ଼ୋଶୀର ସୁଖ ମଧ୍ୟ ହେବ ପରମ କାମ୍ୟ। କେବଳ ନିଜ ଦେଶର ନୁହେଁ, ସମଗ୍ର ପୃଥିବୀର ଶାନ୍ତି ଓ ପ୍ରଗତି ହେବ ରାଜନୀତି ଓ ଅର୍ଥନୀତିର ମୂଳମନ୍ତ୍ର। ଏହି ଦୃଷ୍ଟିରୁ ବିଭିନ୍ନ ଆନ୍ତର୍ଜାତିକ ସମ୍ମିଳନୀଗୁଡ଼ିକରେ ବିକଶିତ ଦେଶଗୁଡ଼ିକ ସବୁଜଗୃହ ପ୍ରଭାବସମ୍ପନ୍ନ ବାଷ୍ପଗୁଡ଼ିକର ସାନ୍ଦ୍ରତା ନିୟନ୍ତ୍ରଣ ଆଳରେ ଗରିବ ଓ ବିକାଶଶୀଳ ଦେଶଗୁଡ଼ିକ ଉପରେ ଏକାପ୍ରକାର କଟକଣା ଲାଗୁ କରିବା ଶୁଭଙ୍କର ନୁହେଁ। ଫଳସ୍ୱରୂପ ବିକଶିତ ଦେଶଗୁଡ଼ିକରେ ବିଳାସ-ବ୍ୟସନ ଓ ଗରିବ ଦେଶରେ ଅଭାବ-ଅନଟନ ଚିରସ୍ଥାୟୀ ହୋଇଯିବ। ଏଭଳି ଏକ ଅସନ୍ତୁଳିତ ଅର୍ଥନୈତିକ ବ୍ୟବସ୍ଥା ଦେଶଦେଶ ମଧ୍ୟରେ ଅବିଶ୍ୱାସ ଓ ଅର୍ଥହୀନ ପ୍ରତିଦ୍ୱନ୍ଦ୍ୱିତା ମାଧ୍ୟମରେ ଜଳବାୟୁ ପରିବର୍ତ୍ତନ ଭଳି ଜାଗତିକ ସମସ୍ୟାକୁ ଅଧିକ ଉତ୍କଟ ରୂପ ଦେବ ସିନା, ସମାଧାନରେ ସହାୟକ ହେବ ନାହିଁ। ସେହିଭଳି ଗରିବ ଓ ବିକାଶଶୀଳ ଦେଶଗୁଡ଼ିକର ସରକାର କେବଳ ଅସାଧୁ ଉପାୟରେ ଲୋକଙ୍କ ଭୋଟ ଉପରେ ନଜର ନ ରଖି ବିକଶିତ ଦେଶଗୁଡ଼ିକଙ୍କ ସହ ସମକକ୍ଷ

ହେଲାଭଳି ସୁଦୃଢ ଶିକ୍ଷା, ସ୍ୱାସ୍ଥ୍ୟ, ଜନକଲ୍ୟାଣ କାର୍ଯ୍ୟକ୍ରମ ଗ୍ରହଣ କରିବା ହିଁ ଆଜିର ପରମ ଆବଶ୍ୟକତା।

ବାୟୁମଣ୍ଡଳୀୟ ଉତ୍ତାପବୃଦ୍ଧି ଓ ପାଣିପାଗ ପରିବର୍ତ୍ତନ ଭଳି ଏକ ଜାଗତିକ ସମସ୍ୟାର ଗୁରୁତ୍ୱ ଦୃଷ୍ଟିରୁ ଓଡ଼ିଶା ପଦାର୍ଥବିଜ୍ଞାନ ପରିଷଦ ସପ୍ତବିଂଶତମ ବାର୍ଷିକ ଅଧିବେଶନରେ ଏହାକୁ ମୁଖ୍ୟ ଆଲୋଚ୍ୟ ବିଷୟ ଭାବରେ ରଖାଯାଇଛି। କୁହାଯାଏ ବିପର୍ଯ୍ୟୟ ଏକ ନୂତନ ସୃଷ୍ଟିର ସମ୍ଭାବନା ସୃଷ୍ଟି କରେ। ମାନବଜାତି, କୃତକର୍ମର ଫଳସ୍ୱରୂପ ଆଜି ଏକ ଆସନ୍ନ ବିଲୟ ସମ୍ମୁଖରେ ଅବତୀର୍ଣ୍ଣ ହୋଇ, ଯେ ପୁଣିଥରେ ଅକ୍ଷୟ ଅମୃତର ଧାରାକୁ ଫେରିଆସି ନିଜର ଅନ୍ତର୍ନିହିତ ପ୍ରଜ୍ଞାର ପରିଚୟ ଦେବ, ଏହା ହିଁ ଆଜିର ଆଶା ଓ ଆହ୍ୱାନ।



# ବିଜ୍ଞାନ ବ୍ୟଥା

ପ୍ରକୃତିର ଗଭୀର ଅଧ୍ୟୟନରୁ ବିଜ୍ଞାନର ସୃଷ୍ଟି । ସେହି ବିଜ୍ଞାନ ହିଁ ସଜାଇ ଚାଲିଛି ମଣିଷର ଜୀବନ ଓ ସଭ୍ୟତାକୁ ନୂଆ ରୂପ, ରସ ଓ ରଙ୍ଗରେ । ଆଜି ମଣିଷ ପହଞ୍ଚିଛି ଏପରି ଏକ ସ୍ଥାନରେ ଯେଉଁଠି ସେ ସର୍ବମୌଳିକ କଣା ଇଲେକ୍ଟ୍ରନ୍ ଓ କ୍ୱାର୍କ୍‌ଠାରୁ ଆରମ୍ଭ କରି ସର୍ବବୃହତ୍ ବିଶ୍ୱରୂପକୁ ନିଜ ଗବେଷଣାର ପରିଧି ମଧ୍ୟରେ ଅନ୍ତର୍ଭୁକ୍ତ କରିପାରିଛି; ପ୍ରକୃତିର ଛତ୍ରେ ଛତ୍ରେ ଅନୁରଣିତ ମୋହନସ୍ୱରରେ ବିଜ୍ଞାନୀ ହୋଇଛି ସ୍ତବ୍ଧ, ସ୍ତମ୍ଭୀଭୂତ ଓ ଆତ୍ମବିଭୋର । ଯଥାର୍ଥରେ କହିଛନ୍ତି ଊନବିଂଶ-ବିଂଶ ଶତାବ୍ଦୀର ଅନ୍ୟତମ ଶ୍ରେଷ୍ଠ ଗଣିତଜ୍ଞ-ପଦାର୍ଥବିଜ୍ଞାନୀ ହେନ୍‌ରି ପଏଙ୍କରେ, "ବିଜ୍ଞାନର ଉପଯୋଗିତାକୁ ଲକ୍ଷ୍ୟ ରଖି କେହି ବିଜ୍ଞାନରେ ମନୋନିବେଶ କରେ ନାହିଁ ବରଂ ସେ ବିଜ୍ଞାନାବିଷ୍ଟ ହୁଏ ନିର୍ମଳ ଆନନ୍ଦର ଅନୁଭବ ପାଇଁ । ସେ ଆନନ୍ଦ ପାଏ କାରଣ ପ୍ରକୃତି କଳ୍ପନାତୀତ ଭାବେ ରହସ୍ୟମୟ ଓ ସୌନ୍ଦର୍ଯ୍ୟମୟ । ପ୍ରକୃତି ଯଦି ସୌନ୍ଦର୍ଯ୍ୟମୟ ହୋଇନଥାନ୍ତା, ତା'ହେଲେ ସେ ମଧ୍ୟ ଅଧ୍ୟୟନଯୋଗ୍ୟ ହୋଇନଥାନ୍ତା । ଆଉ ପ୍ରକୃତି ଯଦି ଅଧ୍ୟୟନଯୋଗ୍ୟ ହୋଇନଥାନ୍ତା ଜୀବନ ଜିଇବା-ଯୋଗ୍ୟ ହୋଇନଥାନ୍ତା ।"

ଗୋଟିଏ ପକ୍ଷରେ ଏହିଭଳି ବୌଦ୍ଧିକ ତଥା ଆଧ୍ୟାତ୍ମିକ ମାନସିକତାରୁ ଜ୍ଞାନ-ବିଜ୍ଞାନର ଉନ୍ମେଷ ହୁଏ ତ ଅନ୍ୟପକ୍ଷରେ ଏକ ଉଷ୍ମ, ପ୍ରେରଣା ସ୍ପନ୍ଦିତ ପରିବେଶରେ ସୃଷ୍ଟିଶୀଳ ମାନସିକତା ପରିସ୍ଫୁଟିତ ଓ ପରିପୁଷ୍ଟ ହୁଏ । ସ୍ଥାନ, କାଳ ନିର୍ବିଶେଷରେ ସୃଜନ ଇତିହାସର ଏହାହିଁ ଏକମାତ୍ର ଆଧାରଶିଳା; ହେଉ ଅବା ସେ ପ୍ରାଚୀନ ନଦୀକୂଳର ସଭ୍ୟତା ବା ହିନ୍ଦୁ, ଚୀନ୍ ଓ ଗ୍ରୀସ୍‌ର କଥା ଅବା ମଧ୍ୟପ୍ରାଚ୍ୟ ତଥା ଆଧୁନିକ ପାଶ୍ଚାତ୍ୟ ଜଗତ୍‌ର ନବଉନ୍ମେଷର ଗାଥା ।

ବିଜ୍ଞାନର ପ୍ରୟୋଗଶାଳା ଆଜି ଏତେ ଉନ୍ନତ ଓ ଏତେ ପରିବ୍ୟାପ୍ତ ଯେ ଏହାର ଛୋଟ ଛୋଟ ସାଜସରଞ୍ଜାମଗୁଡ଼ିକୁ ଛାଡ଼ି ସାଧାରଣ ଜୀବନ ନିର୍ବାହ କଥା ମଧ୍ୟ ଚିନ୍ତା କରାଯାଇ ନ ପାରେ । ବିଜ୍ଞାନକୁ ଉପଯୋଗ କରି ବହୁମୂଲ୍ୟ ଅଭିନବ

---

★ ଦୈନିକ "ସମ୍ବାଦ"; ୧୫ ଫେବୃୟାରୀ ୨୦୧୨

ଯନ୍ତ୍ରପାତିର ବ୍ୟବହାର କରି ୟୁରୋପ୍, ଆମେରିକା, ଜାପାନ ପ୍ରଭୃତି ଦେଶ ଶିକ୍ଷା, କୃଷି, ସ୍ୱାସ୍ଥ୍ୟ ଓ ଶିଳ୍ପ ଭଳି ମୌଳିକ କ୍ଷେତ୍ରରେ ଅଭୂତପୂର୍ବ ପ୍ରଗତି ହାସଲ କରିବା ସହ ପୃଥିବୀର ଶ୍ରେଷ୍ଠ ଅର୍ଥନୈତିକ ଶକ୍ତି ଭାବରେ ଉଭା ହୋଇଛନ୍ତି। ସାମରିକଶକ୍ତି ମଧ୍ୟ ବିଜ୍ଞାନ ଉପଯୋଗିତାର ଅନ୍ୟ ଏକ ପରିପ୍ରକାଶ। ବିଜ୍ଞାନ ଓ ତା'ର ଉପଯୋଗିତା ଏକ ବ୍ୟାପକ ବିଷୟବସ୍ତୁ ହୋଇଥିବା ଦୃଷ୍ଟିରୁ ଆମେ ପ୍ରଥମେ ନିରୋଳା ବିଜ୍ଞାନ ଉପରେ ହିଁ ଦୃଷ୍ଟି ନିବଦ୍ଧ କରିବା। ତା'ର ଆଉ ଏକ କାରଣ ହେଲା ପ୍ରଥମେ ବିଜ୍ଞାନ ଜନ୍ମ ନିଏ; ତା'ପରେ ବିଜ୍ଞାନର ଅନୁଧାବନ କରେ ପ୍ରୟୋଗ। ସେଥିପାଇଁ କୁହାଯାଏ ଆଜି ଯାହା ବିଜ୍ଞାନ, ଆସନ୍ତାକାଲି ତାହା ପ୍ରଯୁକ୍ତିବିଦ୍ୟା। ତେଣୁ ପ୍ରଥମର କଥା ପ୍ରଥମେ।

ଜ୍ଞାନର ଅନ୍ୟ ସବୁ ବିଭାଗ ଭଳି ବିଜ୍ଞାନ ମଧ୍ୟ ଗୋଟିଏ ପ୍ରେରଣା ପ୍ରଦାୟୀ ପରିବେଶର ଅପେକ୍ଷା ରଖେ। ପ୍ରେରଣାପୂର୍ଣ୍ଣ ପରିବେଶର ପ୍ରଥମ ପାହାଚ ପ୍ରାଥମିକ ଶିକ୍ଷା, ସେହି ସମୟରେ ହିଁ ପିଲାଟି ପରିଚିତ ହୁଏ ତା'ର ପ୍ରାକୃତିକ ପରିବେଶ ସହ। ସେହି ପରିଚୟରୁ ସୃଷ୍ଟି ହୁଏ ପ୍ରକୃତିକୁ ଭଲ ପାଇବାର ପ୍ରଥମ ସ୍ପନ୍ଦନ। ପିଲାମନର ଏହି ଅସ୍ପଷ୍ଟ ସ୍ପନ୍ଦନ ଧୀରେ ଧୀରେ ସ୍ପଷ୍ଟ ହୁଏ ବିସ୍ମୟ ବିଚଡ଼ିତ ପ୍ରଶ୍ନ ସବୁରେ, ପ୍ରଶ୍ନ ସବୁର ସମାଧାନ ଜିଜ୍ଞାସାରେ। କୁହାଯାଏ, "ଉପରୁ ତଳକୁ ଖସିଲା ବେଳେ ମଣିଷ କାହିଁକି ନିଜର ଓଜନ ଅନୁଭବ କରିପାରେ ନାହିଁ ପ୍ରଶ୍ନଟିର ଉତ୍ତର ଖୋଜି ଖୋଜି ଆଇନ୍‌ଷ୍ଟାଇନ୍ ସୃଷ୍ଟି କଲେ ସାଧାରଣ ଆପେକ୍ଷିକ ତତ୍ତ୍ୱ ଯାହା ଅଢ଼େଇ ଶହ ବର୍ଷର ପୁରୁଣା ନିଉଟନ୍‌ଙ୍କ ମହାକର୍ଷଣ ତତ୍ତ୍ୱକୁ ଦେଲା ପୂର୍ଣ୍ଣତା ଓ ଯାହାର ଅନୁଧ୍ୟାନରୁ ସୃଷ୍ଟି ହେଲା ବ୍ରହ୍ମାଣ୍ଡ ବିଜ୍ଞାନ।" 'ସମୁଦ୍ରର ପାଣି କାହିଁକି ନୀଳ ଦିଶେ ?' ପ୍ରଶ୍ନର ଅନୁଧାବନ କରି ସି.ଭି.ରାମନ୍ ପ୍ରତିଷ୍ଠା କଲେ ରାମନ୍ ପ୍ରଭାବ, ଯାହାର ପ୍ରଭାବ ଆଜି ବିଜ୍ଞାନର ଛତ୍ରେ ଛତ୍ରେ ଅନୁଭୂତ। ପକ୍ଷୀ ଭଳି ଆକାଶରେ ଅନାୟାସରେ ଉଡ଼ି ପାରିବାର ସ୍ୱପ୍ନ ସାକାର ହେଲା ରାଇଟ୍ ଭ୍ରାତୃଦ୍ୱୟଙ୍କ ହାତରେ ଉଡ଼ାଜାହାଜ ନାମକ 'ପୁଷ୍ପକ ଯାନ' ନିର୍ମାଣରେ। ଏହିଭଳି ସବୁ ଚମତ୍କାରୀ ସୃଷ୍ଟି ମୂଳରେ ଲୁଚି ରହିଛି ଗୋଟିଏ ଗୋଟିଏ ପ୍ରଶ୍ନ, ଗୋଟିଏ ଗୋଟିଏ ସ୍ୱପ୍ନ ଓ ସେ ସବୁକୁ ଆତ୍ମସ୍ଥ କରିଥିବା ଗୋଟିଏ ଗୋଟିଏ ମନ ଓ ମସ୍ତିଷ୍କ; ଗୋଟିଏ ଗୋଟିଏ ସୃଜନଶକ୍ତିଧାରୀ ମଣିଷ।

ଏଭଳି ପ୍ରଶ୍ନଦଗ୍ଧ ବା ସ୍ୱପ୍ନାବିଷ୍ଟ ମନ ସୃଷ୍ଟି କରିବାରେ ପରିବାର, ଗାଁ, ସମାଜ ସବୁକିଛିର ଭୂମିକା ତ ରହିଛି, କିନ୍ତୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ହେଉଛି ଶିକ୍ଷାୟତନଗୁଡ଼ିକର। ଶିକ୍ଷାୟତନର ସାଙ୍ଗସାଥୀ, ଶିକ୍ଷକ, ବହି, ବଗିଚା, ଖେଳପଡ଼ିଆ

ତଥା ବିଭିନ୍ନ ରଚନାତ୍ମକ କାର୍ଯ୍ୟକ୍ରମର ଆନନ୍ଦଭରା ପରିବେଶର କୋମଳ ସ୍ପର୍ଶରେ ଶିଶୁ ମନ ନିଜ ନିଜ ବାଗରେ ମୁକୁଳିତ ହେବାର କଥା, ସୃଜନର ପହିଲି କିରଣର ଉଷ୍ମତା ଅନୁଭବ କରିବା କଥା, କିନ୍ତୁ ଅତ୍ୟନ୍ତ ଦୁଃଖ ଓ ପରିତାପର କଥା ଭାରତୀୟ ସ୍ୱାଧୀନତାର ବୟସ ବଢ଼ିବା ସହ ଦେଶର ଶିକ୍ଷାୟତନଗୁଡ଼ିକର ପରିକଳ୍ପିତ ସ୍ୱପ୍ନିଳ ପରିବେଶ ଅଧିକରୁ ଅଧିକ ଦୁଃଶାସନ ଓ ଦୁରଭିସନ୍ଧିର ଶିକାର ହୋଇ ନଷ୍ଟବିନଷ୍ଟ ହୋଇଯାଉଛି। ଗଣମାଧ୍ୟମଗୁଡ଼ିକରେ ଭାରତର ଅଭିବୃଦ୍ଧି ହାର ଆଶାତୀତ ଭାବରେ ବଢ଼ିଥିବାର, ଭାରତ ପୃଥିବୀର ବିରାଟ ଅର୍ଥନୈତିକ ଶକ୍ତି ହୋଇଯିବାର ଚିତ୍କାର ବଢୁଛି, କିନ୍ତୁ ପ୍ରଶ୍ନ ହେଲା, ତେବେ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ଆଗରୁ ଚଳି ଆସୁଥିବା ଶିକ୍ଷକ ଏବଂ ଛାତ୍ରଙ୍କ ସମନ୍ୱୟର ସୁସ୍ଥ, ସୁଚିନ୍ତିତ ବ୍ୟବସ୍ଥାଗୁଡ଼ିକୁ ଭାଙ୍ଗି ଦିଆଯାଉଛି କାହିଁକି ? 'ଅଭିବୃଦ୍ଧ' ତା'ହେଲେ କାହା ପାଇଁ, କେଉଁଥିପାଇଁ ? ସେହିଭଳି ମାଧ୍ୟମିକ ସ୍ତରରେ ମଧ୍ୟ ଦାନା ବାନ୍ଧି ଆସୁଥିବା ବିଜ୍ଞାନାଗାର ସୃଷ୍ଟିକରି ପରୀକ୍ଷା-ନିରୀକ୍ଷାର ସଂସ୍କୃତିକୁ ମଧ୍ୟ ଫୋପାଡ଼ି ଦିଆଗଲା। 'ପଇସା ନାହିଁ' 'ପଇସା ନାହିଁ' ଭଳି ଦରିଦ୍ର ପଞ୍ଚାକ୍ଷର ଜପି ଜପି ମହାବିଦ୍ୟାଳୟ ଓ ରାଜ୍ୟ ବିଶ୍ୱବିଦ୍ୟାଳୟଗୁଡ଼ିକ ମଧ୍ୟ ସେଥିରୁ ବାଦ୍ ପଡ଼ିଲେ ନାହିଁ। ବିଭିନ୍ନ କେନ୍ଦ୍ରୀୟ ଅନୁଦାନ ସଂସ୍ଥାରୁ ମିଳୁଥିବା ଅନୁଦାନକୁ ନେଇ ଗବେଷକମାନଙ୍କର ଢ଼ୋକେ ପିଇ ଦଣ୍ଡେ ଜିଇବା ଅବସ୍ଥା। ଅନୁଦାନଗୁଡ଼ିକୁ ଆଣିବେ ଗବେଷକମାନେ ନିଜ ବୁଦ୍ଧି, ବିଦ୍ୟା ଓ ସମୟ ବିନିଯୋଗ କରି, କିନ୍ତୁ ଶିକ୍ଷା ବିଭାଗ ତଥା ବିଶ୍ୱବିଦ୍ୟାଳୟର ପ୍ରାଶାସନିକ ଢାଞ୍ଚା ଏତେ "ସୁଦୃଢ଼" ଯେ ଅନୁଦାନ ଅର୍ଥ ଗବେଷକଙ୍କ ହାତକୁ କେବେ ଆସିବ, ତାହା ଖୋଦ୍ ଭଗବାନ ମଧ୍ୟ କହିପାରିବେ ନାହିଁ। ଅନୁଦାନ ଅର୍ଥ ଗବେଷକଙ୍କୁ ମିଳିବା ପୂର୍ବରୁ ଅନୁଦାନର ସମୟ ଅବଧି ଶେଷ ହେବାରେ ମଧ୍ୟ କେହି ଆଶ୍ଚର୍ଯ୍ୟ ହେବାର ନାହିଁ।

ଆହୁରି ଆଶ୍ଚର୍ଯ୍ୟର କଥା ହେଉଛି ଯେଉଁ ନେତୃସ୍ଥାନୀୟ ଲୋକମାନଙ୍କ ଦଳ ବା ସରକାର ସରକାରୀ ଶିକ୍ଷା ବ୍ୟବସ୍ଥାକୁ ବିକଳାଙ୍ଗ କରୁଛନ୍ତି, ସେହିମାନଙ୍କ ମଧ୍ୟରୁ କିଛି ଦେଶସାରା ବୁଲି ଶିଶୁ, କିଶୋରମାନଙ୍କୁ 'ସ୍ୱପ୍ନ ଦେଖିବାକୁ' କହୁଛନ୍ତି ତ ଅନ୍ୟ କେତେକ ଅମୁକ କର ସମୁକ କର ବୋଲି ଦେଶବାସୀଙ୍କୁ 'ଆହ୍ୱାନ' ଦେଉଛନ୍ତି। କିନ୍ତୁ ଗରିବ ଦେଶବାସୀଙ୍କ ଅର୍ଥରେ ଦରମା, ପେନ୍‌ସନ୍, ଗାଡ଼ିଘୋଡ଼ା, ଘର ଓ ନିରାପତ୍ତା ଭଳି ସବୁ ସୁବିଧା ଉପଭୋଗ କରି ଏମାନେ ସର୍ବନିମ୍ନ ସାର୍ବଜନୀନ ଶିକ୍ଷା କ୍ଷେତ୍ରରେ ସେମାନଙ୍କ ଦାୟିତ୍ୱ ପାଳନ କରିବାକୁ ଯାଇ କ'ଣ କରିଛନ୍ତି କୁହନ୍ତୁ। ବରଂ ଦେଶ ସ୍ୱାର୍ଥ ବିରୋଧୀ ନିଷ୍ପତ୍ତି ନେଇ ଉପହସିତ ହେଉଛନ୍ତି। ଶିକ୍ଷା, ସ୍ୱାସ୍ଥ୍ୟ ଭଳି ବହୁ

ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରକୁ ନିଜ ଅଭିସନ୍ଧି ଘୋଡ଼ାଇବାକୁ ଯାଇ ଘରୋଇ କ୍ଷେତ୍ର ହାତରେ ଛାଡ଼ି ଦେଉଛନ୍ତି। ଶିକ୍ଷା ବ୍ୟବସାୟୀଙ୍କୁ 'ଶିକ୍ଷାବିତ୍' କରି ଦେଉଛନ୍ତି। ସରକାର ଓ ଦଳପତିମାନଙ୍କ ଚକ୍ରାନ୍ତର ଫଳସ୍ୱରୂପ ବିଭିନ୍ନ ସର୍ବେକ୍ଷଣର ନିର୍ଯ୍ୟାସ ହେଲା ଯେ ଗାଁ ଗହଳ ପିଲାଙ୍କ କ୍ଷେତ୍ରରେ ପାଖାପାଖି ଶତକଡ଼ା ୬୦ ତୃତୀୟ ଶ୍ରେଣୀ ପିଲା ପ୍ରଥମ ଶ୍ରେଣୀ ବହି ପଢ଼ି ପାରୁନାହାନ୍ତି, ଏକରୁ ଶହେ ଯାଏ ସଂଖ୍ୟା ଚିହ୍ନି ପାରୁନାହାନ୍ତି, ଶତକଡ଼ା ୬୦-୭୦ ଭାଗ ପଞ୍ଚମ ଶ୍ରେଣୀ ପିଲା ଦ୍ୱିତୀୟ ଶ୍ରେଣୀ ବହି ପଢ଼ି ପାରୁ ନାହାନ୍ତି। ବିଦ୍ୟାଳୟରେ ପାଠପଢ଼ାର ଯେଉଁ ଉନ୍ନତ ଧାରା ଗଢ଼ି ଆସୁଥିଲା ତାକୁ ମୂଳରୁ ମାରି ଦେଇ ଶାଢ଼ିର ରଙ୍ଗ, ପୋଷାକ, କାନ୍ଥର ରଙ୍ଗ, ମାଗଣା ସାଇକେଲ୍-ଭଳି ନାନା କଥା ଉପରେ ଜୋର୍ ଦିଆଯାଉଛି, ଶତକଡ଼ା ୮୦ ଭାଗ ପ୍ରାଥମିକ ବିଦ୍ୟାଳୟକୁ ବିଦ୍ୟୁତ୍ ସଂଯୋଗ ନ ଥିବା ସତ୍ତ୍ୱେ ଟେଲିଭିଜନ୍, ଟେପ୍ ରେକର୍ଡ଼ର, କମ୍ପ୍ୟୁଟର୍ ବା 'ଟାବ୍‌ଲେଟ୍' ବଣ୍ଟାଯାଉଛି।

ଯେଉଁ ଦେଶରେ ପ୍ରାଥମିକ ଶିକ୍ଷାକୁ ଗୁରୁତ୍ୱ ଦିଆଯାଏ ନାହିଁ ସେଠି ଆଇଆଇଟି ବା ଆଇଆଇଏମ୍ ବା ବିଶ୍ୱବିଦ୍ୟାଳୟଗୁଡ଼ିକର ଅଧୋଗତି ଅବଶ୍ୟମ୍ଭାବୀ, କିନ୍ତୁ ଶିକ୍ଷାନଷ୍ଟ କରୁଥିବା ସରକାରଗୁଡ଼ିକ ରାତିରେ ଡାଆଣୀ ହୋଇ ଦିନରେ ଗୁଣିଆ ହେବାର ଅଭିନୟ କରୁଛନ୍ତି। ଆମ ଦେଶ ସରକାରଗୁଡ଼ିକର ଡାଆଣୀ-ଗୁଣିଆ ଚରିତ୍ରର ଗୋଟିଏ ସଦ୍ୟ ଉଦାହରଣ ହେଉଛି ଭୁବନେଶ୍ୱରରେ ଅନୁଷ୍ଠିତ ୯୯ ତମ ଜାତୀୟ ବିଜ୍ଞାନ କଂଗ୍ରେସରେ ଆଦିବାସୀ ମହିଳା ରଇଲା ମୁଦୁଲିଙ୍କୁ ପ୍ରଧାନମନ୍ତ୍ରୀଙ୍କ ପୁରସ୍କାର ପ୍ରଦାନ। ସେ ପୁରସ୍କୃତ ହେଲେ ପ୍ରାଚୀନ ଜୈବିକ ଧାନ ଚାଷ ଓ ଧାନ ବିହନ ସଂରକ୍ଷଣ ପଦ୍ଧତିକୁ ବଞ୍ଚାଇ ରଖିଥିବା ପାଇଁ। ଯଦି ଧାନ ଚାଷ ଓ ବିହନ ସଂରକ୍ଷଣର ପ୍ରାଚୀନ ପଦ୍ଧତି ଏତେ ଉତ୍କୃଷ୍ଟ ଥିଲା, ତେବେ ସେ ପଦ୍ଧତି ଛାଡ଼ି ସାରା ଦେଶର ଚାଷୀଙ୍କୁ ରାସାୟନିକ ସାର, କୀଟନାଶକ ଔଷଧ ଇତ୍ୟାଦିର ବହୁଳ ବ୍ୟବହାରସାପେକ୍ଷ ଚାଷ ପଦ୍ଧତି ଆପଣେଇବା ପାଇଁ ଭାରତ ସରକାର ପ୍ରବର୍ତ୍ତାଇଲେ କାହିଁକି ? ତାହା ମାଧ୍ୟମରେ ବିଭିନ୍ନ କିସମର ଧାନ ଓ ଜୈବ ବିବିଧତା ନଷ୍ଟର କାରଣ ହେଲେ କାହିଁକି ? ୬୦ ଦଶକରେ ଆମେରିକା ସରକାରଙ୍କ ଚାପରେ କଟକ ଧାନ ଗବେଷଣା କେନ୍ଦ୍ରର ଅଧ୍ୟକ୍ଷ ତଥା ୧୯ ହଜାର ପ୍ରକାର ଦେଶୀ ଧାନ ବିହନ ସଂଗ୍ରହ କରିଥିବା ଜଣେ ଉଚ୍ଚକୋଟୀର କୃଷି ବିଜ୍ଞାନୀ ଡ. ଆର୍.ଏଚ୍.ରିଚ୍‌ରିଆଙ୍କ ଗବେଷଣା ତଥା ଚାକିରି ଜୀବନକୁ ନଷ୍ଟ କରିଥିଲେ ଏଇ ଭାରତ ସରକାର। ସତେ ଯଦି ଏବେ ସୁବୁଦ୍ଧି ଜୁଟିଛି ତା'ହେଲେ ଜୈବିକ ପଦ୍ଧତିରେ ଧାନ ଚାଷ ଓ ପ୍ରାଚୀନ ପଦ୍ଧତିରେ ବିହନ ସଂରକ୍ଷଣ ପାଇଁ ବିଭାଗୀୟ ନିର୍ଦ୍ଦେଶନାମା ଜାରି କରୁନାହାନ୍ତି କାହିଁକି ?

ନିଜ ଦେଶର ସର୍ବଜନୀନ ଶିକ୍ଷା ବ୍ୟବସ୍ଥାକୁ ସମୟ ଗଡ଼ିବା ସହିତ ଦୁର୍ବଳରୁ ଦୁର୍ବଳତର କରିଚାଲିଥିବା ସରକାରୀ କଳର ମଙ୍ଗୁଆଳମାନେ "ଦିନ କେଇଟାରେ ଭାରତ ପୃଥିବୀର ବିରାଟ ଶକ୍ତି ଭାବରେ ଉଭା ହୋଇଯିବ" ବୋଲି ଭାଷଣ ମାରିବା ପାଗଳଙ୍କର ପ୍ରଳାପ ବ୍ୟତୀତ ଅନ୍ୟ କିଛି ହୋଇ ନ ପାରେ। ପୃଥିବୀରେ ବଡ଼ ଶକ୍ତି ହେବା କଥା ଛାଡ଼ନ୍ତୁ, ଶିକ୍ଷାପ୍ରାପ୍ତିରୁ ବଞ୍ଚିତ ଜନଜୀବନରୁ ବିଭିନ୍ନ ଅନ୍ଧବିଶ୍ୱାସର ଦୂରୀକରଣ, ପରିବାରରେ ଜଣେ ସଚେତନ ମା', ବିଲରେ ଜଣେ ସଚେତନ ଚାଷୀ ତଥା ସମାଜରେ ଜଣେ ସଚେତନ ନାଗରିକ ସୃଷ୍ଟି କରିବା ମଧ୍ୟ ଆକାଶ କଇଁଆ ହୋଇରହିଯାଇଛି। ସବୁ ମୂଳରେ ହିଁ ସୁ-ଶିକ୍ଷାର ଅଭାବ। ସୁ-ଶିକ୍ଷାର ଅଭାବ ଭିତରେ ଗାଁ-ଗହଳରେ ଥିବା ଦେଶର ଶତକଡ଼ା ଅଶୀ ଭାଗ ପ୍ରତିଭାର ବିକାଶର ପଥ ବନ୍ଦ କରି ବିଜ୍ଞାନ କ୍ଷେତ୍ରରେ ଦେଶ ପାଇଁ ଏକ ଉଜ୍ଜ୍ୱଳ ଭବିଷ୍ୟତକୁ ଅନ୍ଧକାରମୟ କରିଦିଆଯାଉଛି।

ଆଜିକାଲି ତ ବ୍ଲକ୍, ଜିଲ୍ଲାଠାରୁ ଆରମ୍ଭ କରି ପ୍ରାଦେଶିକ, ଜାତୀୟସ୍ତର ଯାଏ ବିଜ୍ଞାନ ମେଳା ହେଉଛି। ଏ ସବୁ ନିଶ୍ଚୟ ସ୍ୱାଗତଯୋଗ୍ୟ ପଦକ୍ଷେପ, କିନ୍ତୁ ବିଜ୍ଞାନ ଶିକ୍ଷା ସାରା ଦେଶରେ ଅତ୍ୟନ୍ତ ଦୁର୍ବଳ ଅବସ୍ଥାରେ ରହିଛି। ତେଣୁ ଏ ସବୁ ମେଳାଗୁଡ଼ିକରେ ପୁଞ୍ଜିବହୁଳ ଘରୋଇ ଶିକ୍ଷାନୁଷ୍ଠାନ ପ୍ରତିନିଧିତ୍ୱ କରୁଛନ୍ତି। ମଡେଲ୍‌ଗୁଡ଼ିକ ମଧ୍ୟରେ ବିଶେଷ ନୂତନତ୍ୱ ଦେଖିବାକୁ ମିଳୁନାହିଁ। ଚାଇନା ଆମ ସହିତ ଏକା ସମୟରେ ଉପନିବେଶୀ ଶାସନରୁ ମୁକ୍ତ ହେଲା। କିନ୍ତୁ ଏହା କେବଳ ଅଲିମ୍ପିକ୍ସ ଭଳି ସର୍ବୋଚ୍ଚ ସ୍ତରୀୟ ଖେଳ କୁଦରେ ଆମେରିକାକୁ ବାଜିମାତ୍ ଦେଇନି, ବିଜ୍ଞାନ କ୍ଷେତ୍ରରେ ପ୍ରକାଶିତ ସନ୍ଦର୍ଭଗୁଡ଼ିକର ସଂଖ୍ୟା ଭିତ୍ତିରେ ମଧ୍ୟ ପ୍ରଥମ ସ୍ଥାନ ହାସଲ କଲାଣି। ଆମର ବର୍ତ୍ତମାନର ଶିକ୍ଷା ବ୍ୟବସ୍ଥା ଯେଉଁ ଧାରାରେ ଚାଲିଛି ତାହା ଅବ୍ୟାହତ ରହିଲେ ଆମ ବିଜ୍ଞାନ କେବଳ ମେଳା ଆୟୋଜନରେ ହିଁ ଶେଷ ହୋଇଯିବ। ଏଣୁ ସମୟର ଆହ୍ୱାନ ହେଉଛି ଆମର ସମୁଜ୍ଜ୍ୱଳ ଜ୍ଞାନ-ବିଜ୍ଞାନର ଐତିହ୍ୟ, ପୂର୍ବସୂରୀମାନଙ୍କ ଜୀବନ ତଥା ଉନ୍ନତ ଦେଶମାନଙ୍କରେ ପ୍ରଚଳିତ ଶିକ୍ଷା ବ୍ୟବସ୍ଥାକୁ ସମୁଚିତ ଅନୁଧ୍ୟାନ କରିବା ସହ ଆମର ଶିକ୍ଷା ବ୍ୟବସ୍ଥାକୁ ସୁଦୃଢ଼ କରିବା। ଆମେ ସେତିକି କରିପାରିଲେ ପୁଣି ଥରେ ଆମ ମାଟି କବି, ଭାବୁକ, ଦାର୍ଶନିକ ଓ ବୈଜ୍ଞାନିକଙ୍କୁ ନେଇ ଗର୍ବ କରିବ। ବ୍ୟକ୍ତିଗତ, ସାମାଜିକ ତଥା ଜାତୀୟ ଜୀବନ ପ୍ରକୃତି ନିବିଷ୍ଟ ଜ୍ଞାନ-ବିଜ୍ଞାନକୁ ନେଇ ଉଦ୍‌ଭାସିତ ହେବ, ମଧୁମୟ ହେବ। ସତେ କ'ଣ ସେ ଦିନ ଆସିବ!



# ଭୁବନେଶ୍ୱରର ତାତି

ଭୁବନେଶ୍ୱରର ଏମିତି ଗୋଟେ ଖୁବ୍ ବଡ଼ ସହର ନୁହେଁ; ତେଣୁ କିଛି ଗୋଟେ ଗୁରୁତ୍ୱପୂର୍ଣ୍ଣ ଚର୍ଚ୍ଚାସୁଲଭ ଘଟଣା ଘଟିଲେ ଗଣମାଧ୍ୟମ ବ୍ୟତୀତ ତୁଣ୍ଡବାଇଦ ମାଧ୍ୟମରେ ମଧ୍ୟ ହାଟ ବଜାରରେ ତା'ର ପ୍ରତିଧ୍ୱନି ଶୁଣିବାକୁ ମିଳିଥାଏ। ଗତ ୮-୧୦ ଦିନ ତଳର ସେହିଭଳି ଏକ ଘଟଣା ଥିଲା ସହରର ଉତ୍ତାପ ୪୦° ସେଣ୍ଟିଗ୍ରେଡ୍ ଉପରକୁ ଖସିଯିବା; ସେ ପୁଣି ଫେବ୍ରୁଆରି ମାସ ଶେଷ ନ ହେଉଣୁ। ସେଦିନ ଭୁବନେଶ୍ୱର ଥିଲା ଭାରତର ସବୁଠାରୁ ଉତ୍ତପ୍ତ ସହର। କିଛି ଲୋକ କୁହାକୁହି ହେଲେ ଯେ, "ଯଦି ଫେବ୍ରୁଆରି ମାସରେ ୪୦° ଟପିଲା, ତେବେ ମେ, ଜୁନ୍ ବେଳକୁ କ'ଣ ହେବ!" ତଥ୍ୟାଭିଜ୍ଞ ଲୋକେ ହୁଏତ କହିପାରନ୍ତି ଯେ ଉତ୍ତାପ ବୃଦ୍ଧି ତ କୌଣସି ସରଳରୈଖିକ ନିୟମମାନେ ନାହିଁ, ତେଣୁ ଫେବ୍ରୁଆରିରେ ଉତ୍ତାପ ୪୦° ଟପିଲେ ଯେ ଜୁନ୍ ବେଳକୁ ୫୦ ଟପିଯିବ, ଏହା ଭାବି ଡରିବାର ନାହିଁ। ସତ କଥା, କିନ୍ତୁ ଯେତେ ତଥ୍ୟାଭିଜ୍ଞ ହେଲେ ମଧ୍ୟ ଉତ୍ତାପର ଅସ୍ୱାଭାବିକ ବୃଦ୍ଧି ଯେ ବାୟୁମଣ୍ଡଳରେ ଅସ୍ୱାଭାବିକ ପରିବର୍ତ୍ତନର ସୂଚନା ଦେଉଛି ସେଥିପ୍ରତି ସଜାଗ ରହି ତାହାର କାରଣ, ନିରାକରଣ ବିଷୟରେ ସମୁଚିତ ଧ୍ୟାନ ଦେବା ହିଁ ବୁଦ୍ଧିମାନର କାମ ହେବ।

କିଛି ଗୋଟେ ହଟଚମଟ ଘଟିଲେ ଗଣମାଧ୍ୟମର ପ୍ରତିନିଧିମାନେ ସରକାରୀ ପ୍ରବକ୍ତାମାନଙ୍କୁ ଭେଟିବା ନ୍ୟାୟରେ ଏହି ଘଟଣାକୁ ନେଇ ମଧ୍ୟ ଭେଟିଲେ। ସରକାରୀ ଉତ୍ତର ହେଲା ଯେ ଭୁବନେଶ୍ୱରର ଉତ୍ତାପ ବୃଦ୍ଧି ଭୂମଣ୍ଡଳୀୟ ଉତ୍ତାପ ବୃଦ୍ଧିର ଅଂଶବିଶେଷ, ତେଣୁ ନିବାରଣ ତ କିଛି କରି ହେବ ନାହିଁ, ବରଂ ଅଂଶୁଘାତରୁ ରକ୍ଷାପାଇବା ପାଇଁ ଲୋକମାନଙ୍କୁ ସଚେତନ କରିବା, ସହରର ବିଭିନ୍ନ ସ୍ଥାନରେ ରାସ୍ତାରେ ଯାଉଥିବା ଲୋକମାନଙ୍କ ପାଇଁ ପାନୀୟ ଜଳଯୋଗାଣ ଓ ଅଂଶୁଘାତ ପୀଡ଼ିତ ଲୋକମାନଙ୍କ ଆଶୁ ଚିକିତ୍ସା ପାଇଁ ବିଭିନ୍ନ ଡାକ୍ତରଖାନାଗୁଡ଼ିକରେ ସୁବନ୍ଦୋବସ୍ତ କରାଯିବା ଉଚିତ। ଏସବୁ ଭଲ କଥା କିନ୍ତୁ ପ୍ରତିଷେଧ ବ୍ୟବସ୍ଥାକୁ ସମ୍ପୂର୍ଣ୍ଣ ଅଣଦେଖା

---

★ ଦୈନିକ "ସମ୍ବାଦ"; ୧୪ ମାର୍ଚ୍ଚ ୨୦୧୨

କରି ପାଣି ଓ ଚିକିତ୍ସାଦିର ବ୍ୟବସ୍ଥା କରିବା ଯାହା, ରୋଗଗୁଡ଼ିକର ପ୍ରତିକାର ନ କରି ଡାକ୍ତର ସଂଖ୍ୟା ବଢ଼ାଇବା, ଚୋରି ଡକାୟତିର ପ୍ରତିକାର ନ ଖୋଜି ପୋଲିସ୍ ବଢ଼ାଇବା ବା କଳି-କଜିଆ ସୃଷ୍ଟିକାରୀ ପରିବେଶକୁ ପ୍ରତିରୋଧ ନ କରି ଓକିଲ ଓ ବିଚାରପତି ବଢ଼ାଇବା ସେୟା । ଅସଲ କଥା ହେଉଛି ଏଭଳି ପୋଲିସ୍ ବା ଡାକ୍ତର ବା ଓକିଲ ଆଦି ବଢ଼ାଇବା ଭଳି ବ୍ୟବସ୍ଥା ପ୍ରଚୁର ଅର୍ଥ, ସମୟ ଓ ଉଚିତ ପ୍ରକାରର ମାନବ ସମ୍ବଳ ସାପେକ୍ଷ ହୋଇଥାଏ ଏବଂ ବିତ୍ତଶାଳୀ ଦେଶମାନଙ୍କରେ ମଧ୍ୟ ଏହା ଅବାରିତ ଭାବରେ ସମ୍ଭବ ନୁହେଁ । ତେଣୁ ଓଡ଼ିଶା ଭଳି ଗରିବ ରାଜ୍ୟ କଥା ନ କହିବା ଭଲ । ସେହି ଦୃଷ୍ଟିରୁ ପ୍ରତିକାରାତ୍ମକ ପଦକ୍ଷେପ ମାଧ୍ୟମରେ ଉତ୍ତାପ ବୃଦ୍ଧିର ପ୍ରତିରୋଧ ହିଁ ସମୟର ଆହ୍ୱାନ । ସ୍ଥାନୀୟ ସକାରାତ୍ମକ କାର୍ଯ୍ୟକ୍ରମଗୁଡ଼ିକ ହିଁ ଜାଗତିକ ସମସ୍ୟାର ସମାଧାନ ରୂପେ ପ୍ରତିଭାତ ହୁଅନ୍ତି । ସେଥିପାଇଁ କୁହାଯାଏ, "Think globally, act locally."

ଓଡ଼ିଶାର ବାୟୁମଣ୍ଡଳର କ୍ରମବର୍ଦ୍ଧିଷ୍ଣୁ ଅସ୍ୱାଭାବିକତା ନିମ୍ନପ୍ରଦତ୍ତ ପାଣିପାଗ ଆଧାରିତ ପରିସଂଖ୍ୟାନରୁ ସ୍ପଷ୍ଟ । ଗତ ଶତାବ୍ଦିର ୭୦ ଦଶକରେ ମାର୍ଚ୍ଚ ମାସରେ ୪୦ ଡିଗ୍ରୀରୁ ଅଧିକ ଉତ୍ତାପ ଥିବା ବର୍ଷ ସଂଖ୍ୟା ଥିଲା ଶୂନ, ଜୁନ୍ ମାସରେ ୪୫ ଡିଗ୍ରୀରୁ ଅଧିକ ଉତ୍ତାପ ଥିବା ବର୍ଷ ସଂଖ୍ୟା ଥିଲା ଏକ ଓ ପୁରା ଦଶନ୍ଧି ମଧ୍ୟରେ ୪୫ ଡିଗ୍ରୀରୁ ଅଧିକ ଉତ୍ତାପ ଥିବା ଦିନ ସଂଖ୍ୟା ଥିଲା ଏକ । ୮୦ ଦଶନ୍ଧିରେ ଏହି ସଂଖ୍ୟାଗୁଡ଼ିକ ହେଲା ଯଥାକ୍ରମେ; ଏକ, ଶୂନ ଓ ଶୂନ । କିନ୍ତୁ ୯୦ ଦଶକରେ ସଂଖ୍ୟାଗୁଡ଼ିକ ବଢ଼ି ହେଲା ଦୁଇ, ଦୁଇ ଓ ଦୁଇ । ଆଉ ୨୦୦୦ରୁ ୨୦୦୫ ମସିହା ବା ମାତ୍ର ପାଞ୍ଚ ବର୍ଷ ମଧ୍ୟରେ ଏହି ସଂଖ୍ୟାଗୁଡ଼ିକ ହେଲା ଦୁଇ, ତିନି ଓ ଛଅ । ଏହି ପରିସଂଖ୍ୟାନ ସହ ତାଳ ଦେଇ ଓଡ଼ିଶା ଅଧିକରୁ ଅଧିକ ଗ୍ରୀଷ୍ମପ୍ରବାହ, ଶୀତ ପ୍ରବାହ ତଥା ବାତ୍ୟାର ସମ୍ମୁଖୀନ ହେବାରେ ଲାଗିଛି । ୧୯୯୮ ମସିହାରେ ଅଂଶୁଘାତରେ ପ୍ରାୟ ୨ ହଜାର ଲୋକ ମୃତ୍ୟୁବରଣ କରିଥିଲେ । ୧୯୯୯ର ମହାବାତ୍ୟାରେ କେବଳ ଯେ ୧୦ ହଜାରରୁ ଅଧିକ ଲୋକ ମୃତ୍ୟୁବରଣ କରିଥିଲେ ତାହା ନୁହେଁ, ଉପକୂଳ ଓଡ଼ିଶାର ଅର୍ଥନୀତି ଏହା ଦ୍ୱାରା ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ ହୋଇ ପଡ଼ିଥିଲା । ସେହିଭଳି ୧୯୦୦ରୁ ୧୯୫୦ ମସିହା ଯାଏଁ ଦୀର୍ଘ ୫୦ ବର୍ଷ ମଧ୍ୟରେ ମାତ୍ର ୪ଟି ବର୍ଷରେ ଓଡ଼ିଶାରେ ବୃଷ୍ଟିପାତ ହାରାହାରି (୬୦ ଇଞ୍ଚ) ଠାରୁ କମ୍ ହୋଇଥିବା ସ୍ଥଳେ ତା'ପରେ ୫୦ ବର୍ଷରେ ୧୦ ବର୍ଷ ଓ କେବଳ ୨୦୦୦ ରୁ ୨୦୧୦ ଦଶ ବର୍ଷ ମଧ୍ୟରେ ୫ ବର୍ଷ ବୃଷ୍ଟିପାତ ହାରାହାରି ଠାରୁ କମ୍ ରହିଛି । ମୌସୁମୀବାୟୁ ଜନିତ ବୃଷ୍ଟିପାତର ସମୟ ନିର୍ଘଣ୍ଟରେ ମଧ୍ୟ କ୍ରମାଗତ ଅନିୟମିତତା ଦେଖିବାକୁ ମିଳୁଛି । ଏ ସବୁ ଜଳବାୟୁ ବିଲକ୍ଷଣ ଆମକୁ

ବାୟୁମଣ୍ଡଳ ପ୍ରଦୂଷଣ ପ୍ରତି ସଚେତନ ରହିବାକୁ ନିଷ୍ଚିତ ନିର୍ଦ୍ଦେଶ ଦେଇଚାଲିଛି।

ବ୍ୟକ୍ତିଗତ ତଥା ସରକାରୀ ସ୍ତରରେ ଆମେ କିନ୍ତୁ ଏ ବିଲକ୍ଷଣଗୁଡ଼ିକୁ ସହାୟତା ଯୋଗାଇ ଚାଲିଛୁ। ବ୍ୟକ୍ତିଗତ ସ୍ତରରେ ଲୋକମାନେ ନିଜ ନିଜ ପ୍ଲଟ୍‌ରେ ଇଞ୍ଚେ ସୁଦ୍ଧା ଜମି ଛାଡ଼ିବାକୁ ପ୍ରସ୍ତୁତ ନୁହନ୍ତି। ପାଚେରି ଉପରେ କାନ୍ଥ ଉଠେଇ, ଭଡ଼ା ଲୋଭରେ ଘରକୁ ଘର ଖୁନ୍ଦି, ଘରର ଅସନା ପାଣି ରାସ୍ତାକୁ ଛାଡ଼ି ବହୁ ଲୋକ ପ୍ରଦୂଷଣ ବୃଦ୍ଧିର କାରଣ ହେଉଛନ୍ତି। ବିଡ଼ିଏ, ବିଏମ୍‌ସି, ନଗର ଉନ୍ନୟନ ଭଳି ସରକାରୀ ସଂସ୍ଥାଗୁଡ଼ିକ ମଧ୍ୟ ନିଜ ନିଜ ଭିତରେ ସମନ୍ୱୟ ରକ୍ଷା ନ କରି ବିଧିବ୍ୟବସ୍ଥାର ଖିଲାପ ସହ ବିରାଟ ବିରାଟ ଅଟ୍ଟାଳିକା ନିର୍ମାଣରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ସହାୟକ ହୋଇ ଯାଉଛନ୍ତି। ଜମି ଅଧିଗ୍ରହଣ ତଥା ଗୃହନିର୍ମାଣ ବିଧି ବ୍ୟବସ୍ଥାର କୋହଳତାରେ ଆକୃଷ୍ଟ ହୋଇ ଭାରତର ବହୁସଂଖ୍ୟକ ରିଅଲ୍ ଇଷ୍ଟେଟ୍ ଓ ବିଲ୍‌ଡ଼ର୍ ସଂସ୍ଥା ଭୁବନେଶ୍ୱର ମୁହାଁ ହୋଇଛନ୍ତି। ଶହ ଶହ ଏକର ଜଙ୍ଗଲ ଓ ଚାଷ ଜମି ଉଜୁଡ଼ି ଯିବା ସହ ଶହ ଶହ ସଂଖ୍ୟାରେ ବହୁତଳ ବିଶିଷ୍ଟ ଏନ୍‌କ୍ଲେଭ୍, ପ୍ଲାଜା, 'ଗାର୍ଡ଼ନସ୍' ଇତ୍ୟାଦି ମୁଣ୍ଡ ଟେକୁଛି। ଶାନ୍ତ ସବୁଜିମାର ସ୍ଥାନ ନେଉଛି ବିକଟାଳ କଂକ୍ରିଟ୍ ଜଙ୍ଗଲ। ରାସ୍ତା ଇତ୍ୟାଦି ନିର୍ମାଣ ପାଇଁ ମଧ୍ୟ ନିର୍ବିଚାରରେ ଗଛ କଟା ଚାଲିଛି। କିଛି ବର୍ଷ ତଳେ ଥରେ ବାଙ୍କୀ ଯିବା ବେଳେ ଦେଖିଲି ମହାନଦୀ କୂଳେ କୂଳେ ମାଇଲ ମାଇଲ ଧରି ରାସ୍ତା ଦୁଇପଟରେ ଦଣ୍ଡାୟମାନ ୧୫୦-୨୦୦ ବର୍ଷର ପୁରୁଣା ବିରାଟକାୟ ଅର୍ଜ୍ଜୁନ ଗଛ କଟା ଚାଲିଛି। ଅର୍ଜ୍ଜୁନ ଗଛଗୁଡ଼ିକର ଗର୍ବୋନ୍ନତ ଅଙ୍ଗ ସୌଷ୍ଠବ ଯେ ଦେଖିଥିବ ସେ ନିଶ୍ଚୟ ସେମାନଙ୍କ ଦ୍ୱାରା ଆକର୍ଷିତ ହୋଇଥିବ। ମନଟା ଭାରି ଦୁଃଖ ହେଲା। ପଚାରି ବୁଝିଲି ରାସ୍ତା ଚଉଡ଼ା ହେବା ପାଇଁ ଗଛକଟା ଚାଲିଛି। ଏବେ ୨-୩ ମାସ ତଳେ ପୁଣିଥରେ ବାଙ୍କୀ ଗଲାବେଳେ ଦେଖିଲି ଯୋଉ ଅଣଚଉଡ଼ା ରାସ୍ତାକୁ ସେହି ରାସ୍ତା; ବରଂ ବିଶାଳକାୟ ସୁନ୍ଦର ସୁନ୍ଦର ଅର୍ଜ୍ଜୁନ ଗଛ ବଦଳି ତାଙ୍କ ସ୍ଥାନରେ ଲାଗିଛି କୃଷ୍ଣଚୂଡ଼ା ଗଛର ଚାରା ବାଉଁଶକଣିର ବାଡ଼ ଭିତରେ। ସରକାରୀ ବୁଦ୍ଧି ନ ହେଲେ ଏତେ ପ୍ରତ୍ୟୁତ୍ପନ୍ନମତିତା ଆସିବ କୁଆଡୁ! ସେହିଭଳି ସହରରେ ଜଳାଶୟ ସୃଷ୍ଟି କରିବା କାର୍ଯ୍ୟ ମଧ୍ୟ ସମ୍ପୂର୍ଣ୍ଣ ଠପ୍। ଆଇ.ଆଇ.ଟି. 'ମହାଯୋଜନାରେ' ବି ଜଳାଶୟ ନିର୍ମାଣର ସୁରାକ୍ ମିଳେ ନାହିଁ। ସବୁ ବିସ୍ତାର୍ଣ୍ଣ ଖାଲ ଜମି ତକ ଶାଗ ମାଛ ମୂଲରେ ଜମି ମାଫିଆଙ୍କ କବଳରେ। ତେଣୁ ସବୁଜ ଚାଷ କ୍ଷେତ ହ୍ରାସ ପାଇବା, ଜଙ୍ଗଲ ନଷ୍ଟ, ବୃକ୍ଷ ଛେଦନ, ସହରରେ ପର୍ଯ୍ୟାପ୍ତ ସଂଖ୍ୟକ ଜଳାଶୟର ଅଭାବ ତଥା ଅନିୟନ୍ତ୍ରିତ କୋଠାବାଡ଼ି ନିର୍ମାଣ ଯେ ଭୁବନେଶ୍ୱର ଭଳି ସହରର ଉତ୍ତାପ ବୃଦ୍ଧିର ମୂଳ କାରଣ ଏହା ନିଃସନ୍ଦେହ। ଉତ୍ତାପ

ବୃଦ୍ଧିର ଆଉ ଏକ କାରଣ ହେଲା ଶୀତତାପ ନିୟନ୍ତ୍ରକ ଯନ୍ତ୍ରର ଅହେତୁକ ବହୁଳ ବ୍ୟବହାର। ଏହି ଯନ୍ତ୍ରଗୁଡ଼ିକ କୃତ୍ରିମ ଉପାୟରେ ବାୟୁରୁ ଉତ୍ତାପ କାଢ଼ି ନେଇ ରୁମ୍ ଭିତରର ପରିବେଶକୁ ଥଣ୍ଡା କଲାବେଳେ ବାହାରକୁ ଗରମ ପବନ ଛାଡ଼ନ୍ତି। ଆଜିକାଲି ତ ଶୀତଦିନେ ବି ଅଫିସ୍ କକ୍ଷଗୁଡ଼ିକ ଥଣ୍ଡା ନ ରହିଲେ ଅଫିସର୍‌ମାନେ କାମ କରିପାରୁ ନାହାନ୍ତି! ଅଫିସ୍ କୋଠା ସବୁ ଏମିତି ଡିଜାଇନ୍‌ରେ ତିଆରି ହେଉଛି ଯେ ଖରାଦିନ ଖରାବେଳେ କରିଡ଼ର୍‌ରେ ଆଲୁଅ ନ ଜଳିଲେ ମୁହଁକୁ ମୁହଁ ଦେଖାଯିବ ନାହିଁ। ରୁମ୍‌ଗୁଡ଼ିକରେ ଝରକା ମଧ୍ୟ ନାହିଁ। ପାଶ୍ଚାତ୍ୟ ଓଧମାନଙ୍କ ସହ ଓଡ଼ିଆ "ଭୁଆଁ ବିଲେଇ" ବାଇ! ପ୍ରଚୁର ଶକ୍ତି ଅପଚୟ ସହିତ ଓ ବର୍ଦ୍ଧିତ ଚାହିଦାର ଭରଣା ପାଇଁ ଜୀବାଶ୍ମ ଇନ୍ଧନରୁ ଶକ୍ତି ଉତ୍ପାଦନ ମଧ୍ୟ ବାୟୁମଣ୍ଡଳର ଉତ୍ତାପ ବୃଦ୍ଧିରେ ପ୍ରମୁଖ ଭୂମିକା ଗ୍ରହଣ କରୁଛି।

ବୈଜ୍ଞାନିକ ପରୀକ୍ଷା ଦ୍ୱାରା ଏହା ପ୍ରମାଣିତ ଯେ ଗାଁ-ଗଣ୍ଡା ତୁଳନାରେ ସହରଗୁଡ଼ିକ ୪°- ୬° ଅଧିକ ଉତ୍ତପ୍ତ। ଗାଁ-ଗଣ୍ଡାର ଗଛପତ୍ର, ଶସ୍ୟକ୍ଷେତ୍ର ସୂର୍ଯ୍ୟକିରଣରେ ଥିବା ଉତ୍ତପ୍ତ ରଶ୍ମିର ପ୍ରାୟ ଏକ ଚତୁର୍ଥାଂଶକୁ ପ୍ରତିଫଳିତ କରିଥାଏ। ବାକି ତିନି-ଚତୁର୍ଥାଂଶର ବହୁଳାଂଶ ପତ୍ରଗୁଡ଼ିକରୁ ଜଳୀୟ ଅଂଶ ବାଷ୍ପୀକରଣରେ ବ୍ୟବହୃତ ହୁଏ। ଏହି ପ୍ରକ୍ରିୟା ସବୁଜିମାକୁ ଶୀତଳ ରଖିବା ସହ ବାୟୁ ଓ ମାଟିକୁ ଗରମ କରୁଥିବା ପ୍ରକ୍ରିୟାର ପ୍ରତିରୋଧ କରେ। ସୁଇଜରଲାଣ୍ଡର ବାଜେଲ ବିଶ୍ୱବିଦ୍ୟାଳୟ, ଇଂଲଣ୍ଡର ମାଞ୍ଚେଷ୍ଟର ବିଶ୍ୱବିଦ୍ୟାଳୟର ଗବେଷକମାନଙ୍କ ପରୀକ୍ଷା ନିରୀକ୍ଷାରୁ ଜଣାପଡ଼ିଛି ଯେ ଗରମ ଦିନଗୁଡ଼ିକରେ ସହରର ହାରାହାରି ଉତ୍ତାପ ୨୫° ଥିଲାବେଳେ ରାସ୍ତାଗୁଡ଼ିକର ଉତ୍ତାପ ୩୭° ଓ କୋଠାଘର ଛାତଗୁଡ଼ିକର ଉତ୍ତାପ ୪୫° ପାଖାପାଖି ରହିଥାଏ। କିନ୍ତୁ ସେହି ସମୟରେ ଗଛପତ୍ରର ଉତ୍ତାପ ୨୫° ଓ ଜଳାଧାରଗୁଡ଼ିକର ଉତ୍ତାପ ୧୮° ରହିଥାଏ। ଆଉ ଘଞ୍ଚ ଜଙ୍ଗଲର ଉତ୍ତାପ ରାସ୍ତା ଓ କୋଠାଛାତ ତୁଳନାରେ ୧୫-୧୮ ଡିଗ୍ରୀ କମ୍ ରହେ।

ଉପରୋକ୍ତ ଆଲୋଚନାର ସର୍ବନିମ୍ନ ନିଷ୍କର୍ଷ ହେଲା ଯେ ସହରର ଉତ୍ତାପକୁ ନିୟନ୍ତ୍ରଣାଧୀନ ରଖିବା ପାଇଁ ଆମ୍ବ, ନିମ୍ବ, ଅର୍ଜୁନ ଓ ଅଶ୍ୱ ଭଳି ଉପକାରୀ ବୃକ୍ଷ ରୋପଣ, ସହର ଭିତରେ ଓ ବାହାରେ ଚାଷ କ୍ଷେତ, ଜଙ୍ଗଲ ଓ ସବୁଜିମାର ସଂରକ୍ଷଣ, ଅନେକ ସଂଖ୍ୟକ ଜଳାଧାର ସୃଷ୍ଟି ତଥା ଜୀବନଶୈଳୀରେ ପରିବର୍ତ୍ତନ ଅତ୍ୟନ୍ତ ଜରୁରୀ। ଏହି ସଚେତନତା ତଥା ତଦ୍‌ଭିତ୍ତିକ କାର୍ଯ୍ୟକ୍ରମ ସାମାଜିକ ଓ ସରକାରୀ ସ୍ତରରେ ଯେତେ ଶୀଘ୍ର ଏକ ଆନ୍ଦୋଳନର ରୂପ ନେବ ସେତେ ମଙ୍ଗଳ। ପ୍ରାଥମିକ

ପଦକ୍ଷେପସ୍ୱରୂପ ଘର ତିଆରି ପାଇଁ ସରକାରୀ ଅନୁମତି ପ୍ରଦାନ ବେଳେ ପ୍ରତି ପ୍ରାଙ୍ଗଣରେ ୫-୧୦ଟି ବୃକ୍ଷରୋପଣକୁ ବାଧ୍ୟତାମୂଳକ କରିବା ତଥା ଶୀତତାପ ନିୟନ୍ତ୍ରକ ଯନ୍ତ୍ରର ବ୍ୟବହାର ଉପରେ ନିୟନ୍ତ୍ରଣ ବ୍ୟବସ୍ଥା କଥା ଚିନ୍ତା କରାଯାଇପାରେ।

କୋଠାଘର ଛାତ ଉପରେ ବିଭିନ୍ନ କିସମ ଶାଗ ଓ ଲତାଯୁକ୍ତ ଗଛ ଲଗାଇ ସବୁଜ ରଖିବା ପାଇଁ ଉତ୍ସାହିତ କରାଯାଇ ପାରେ। ରାସ୍ତାର ଦୁଇ ପାର୍ଶ୍ୱରେ ୪-୫ ଧାଡ଼ି ଗଛ ସହିତ ରୋଡ୍ ଡିଭାଇଡ଼ର୍‌ଗୁଡ଼ିକୁ ୧୦-୧୨ ଫୁଟ୍ ଚଉଡ଼ା କରି ସେଥିରେ ଗୋଟିଏ ଧାଡ଼ି ବୃକ୍ଷ ରୋପଣ କଲା କିଟିମିଟି ରାସ୍ତାରୁ ବାହାରୁଥିବା ତାତିଲା ଧାସ ରୋକିବାରେ ବହୁମାତ୍ରାରେ ସହାୟକ ହେବ। ଏହିଭଳି କିଛି ସୁଚିନ୍ତିତ ଦୂରଦୃଷ୍ଟିସମ୍ପନ୍ନ ନୀତିରେ ହୁଏତ ନିହିତ ଅଛି ଆମ ସହରକୁ ଏକ ଶୀତଳ ସୁନ୍ଦର ପରିବେଶ ପ୍ରଦାନ କରିବାର ମନ୍ତ୍ର। ଜୀବନ ପ୍ରଗତିର ନୁହେଁ, ପ୍ରଗତି ଜୀବନର ଅନୁଗାମୀ ହେଉ।





ଲମ୍ବୋଦର ପ୍ରସାଦ ସିଂହ ଉତ୍କଳ ବିଶ୍ୱବିଦ୍ୟାଳୟ ପଦାର୍ଥ ବିଜ୍ଞାନ ପ୍ରଫେସର ଭାବେ ୨୦୦୮ ମସିହାରେ ଅବସର ଗ୍ରହଣ କରିଛନ୍ତି ।

ସେ ରେଭେନ୍ସା କଲେଜ ଓ କଲିକତାର ସାହା ନ୍ୟୁକ୍ଲିୟର ଗବେଷଣା ପ୍ରତିଷ୍ଠାନରେ ଅଧ୍ୟୟନ ପରେ ୧୯୭୫ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡ଼ି. ଲାଭ କରିଥିଲେ । ୧୯୬୭ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟର ଶ୍ରେଷ୍ଠ ସ୍ନାତକ ଭାବରେ ସେ ମୟୁରଭଞ୍ଜ ସ୍ୱର୍ଣ୍ଣପଦକ ଲାଭ କରିଥିଲେ । କଣିକା ବିଜ୍ଞାନ ଓ ବ୍ରହ୍ମାଣ୍ଡ ବିଜ୍ଞାନ ତାଙ୍କର ଗବେଷଣା କ୍ଷେତ୍ର । ଜର୍ମାନର ଡୋର୍ଟମଣ୍ଡ ଓ ଉଲମ୍ ବିଶ୍ୱବିଦ୍ୟାଳୟ, ଇଟାଲୀର ଅବଦୁସ୍ ସଲାମ ଇଣ୍ଟରନେସ୍‌ନାଲ ସେଣ୍ଟର ଫର୍ ଥିଓରେଟିକାଲ୍ ଫିଜିକ୍ସ (A S I C T P), ଜେନେଭାସ୍ଥିତ ୟୁରୋପୀୟ ନ୍ୟୁକ୍ଲିୟର ଗବେଷଣା କେନ୍ଦ୍ର (C E R N) ଓ ଆୟରଲ୍ୟାଣ୍ଡର ଡବଲିନ୍ ଇନଷ୍ଟିଚ୍ୟୁଟ୍ ଅଫ୍ ଆଡ୍‌ଭାନ୍ସଡ୍ ଷ୍ଟଡ଼ିଜ୍ (D I A S) ଭଳି ଖ୍ୟାତନାମା ଅନୁଷ୍ଠାନଗୁଡ଼ିକରେ ଗବେଷଣା ସୁଯୋଗ ସେ ପାଇଛନ୍ତି ।

ବିଜ୍ଞାନକୁ ଜନପ୍ରିୟ କରାଇବା ତାଙ୍କର ଏକ ରୁଚି । ତାଙ୍କ ଲିଖିତ "ଅଣୁରୁ ଅନ୍ତରୀକ୍ଷ" ବହିଟି ଓଡ଼ିଶା ବିଜ୍ଞାନ ଆକାଦେମୀ ଦ୍ୱାରା ୧୯୯୯ ର ଶ୍ରେଷ୍ଠ ଜନପ୍ରିୟ ପୁସ୍ତକ ଭାବେ ପୁରସ୍କୃତ ହୋଇଥିଲା । ତାଙ୍କ ଲିଖିତ "ସରଳ ହିଁ ସୁନ୍ଦର", "Simple is Beautiful" ଓ "ବିଜ୍ଞାନର ପଥେପଥେ" ବହିଗୁଡ଼ିକ ପାଠକୀୟ ଆଦୃତି ଲାଭ କରିଛି । ନୋବେଲ ବିଜେତା ଏରୱିନ୍ ସ୍ରୋଡ଼ିଞ୍ଜରଙ୍କ "What is life" ? ଓ ପ୍ରଖ୍ୟାତ ଗଣିତଜ୍ଞ ଜି.ଏଚ୍.ହାର୍ଡ଼ିଙ୍କ "Apology of a Mathematician" ବହି ଦୁଇଟିର ଓଡ଼ିଆ ଅନୁବାଦ ତାଙ୍କୁ ସୁପରିଚିତ କରାଇଛି ।

ବିଜ୍ଞାନ ଗବେଷଣା ଓ ଜନପ୍ରିୟ ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ଅବଦାନ ପାଇଁ ସେ ସାମନ୍ତ ଚନ୍ଦ୍ରଶେଖର ସ୍ମୃତି ପରିଷଦ, ନୟାଗଡ଼; ଉତ୍କଳ ସାହିତ୍ୟ ସମାଜ, କଟକ; ବିଜ୍ଞାନ ପ୍ରଚାର ସମିତି, କଟକ ଓ ରେଭେନ୍ସା ବିଶ୍ୱବିଦ୍ୟାଳୟ ପୁରାତନ ଛାତ୍ରସଂଘ ଦ୍ୱାରା ସମ୍ବର୍ଦ୍ଧିତ ହୋଇଛନ୍ତି ।

ଗଣମାଧ୍ୟମଗୁଡ଼ିକରେ ସମାଜର ବିଭିନ୍ନ ସମସ୍ୟାଗୁଡ଼ିକର ଅନୁଶୀଳନର ଲୋକପ୍ରିୟତା ତାଙ୍କୁ ଜଣେ ସ୍ତମ୍ଭକାର ଭାବେ ପ୍ରତିଷ୍ଠିତ କରାଇଛି ।

ପ୍ରକାଶକ

**Rs.156/-**